

ଶ୍ରୀମତୀ ସୌଦାମିନୀ ଉଦ୍‌ଗାତା ।

ଜନ୍ମ-୧୯୩୭ , ବେଲପଡ଼ା , ବଲାଂଗୀରରେ ।

ବିଂଶ ଶତାବ୍ଦୀର ଆପାତତଃ ଷଷ୍ଠ ଦଶକରୁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପରିଚିତା । ଶ୍ରୀମତୀ ଆଶାଲତା ଉଦ୍‌ଗାତା ଭାବରେ ବିଶ୍ୱ ସାହିତ୍ୟର ଶତାଧିକ ଗଳ୍ପର ଅନୁବାଦିକା , ଯାହା ଡଗର, ପ୍ରଜାତନ୍ତ୍ର, କଳିଙ୍ଗ, ଆସନ୍ତାକାଲି, ଝଂକାର, କଥା , ନବଲିପି ଆଦିରେ ପ୍ରକାଶିତ ।

' ସେଇ ରାତିରେ.. ' ' ମିଛ-ସତ ' ( ଗଳ୍ପ-ସଂକଳନ ) 'ଆଗାମୀ ଅତୀତ', 'ପୋଡ଼ାଭୂଇଁ' , 'ରହିଯା' ରାଧିକା ..' ( ଉପନ୍ୟାସ ) 'ଚାରୁଲତା'(ନାଟକ) ଆଦି ତାଙ୍କର ସଫଳ ଅନୁବାଦ-କୃତି ; କିଛି ମୌଳିକ କାହାଣୀ ଓ କବିତା ମଧ୍ୟ ଲେଖିଛନ୍ତି , ଯାହା ଝଂକାର,ଅମୃତାୟନ,ନବଲିପି,କଥା, ସମୟ,ସମ୍ବାଦ, ପ୍ରଜାତନ୍ତ୍ର ପ୍ରଭୃତିରେ ପ୍ରକାଶିତ । କେତୋଟି ଆକାଶବାଣୀରୁ ବି ପ୍ରଚାରିତ ହୋଇଛନ୍ତି ।

'ଗୋଟିଏ ସାଗର କୋଟିଏ ଢେଉ' ଶ୍ରୀମତୀ ଉଦ୍‌ଗାତାଙ୍କର ମୌଳିକ ଉପନ୍ୟାସ । ଏହି ଉପନ୍ୟାସ ହିନ୍ଦୀ, ତାମିଲ, ମଲୟାଲମ ଭାଷାରେ ଅନୂଦିତ ହୋଇ ଏକ ବିଶାଳ ପାଠକ ଗୋଷ୍ଠୀର ଆଦର ଲାଭ କରିଛି ।

ତାଙ୍କର ସାରସ୍ୱତ ଅବଦାନନିମନ୍ତେ ଓଡ଼ିଶା ସାହିତ୍ୟ ଏକାଡେମୀ, ନୀଳଶୈଳ , ଉତ୍କଳ ଦିବସ ଅବସରରେ ରାଜ୍ୟ ସରକାର ଅଭିନନ୍ଦିତ କରିଛନ୍ତି ।

□□□

# ସମର୍ପଣ

ଭାରତର ପ୍ରଧାନମନ୍ତ୍ରୀ
ପଣ୍ଡିତ ଜବାହରଲାଲ ନେହରୁଙ୍କ ଦ୍ୱାରା
ବିଶ୍ୱ-ଶାନ୍ତି ଲାଗି ପ୍ରୟାସର ପ୍ରଶଂସାରେ—
ଭାବି ଯୁଦ୍ଧର ଆଶଙ୍କାରେ ତ୍ରସ୍ତ ଏବଂ
ବିଶ୍ୱ-ଶାନ୍ତିକାମୀ ମାନବତାଙ୍କର୍ତ୍ତୃକ ସମର୍ପିତ ।

**ଯଶପାଳ**

# ପ୍ରାକ୍କଥନ

ଆମର ରାଷ୍ଟ୍ର ଆପଣାର ସ୍ଥିତିର ପୁନର୍ବିନ୍ୟାସର ପ୍ରୟାସ କରୁଛି ଏବଂ ସମାଜର ପ୍ରମୁଖ ଭାବନା ନିର୍ମାଣ । ଏହି ଉଦ୍ଦେଶ୍ୟ ପୂର୍ତ୍ତି ନିମନ୍ତେ ଯୁଦ୍ଧର ବିଧ୍ୱଂସକୁ ଏଡ଼ାଇଯିବା ଏବଂ ବିଶ୍ୱଶାନ୍ତିର ଆବଶ୍ୟକତା ଅନିବାର୍ଯ୍ୟ । ବିଶ୍ୱ-ଶାନ୍ତିର ପ୍ରୟାସରେ ସହଯୋଗ ଦେବାକୁ ମୋତେ ମଧ୍ୟ ତିନି ବର୍ଷ ମଧ୍ୟରେ ଦୁଇ ଥର ୟୁରୋପ ଯିବାକୁ ପଡ଼ିଛି । ସ୍ୱଭାବତଃ, ସଂପ୍ରତି (୧୯୫୪-୫୬) ଲିଖିତ ମୋର ଏହି ଉପନ୍ୟାସରେ, ଯୁଦ୍ଧ ଲାଗି ଲକ୍ଷ୍ୟ ହାସଲ କରିବା ଅଥବା ସମସ୍ୟାଗୁଡ଼ିକର ସମାଧାନର ନୀତିର ବିଫଳତାର ବିଚାର ଏ କାହାଣୀର ମେରୁଦଣ୍ଡ ହୋଇଛି ।

ଯୁଦ୍ଧର ଆଶଙ୍କା ସମାପ୍ତ କରିବା ଓ ଚିରସ୍ଥାୟୀ ବିଶ୍ୱ-ଶାନ୍ତି ସକାଶେ କେବଳ ଆମର ଦେଶ ନୁହେଁ, ବିଶ୍ୱର ସମସ୍ତ ରାଷ୍ଟ୍ରର ଜନତା ମଧ୍ୟ ଉତ୍ସୁକ । ଯେଉଁ ଦେଶଗୁଡ଼ିକ ଯୁଦ୍ଧର ବିଧ୍ୱଂସକୁ ଆପଣା ସ୍ମୃତିରେ ସହିଛନ୍ତି, ସେମାନେ ନିଶ୍ଚିତ ଭାବରେ ବିଶ୍ୱ-ଶାନ୍ତିର ପ୍ରତିଷ୍ଠାପାଇଁ ଆମର ଦେଶଠାରୁ ମଧ୍ୟ ଅଧିକ ଆତୁର ।

ଆଧୁନିକ ମାନବସମାଜ ଯୁଦ୍ଧର ଆଶଙ୍କାକୁ ଏଡ଼ାଇ ଦେବାକୁ ତା'ର କ୍ଷମତାର ବହିର୍ଭୂତ କାର୍ଯ୍ୟ ବୋଲି ମନେ କରୁ ନାହିଁ । ଏଇ ଯୁଗର ମାନବସମାଜ ଅନ୍ତର୍ରାଷ୍ଟ୍ରୀୟ ଶାନ୍ତି ରକ୍ଷା ପାଇଁ ରାଷ୍ଟ୍ରମାନଙ୍କର ଶସ୍ତ୍ର-ଶକ୍ତିର ଭାରସାମ୍ୟ ରଖିବାର ବ୍ୟର୍ଥତାକୁ ମଧ୍ୟ ବୁଝିସାରିଛି । ମାନବସମାଜ ଏହା ମଧ୍ୟ ଦେଖୁଛି ଯେ ବିଧ୍ୱଂସକାରୀ ଶକ୍ତିକୁ ବଢ଼େଇ ପାରିବାର କୌଣସି ସୀମା ନାହିଁ ଏବଂ କୌଣସି ହେଲେ ରାଷ୍ଟ୍ର ସେହି ବିଧ୍ୱଂସରେ ଅକ୍ଷୁଣ୍ଣ ହୋଇ ରହିପାରିବ ବୋଲି ଗର୍ବ କରିପାରିବ ନାହିଁ । ମଣିଷ ପରଲୋକର ଚିନ୍ତାରେ ଏହି ସଂସାରର ଉପେକ୍ଷା କରି ଅଭାବ ମଧ୍ୟରେ ବି ଶାନ୍ତିରକ୍ଷା କରିବାକୁ ଏବଂ ସନ୍ତୁଷ୍ଟ ହୋଇ ରହିଥିବାର ଉପଦେଶ ଶତାବ୍ଦୀ—ଶତାବ୍ଦୀ ଧରି ଶୁଣିଆସିଛି । ତ୍ୟାଗ ଏବଂ ସନ୍ତୋଷର ଉପଦେଶ ମଧ୍ୟ ସେହି ଉଦ୍ଦେଶ୍ୟ ପୂରଣ କରିବା ଲକ୍ଷ୍ୟରେ ବ୍ୟର୍ଥ ହୋଇଛି ।

ମନୁଷ୍ୟ ତା'ର ଅନୁଭବ ଏବଂ ବିକାଶ ମାଧ୍ୟମରେ ଶାନ୍ତିରକ୍ଷା ନିମନ୍ତେ ଅଧିକ ବିଶ୍ୱାସଯୋଗ୍ୟ ଉପାୟ ଚିନ୍ତା କରିସାରିଛି । ଏହି ସତ୍ୟ ନିତାନ୍ତ ସରଳ । ମନୁଷ୍ୟ ଅନ୍ତର୍ରାଷ୍ଟ୍ରୀୟ ରୂପରେ ଅନ୍ୟର ଭାବନା ଓ ସଦିଚ୍ଛାର ବିଶ୍ୱାସ କରୁ, ଅନ୍ୟମାନଙ୍କ ପାଇଁ ମଧ୍ୟ ନିଜଭଳି ଜୀବିତ ରହିବା ତଥା ଆତ୍ମନିର୍ଣ୍ଣୟ ଦ୍ୱାରା ସହଅସ୍ତିତ୍ୱର ଅଧିକାରକୁ ସ୍ୱୀକାର କରୁ । ସମସ୍ତ ରାଷ୍ଟ୍ର ଓ ସମାଜର ଆପଣା ଆପଣା ରାଷ୍ଟ୍ରର ସୀମା ମଧ୍ୟରେ, ଆପଣା ଆପଣାର ସିଦ୍ଧାନ୍ତ ଏବଂ ବିଶ୍ୱାସ ଅନୁଯାୟୀ ବ୍ୟବସ୍ଥା କରିବାର ସ୍ୱାତନ୍ତ୍ର୍ୟ ରହୁ । ଜୀବନରେ ସମୃଦ୍ଧି ଓ ସନ୍ତୋଷ ପ୍ରାପ୍ତିର ମାର୍ଗ ହେଉଛି ଆପଣାର ଶକ୍ତିକୁ ଉତ୍ପାଦନର କ୍ଷେତ୍ରରେ ଲଗେଇବା, ଅନ୍ୟକୁ ଡରେଇ ମାରି ତା'ଠାରୁ ବଳପୂର୍ବକ ଛଡ଼େଇ ନେବା ନୁହେଁ ।

ଅନ୍ତର୍ରାଷ୍ଟ୍ରୀୟ ଶାନ୍ତିର ସମସ୍ୟା ସହିତ ଅନ୍ୟ ଆନୁଷଙ୍ଗିକ ସମସ୍ୟାର ଉପେକ୍ଷା ମଧ୍ୟ କରାଯାଇପାରିବ ନାହିଁ । ଆମେ ଆମର ଭୌତିକ ଅଭାବ ପୂରଣ କରିବାର ଚେଷ୍ଟା ସହିତ ଆପଣାର ନୈତିକ ସଂଶୋଧନ ପାଇଁ ମଧ୍ୟ ଚିନ୍ତିତ । ଜୀବନରେ ଅଧିକ ସମର୍ଥ ହୋଇପାରିବା ପାଇଁ ବ୍ୟକ୍ତି ଏବଂ ସମାଜର ନୈତିକତାର ପ୍ରୟୋଜନ ରହିଛି । ଅନୈତିକ ବିଚାର ଏବଂ ବ୍ୟବହାର ବ୍ୟକ୍ତି ଓ ସମାଜକୁ ଘୁଣ ବା କ୍ଷୟ ରୋଗ ଭଳି କ୍ଷୀଣ କରି ପକାଏ ।

ବ୍ୟକ୍ତି ଏବଂ ସମାଜର ବିକାଶ ନିମନ୍ତେ ନୈତିକ ବଳର ଅନିବାର୍ଯ୍ୟ ଆବଶ୍ୟକତା ରହିଛି, କିନ୍ତୁ ନୈତିକତା, ବିଚାର ଓ ତର୍କ ଦ୍ୱାରା ମନୁଷ୍ୟର ସହଜ ସ୍ୱଭାବର ଅଙ୍ଗ ହେବା ଉଚିତ । ଭୟ ଓ ଦମନଦ୍ୱାରା ଆପଣାର ବିଚାର ଏବଂ ନୈତିକତାକୁ ସ୍ୱୀକାର କରେଇବାକୁ ବାଧ୍ୟ କରିବା ଆପଣାର ଶକ୍ତିକୁ ଅନୁଭବ କରିବାର ଉନ୍ମାଦମାତ୍ର ଏବଂ ତାହା ମୂଳତଃ ଅନୈତିକ । ଜନସାଧାରଣଙ୍କୁ ଦମନର ଅନୁଭୂତି ଦେବା, ତାଙ୍କୁ ଅପରାଧର ପ୍ରେରଣା ଦେବା ଭଳି । ହିଂସା ଓ ଦମନଦ୍ୱାରା ଅହିଂସାର ସ୍ଥାପନା ସବୁଠାରୁ ବଡ଼ ହିଂସା । ଜନସାଧାରଣଙ୍କୁ ଲାଠି କିମ୍ୱା ଖଣ୍ଡାର ବଳରେ ମୋକ୍ଷର ମାର୍ଗରେ ଆଡ଼େଇନେବା ମୁକ୍ତି ନୁହେଁ; ତାହା ତାଙ୍କର ଦାସତା ଓ ଦମନ ।

ଦାସତା ଓ ଦମନର ପ୍ରତିରୋଧ ହିଂସା ନୁହେଁ, ଆତ୍ମରକ୍ଷା ।

'ଦିବ୍ୟା'ର କାହାଣୀ ଭଳି 'ଅମିତା'ର କାହାଣୀ ମଧ୍ୟ ଇତିହାସ ନୁହେଁ, ଐତିହାସିକ କଳ୍ପନା ମାତ୍ର । ଇତିହାସର ପ୍ରାମାଣିକ ଘଟଣା ହେଉଛି, କେବଳ ମାତ୍ର ଅଶୋକଙ୍କର କଳିଙ୍ଗ ବିଜୟ ପାଇଁ ଆକ୍ରମଣ ଏବଂ ସେହି ଯୁଦ୍ଧର ପରିଣାମସ୍ୱରୂପ ଭବିଷ୍ୟତରେ ଯୁଦ୍ଧ ନ କରିବାକୁ ଅଶୋକଙ୍କର ପ୍ରତିଜ୍ଞା । ଅଶୋକ ତାଙ୍କର ଏହି ପ୍ରତିଜ୍ଞାକୁ ଶିଳାଲେଖରେ ଲିପିବଦ୍ଧ କରି ଚିରସ୍ମରଣୀୟ କରିଦେଇଛନ୍ତି । ଏହି କାଳ୍ପନିକ କାହାଣୀର କେବଳମାତ୍ର ସେହି ଅଂଶ ହିଁ ଇତିହାସ ।

ବିଶ୍ୱରେ ଶାନ୍ତି ସ୍ଥାପନର ପ୍ରଚେଷ୍ଟାରେ ଆମର ଦେଶର ଜନତା ଆମର ସରକାରଙ୍କର ଅନ୍ତର୍ରାଷ୍ଟ୍ରୀୟ ନୀତି ଏବଂ ଆମର ପ୍ରଧାନମନ୍ତ୍ରୀ ନେହରୁଜୀ ଯେଉଁଭଳି ସହଯୋଗ ଦେଇଛନ୍ତି, ତାହା ଆମମାନଙ୍କ ପକ୍ଷରେ ଗର୍ବର କାରଣ । ନେହରୁ ସରକାରର ରାଷ୍ଟ୍ରୀୟ ନୀତିର କେତୋଟି ଦିଗର ସମର୍ଥନ କରୁ ନ ଥିଲେ ହେଁ ବିଶ୍ୱଶାନ୍ତି ନିମନ୍ତେ ତାଙ୍କର ପ୍ରଚେଷ୍ଟାର ପ୍ରଶଂସାରେ ଏହି ଉପନ୍ୟାସ ବିଶ୍ୱଶାନ୍ତି ଲାଗି ଉଦ୍ୟମର ପ୍ରତୀକରୂପରେ ଗ୍ରହଣ କରି ତାଙ୍କରି ମାଧ୍ୟମରେ ମୋର ପାଠକମାନଙ୍କୁ ସମର୍ପିତ କରୁଛି ।

ଲକ୍ଷ୍ନୌ

ଯଶପାଲ

୨୨ ମାର୍ଚ୍ଚ ୧୯୫୬

# ମୋ କଥା

ଯଶପାଳଜୀଙ୍କର ଏହି ଉପନ୍ୟାସ କଳିଙ୍ଗର ପୃଷ୍ଠଭୂମିରେ ଲିଖିତ ଏବଂ ବିଶ୍ୱ-ଶାନ୍ତି ପ୍ରତି ସମର୍ପିତ । ଅଶୋକଙ୍କର କଳିଙ୍ଗ ଆକ୍ରମଣ ସଂବନ୍ଧରେ ଇତିହାସ ଆପାତତଃ ମୌନ । ଅଶୋକଙ୍କର ଖରୋଷ୍ଠି ଲିପିରେ ଉତ୍କୀର୍ଣ୍ଣିତ, ସଂପ୍ରତି ପାକିସ୍ତାନସ୍ଥିତ ସାହବଜ୍‌ଗଡ଼ି ଶିଳା ଅନୁଶାସନ ହିଁ ଏହି ଯୁଦ୍ଧର ବିବରଣୀ ପ୍ରଦାନ କରିଥାଏ, ମାତ୍ର ତାହା ମଧ୍ୟ ତତ୍‌କାଳୀନ କଳିଙ୍ଗ ଶାସନର ଇତିହାସ ପ୍ରସଙ୍ଗରେ ପୂର୍ଣ୍ଣତଃ ମୌନ । 'ଅମିତା' ଉପନ୍ୟାସର ଅନ୍ତିମ ଅଧ୍ୟାୟ ଭାବରେ ପୂଜ୍ୟ ଯଶପାଳଜୀ ଏହି ତ୍ରୟୋଦଶ ଅନୁଶାସନ ଭାବରେ ଖ୍ୟାତ ଅନୁଶାସନର ହିନ୍ଦୀ ଅନୁବାଦ ସନ୍ନିବେଶିତ କରିଛନ୍ତି ଯାହା ପ୍ରସିଦ୍ଧ ଐତିହାସିକ ରାୟବାହାଦୁର ଗୌରୀଶଙ୍କର ହୀରାଚନ୍ଦ୍ର ଓଝା ଓ ବାବୁ ଶ୍ୟାମସୁନ୍ଦର ଦାସ (ବି.ଏ.) ରୂପାନ୍ତରିତ କରିଥିଲେ ଏବଂ କାଶୀ ନାଗରୀ ପ୍ରଚାରିଣୀ ସଭାଦ୍ୱାରା ପ୍ରକାଶିତ ହୋଇଥିଲା । ସେହି ହିନ୍ଦୀ ଅନୁବାଦର ଓଡ଼ିଆ ଭାଷାନ୍ତର ଯଦିଓ ଏହି ଗ୍ରନ୍ଥରେ ସନ୍ନିବେଶିତ ହୋଇଛି ତାହା ଅସ୍ୱଷ୍ଟ ମନେ ହେଉଥିବା ହେତୁ ମୁଁ କରିଥିବା ଉପନ୍ୟାସର ଓଡ଼ିଆ ଅନୁବାଦ ଦେଖିବା ଅବସରରେ ଶ୍ରୀ ଉଦ୍‌ଗାତା ତାହା ସହିତ ସଂଶୋଧିତ ପାଠ ସହିତ ଓଡ଼ିଶାରେ ଧଉଳି ଓ ଜଉଗଡ଼ ଶିଳାଲେଖର ମୂଳପାଠ ଏବଂ ଓଡ଼ିଆ ଅନୁବାଦ ସଂଯୋଜିତ କରିବାର ଆଗ୍ରହ ପ୍ରକାଶ କଲେ ।

ସ୍ୱର୍ଗୀୟ ଯଶପାଳଜୀଙ୍କ ବିଦ୍ରୋହିଣୀ, ଯଶସ୍ୱିନୀ, ସହଧର୍ମିଣୀ ଡକ୍ଟର ଶ୍ରୀମତୀ ପ୍ରକାଶବତୀ ପାଳ ପ୍ରଥମରୁ 'ଅମିତା'ର ଓଡ଼ିଆ ଅନୁବାଦ ଏବଂ ପ୍ରକାଶନ ନିମନ୍ତେ ସଦୟ ଅନୁମତି ପ୍ରଦାନ କରିଛନ୍ତି । ଏହି ଅନୁଶାସନଗୁଡ଼ିକ ସଂଯୋଜିତ କରିବା ସକାଶେ ଅନୁମତି ଦେଇ ତା'ର ହିନ୍ଦୀ ଅନୁବାଦ 'ଅମିତା'ର ପରବର୍ତ୍ତୀ ସଂସ୍କରଣରେ ସନ୍ନିବେଶିତ କରିବାର ଆଗ୍ରହ ହେତୁ ଶ୍ରୀ ଉଦ୍‌ଗାତା କରିଦେଇଥିବା ହିନ୍ଦୀ ଅନୁବାଦ ତାଙ୍କ ପାଖକୁ ପଠେଇ ଦେଇଛି । ଶ୍ରୀମତୀ ପାଳ ସବୁବେଳେ ମୋତେ ମାତୃସ୍ନେହ ହିଁ ଦେଇଛନ୍ତି । ଲକ୍ଷ୍ନୌ ଆବାସ ମୋତେ ମୋର ଆପଣା ଘର ଭଳି ଲାଗେ । ତାଙ୍କର ଅମୃତ ଆଶୀର୍ବାଦ ପାଇ ମୁଁ ଆପଣାକୁ ଧନ୍ୟ ମନେକରୁଛି ।

ଅନୁଶାସନଗୁଡ଼ିକର ଅନ୍ତିମ ଶୁଦ୍ଧପାଠ କରିଛନ୍ତି ସ୍ୱନାମଧନ୍ୟ ଐତିହାସିକ ସ୍ୱର୍ଗୀୟ ଡକ୍ଟର ନବୀନ କୁମାର ସାହୁ । ତାହା ପୂର୍ବରୁ ପ୍ରଖ୍ୟାତ ଲିପିବିଦ୍ କେର୍ଣ୍ଣ (Kern) ସେନାର୍ଟ (Senart) ବୁଲର (Buhler) ହଲେଚ୍ (Hultzsch) ସରକାର କରିଥିଲେ । ଏହି ଅବସରରେ ମୁଁ ଏହି ବିଦ୍ୱାନ ମହାପୁରୁଷମାନଙ୍କୁ ସକୃତଜ୍ଞ ସ୍ମରଣ କରୁଛି । ଏଥିନିମନ୍ତେ ଆବଶ୍ୟକ ସାମଗ୍ରୀର ବ୍ୟବସ୍ଥା କରିଛନ୍ତି ଐତିହାସିକ ଭାଇ ଶ୍ରୀ ସଦାନନ୍ଦ

ଅଗ୍ରୱାଲା । ତାଙ୍କର ସାଧନା କ୍ଷେତ୍ରରେ ଉତ୍ତରୋତ୍ତର ସିଦ୍ଧିଲାଭ ହେଉ ବୋଲି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି ।

ପ୍ରସିଦ୍ଧ ପ୍ରକାଶନ ସଂସ୍ଥା ବିଦ୍ୟାପୁରୀ ଏ ଅନୁବାଦ ଗ୍ରନ୍ଥର ପ୍ରକାଶକ । ମନୋଜ୍ଞ ପ୍ରକାଶନ ନିମନ୍ତେ ଏ ସଂସ୍ଥାର ଖ୍ୟାତି ରହିଛି । ଏହି ଉପନ୍ୟାସର ଅନୁବାଦ-ଅନୁମତି ପାଇଁ ଶ୍ରୀଯୁକ୍ତ ପୀତାମ୍ବର ମିଶ୍ର ଶୀମତୀ ପାଳଙ୍କୁ ଅଗ୍ରିମ ରୟାଲଟି ଦେବାକୁ ମଧ୍ୟ କୁଣ୍ଠାବୋଧ କରି ନାହାନ୍ତି । ତାଙ୍କର ଏହି ସାଧୁ ଇଚ୍ଛା ନିମନ୍ତେ ମୁଁ ତାଙ୍କ ପ୍ରତି ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

ଏହି ଅନୁବାଦର ପ୍ରଚ୍ଛଦ ଶିଳ୍ପୀ ଶ୍ରୀ ବିଜୟ କୁମାର ପ୍ରଧାନ । ମୁଁ ଅନୁବାଦ କରିବି ବୋଲି ବିଶେଷ ଆଗ୍ରହୀ ଥିଲେ ପ୍ରସିଦ୍ଧ କବି, କଥାକାର, ନବଲିପିର ସ୍ୱନାମଧନ୍ୟ ସଂପାଦକ ଶ୍ରୀଯୁକ୍ତ ନୃସିଂହ ତ୍ରିପାଠୀ ଏବଂ ଅନୁବାଦ କାଳରେ, ପରେ ଘଷି-ମାଜିବାର କାମ ଓ ପ୍ରେରଣା ଦେଇଛନ୍ତି ଶ୍ରୀ ଉଦ୍‌ଗାତା । ଏମାନଙ୍କ ପ୍ରତି କୃତଜ୍ଞତା ନିହାତି ଔପଚାରିକ ମନେହେବ । ତା' ବାହାରେ ସେମାନେ ସିନା ଏତେ ଦିନର ନୀରବତା ପରେ ମୁଁ ପୁଣି କିଛି କରିଲି, କରିଛି ବୋଲି ଖୁସି ହେବେ ଓ ମୋର ଆନନ୍ଦକୁ ବହୁଗୁଣିତ କରିଦେବେ ।

ଏହି ଉପନ୍ୟାସର ରୂପାନ୍ତରଣ ବିଶ୍ୱର ପ୍ରତ୍ୟେକ ରାଷ୍ଟ୍ରୀୟ ଭାଷାରେ ପ୍ରକାଶିତ ହୋଇ ବିଶ୍ୱଶାନ୍ତି ପ୍ରତି ସମର୍ପିତ ହୋଇଛି । ଓଡ଼ିଆ ପାଠକ-ପାଠିକାଙ୍କୁ ଭଲଲାଗିଲେ ମୋର ଶ୍ରମ ସାର୍ଥକ ହେଲା ବୋଲି ଭାବିବି ...

କବିକୁଟୀର, ବଲାଙ୍ଗିର
**ବିଜୟା – ୧୯୯୯**

ଶ୍ରୀମତୀ ସୌଦାମିନୀ ଉଦ୍‌ଗାତା

# ମାତାଙ୍କର ଉପଦେଶ

ଚୈତ୍ୟ ତୋରଣରେ ଅଷ୍ଟଧାତୁ ନିର୍ମିତ ବିଶାଳ ଘଣ୍ଟା ଧ୍ୱନିତ ହେବାକୁ ଲାଗିଲା । ସେଇ ଧ୍ୱନିର ପ୍ରତିଧ୍ୱନିରେ ନଗରର ଅନ୍ୟ ସ୍ଥାନମାନଙ୍କରୁ ଆରତି ଶଙ୍ଖ ଘଣ୍ଟ ଭେରୀମାନଙ୍କ ଶବ୍ଦ ନଗରର ନିଦ୍ରାସ୍ତବ୍ଧ କୁହେଳିକାଭରା ଆକାଶରେ ଗୁଞ୍ଜରିତ ହେବାକୁ ଲାଗିଲା । ବାତାବରଣଟିରେ ଏଇ ଧ୍ୱନି ସମୂହରୁ ଉତ୍ପନ୍ନ କମ୍ପନ ନଗରକୁ ଘେରି ରହିଥିବା ଘନ କୁହୁଡ଼ିକୁ ବିଚଳିତ କରୁଥିଲା । ଅପସରି ଯାଉଥିବା କୁହୁଡ଼ିକୁ ଉଦୀୟମାନ ସୂର୍ଯ୍ୟକିରଣ ସ୍ୱଚ୍ଛ କରୁଥିଲା । ଉଚ୍ଚ ଭୂମିସ୍ଥିତ ଚୈତ୍ୟର ସମ୍ମୁଖରେ ବିସ୍ତାରିତ କୁହୁଡ଼ିର ମଶାରିରେ ନିଦ୍ରାଳସିତ ନଗରରେ ମଧ୍ୟ ଜାଗିବାର ସଙ୍କେତ ସ୍ପଷ୍ଟ ହୋଇଉଠୁଥିଲା । ନୂଆ ଚୈତ୍ୟ ନଗରର ପଶ୍ଚିମଭାଗରେ ପ୍ରାଚୀର ନିକଟରେ ଥିଲା । ଚୈତ୍ୟର ଶ୍ୱେତପ୍ରସ୍ତରରେ ନିର୍ମିତ ପ୍ରଶସ୍ତ ଦ୍ୱାର, ଉଜ୍ଜ୍ୱଳ କୁହୁଡ଼ିଭରା ଆକାଶରେ, ସ୍ୱପ୍ନଜଗତର ପ୍ରାସାଦର ଦ୍ୱାର ସଦୃଶ ଜଣାପଡୁଥିଲା । ଦ୍ୱାର ଭିତରକୁ ଯାଉଥିବା ତଥାଗତଙ୍କର ବଚନପାଠର ଧ୍ୱନି ଘନ କୁହେଳିକା ହେତୁ ଦୂରକୁ ଶୁଭୁ ନ ଥିଲା । ଦ୍ୱାର ନିକଟକୁ ଆସିଲା ପରେ ଚୈତ୍ୟର ଅଳିନ୍ଦମାନଙ୍କରେ କୁଶାସନମାନଙ୍କରେ ପଦ୍ମାସନ ପୀତବସ୍ତ୍ରଧାରୀ ଭିକ୍ଷୁମାନେ ମଧ୍ୟ ଦେଖାଯାଉଥିଲେ ।

ଶ୍ୱେତ ତୋରଣ ଦ୍ୱାର ସବୁର ଶିଡ଼ିଗୁଡ଼ିକ କଳାପଥରର ଥିଲା । ଶିଡ଼ି ନିକଟରେ ରାଜଦଣ୍ଡଧାରୀ ଚାରଣ ଛିଡ଼ାଥିଲା । ଘଣ୍ଟାର ଶବ୍ଦରେ ସେ ସତର୍କ ହେଲା । ଦ୍ୱାର ସାମନାରେ, ଚାରି ପାହୁଣ୍ଡ ଦୂରରେ, ସ୍ୱର୍ଣ୍ଣ-ଖଚିତ ବସ୍ତ୍ରରେ ଢଙ୍କା ବଡ଼ ପାଲିଙ୍କି ରଖାହୋଇଥିଲା । ପାଲିଙ୍କି ବାହିବା ଦଣ୍ଡ ସାଙ୍ଗରେ ହଳଦିଆ ପାଗ, ଲାଲଜାମା ଉପରେ ହଳଦିଆ କମରପଟି ଭିଡ଼ି ଆଠଜଣ ବାହକ ବସିଥିଲେ । ଶୀତ ହେତୁ ପାଲିଙ୍କିବାହକ ବାହୁଯୁଗଳରେ ଆଣ୍ଠୁଭିଡ଼ି ଆଣ୍ଠୁ ଉପରେ ମୁହଁ ଜାକି ରହିଥିଲେ । ଘଣ୍ଟାର ଟଂକାର ଶବ୍ଦରେ ସଭିଏଁ ସତର୍କ ହେଲେ । ପାଲିଙ୍କିର ବାମଡାହାଣ ଦ୍ୱାର ସମୀପରେ ଓଢ଼ଣିରେ ବକ୍ଷସ୍ଥଳ ଆଉ ଧୋତିର କଚ୍ଛରେ ଅଣ୍ଟାଭିଡ଼ି ଯବନୀମାନେ ଛିଡ଼ାଥିଲେ । ଶବ୍ଦ ଶୁଣି ତାଙ୍କ ହାତରେ ଥିବା ଖଡ୍‌ଗ

ସବୁ ସଳଖିଗଲା । ପାଲିଙ୍କି ଚତୁଷ୍ପାର୍ଶ୍ୱରେ ଛିଡ଼ା ଥିବା ସଶସ୍ତ୍ର ରାଜପୁରୁଷ ମଧ୍ୟ ସତର୍କ ହୋଇଗଲେ । ସମସ୍ତଙ୍କର ନଜର ଯାଇ ଦ୍ୱାର ଦେଶରେ ସ୍ଥିର ହୋଇଗଲା ।

ଚୈତ୍ୟର ଦ୍ୱାରଦେଶରୁ ପ୍ରାୟ ପଚିଶ ପାହୁଣ୍ଡ ଦୂରରେ ଦରିଦ୍ର ନର-ନାରୀଙ୍କର ଛୋଟିଆ ଭିଡ଼ଟିଏ ଥିଲା । କେତେକ ରାଜପୁରୁଷ ସେଇ ଭିଡ଼କୁ ଆଗକୁ ବଢ଼ିବାରେ ବାଧା ଦେଉଥିଲେ । ସେଇ ଶୀତରେ ମଧ୍ୟ ଭିଡ଼ ଜମେଇଥିବା ଲୋକଙ୍କ ଦେହରେ ନିହାତି ଅଳ୍ପ ବସ୍ତ୍ର ଥିଲା, ମୁଣ୍ଡରେ ଫଟା ପୁରୁଣା ପାଗ, ଅଣ୍ଟା ପର୍ଯ୍ୟନ୍ତ ଗାମୁଛା ଆଉ ଆଣ୍ଠୁ ପର୍ଯ୍ୟନ୍ତ କପଡ଼ାର ଛୋଟ ଟୁକୁରାଟିଏ ଲାଗିଥାଏ । କେତେକେ କେବଳ ଧୋତିରେ ହିଁ କାନ୍ଧରୁ ଆଣ୍ଠୁ ପର୍ଯ୍ୟନ୍ତ ଶରୀରଟିକୁ ଭିଡ଼ି ରଖିଥାନ୍ତି । ସେମାନେ ଶୀତ ଓ ରାଜପୁରୁଷଙ୍କର ଭୟରେ ମଧ୍ୟ ଶଂକିତ ହୋଇ ରହିଥିଲେ । ଘଣ୍ଟାର ଧ୍ୱନିରେ ଭୟାତୁର ଭିଡ଼ର ଆଖି ମଧ୍ୟ ଦ୍ୱାରଦେଶ ଆଡ଼କୁ ବୁଲିପଡ଼ିଲା ।

ଚୈତ୍ୟର ଦ୍ୱାରଦେଶରେ ଏକ ରାଜଦାସୀ କାନ୍ଧ ଉପରେ ସ୍ୱର୍ଣ୍ଣକଙ୍କଣ ସହିତ ଦେଖାଦେଲା । ଦାସୀଟି ଦ୍ୱାରଦେଶର ତୋରଣରେ ଝୁଲୁଥିବା ଘଣ୍ଟାର ତଳୁ ଆସୁଥିବା ବେଳେ, ବାହୁ ଉତ୍ତୋଳନ କରି ଘଣ୍ଟାର ଜିହ୍ୱା ହଲାଇ ଦେଇଥିଲା ।

ରାଜଦାସୀକୁ ଦେଖି ରାଜଦଣ୍ଡଧାରୀ ପ୍ରହରୀ ଦଣ୍ଡ ଉତ୍ତୋଳନ କରି ଉଚ୍ଚୈସ୍ୱରରେ ଘୋଷଣା କଲା – ''ପରମ ଭଗବତୀଙ୍କର ଜୟ ହେଉ ! ପ୍ରଜା ଓ ପୌରଜନ ସସମ୍ମାନ ସାବଧାନ ! ମହାମହିମାମୟୀ, ପ୍ରଜାପାଳିକା, ଧର୍ମରକ୍ଷିକା କଳିଙ୍ଗର ରାଜେଶ୍ୱରୀଙ୍କୁ ପ୍ରଜା ମାର୍ଗ ଦିଅନ୍ତୁ ।''

ସୁନାକଳସ ଧରିଥିବା ଦାସୀର ପଛକୁ ଦ୍ୱାରଦେଶରେ ରାଜେଶ୍ୱରୀ ଦେଖାଦେଲେ । ସେ ରାଜହଂସିନୀ ସଦୃଶ ଗତିରେ ଆସୁଥିଲେ । ମହାରାଣୀଙ୍କର ଶରୀର କାନ୍ଧରୁ କଟିଦେଶ ପର୍ଯ୍ୟନ୍ତ ହିମପରି ଶ୍ୱେତ ଓଢ଼ଣିରେ ଆବୃତ ହୋଇଥିଲା । ରୁକ୍ଷ କଳାକେଶ ପିଠିରେ ମୁକୁଳିତ ଥିଲା । କଟିଦେଶରୁ ପାଦର ନଖ ପର୍ଯ୍ୟନ୍ତ ଶ୍ୱେତ ରେଶମୀ ବସ୍ତ୍ରରେ ଅନ୍ତର୍‌ବାସକ ଜଡ଼େଇ ରହିଥିଲା । ମହାରାଣୀ ସାମାନ୍ୟ ମୁଣ୍ଡ ନୁଆଁଇ, ହାତଯୋଡ଼ି ମନ୍ତ୍ରପାଠପୂର୍ବକ ଚାଲିଥିଲେ । ଶରୀରରେ କିଛି ବି ଅଳଙ୍କାର ନ ଥିଲା । ସୌମ୍ୟ ତାଙ୍କର ରୂପ ଭକ୍ତି, ବୌଦ୍ଧଭିକ୍ଷୁମାନଙ୍କର ବିନୟଭାବ ଓ ଶୀଳଭାବର ନିୟମ ତଥା ସଂଯମର ପ୍ରତୀକ ଥିଲା । ମହାରାଣୀଙ୍କ ପଛରେ ଦୁଇଜଣ ଦାସୀ ବଡ଼ ବଡ଼ ଦୁଇଟି ଥାଳିରେ ପୂଜାର ପ୍ରସାଦ ଧରିଥିଲେ ।

ଚୈତ୍ୟ ସାମନାରେ ରାଜପୁରୁଷଙ୍କଦ୍ୱାରା ଅଟକାଯାଇଥିବା ଭିଡ଼ ମଧ୍ୟରୁ କମ୍ପିତ ସ୍ୱର ଶୁଣାଯାଉଥିଲା –

"ରାଜେଶ୍ୱରୀଙ୍କର ଜୟ ହେଉ !
ଅନ୍ନଦାତାଙ୍କର ଜୟ ହେଉ !
ଅଭୟ ଦାନ ହେଉ !
ରକ୍ଷା ହେଉ !"

ମନ୍ତ୍ରପାଠରେ ମଗ୍ନ ମହାରାଣୀ ମଧ୍ୟ ଭିଡ଼ର ଅସ୍ପଷ୍ଟ ସ୍ୱର ଶୁଣିଥିଲେ । ସେ ଅନୁମାନ କରିଥିଲେ, ଭିକ୍ଷାର୍ଥୀଙ୍କର ଭିକ୍ଷା ଚାହୁଁଛନ୍ତି । ମହାରାଣୀ କୌଣସି ଏକ ଦାସୀକୁ ପ୍ରସାଦ ଥାଳି ଦେଇ ସେ ଭିଡ଼ରେ ବାଣ୍ଟିଦେବାକୁ ସଂକେତ କରି ପାଲିଙ୍କିରେ ବସିଗଲେ । ଭିଡ଼ ଭିତରେ କୋଳାହଳ ଆଉ ଯାଚନାର ସ୍ୱର ପୂର୍ବାପେକ୍ଷା ସ୍ପଷ୍ଟ ହୋଇଗଲା ।

"ଭଗବତୀ ରାଜେଶ୍ୱରୀଙ୍କର ଜୟ ହେଉ !
ଅଭୟ ଦାନ ମିଳୁ !
ରକ୍ଷା ମିଳୁ !
ନ୍ୟାୟ ମିଳୁ !

ମହାରାଣୀଙ୍କର ଦୃଷ୍ଟି ଭିଡ଼ ଉପରେ ପଡ଼ିଲା । ସେ କୁହେଳିକା ଭେଦକରି ଝଲସି ଆସୁଥିବା ସୂର୍ଯ୍ୟକିରଣକୁ ଆଢୁଆଳ କରି ଆଖି ଆଗରେ ହାତରଖି ସେପଟକୁ ଦେଖିଲେ ଏବଂ ଚାମରଧାରିଣୀ ଯବନୀକୁ ସମ୍ବୋଧନ କଲେ– "ପ୍ରଜା କ'ଣ ଚାହାନ୍ତି, ନିବେଦନ କରନ୍ତୁ !"

ଯବନୀ ତୁରନ୍ତ ଦଉଡ଼ିଯାଇ ଭିଡ଼କୁ ଅଟକେଇଥିବା ରାଜପୁରୁଷଙ୍କ ନିକଟରେ ପହଞ୍ଚିଲା । ରାଜପୁରୁଷଗଣ ଭିଡ଼କୁ ପାଲିଙ୍କି ସମୀପକୁ ଯିବାର ରାସ୍ତା ଛାଡ଼ିଦେଲେ । ଦରିଦ୍ରମାନେ ପାଲିଙ୍କିର କିଛି ଦୂରରେ ଅଟକିଗଲେ । ସେମାନେ ଭୂମି ସ୍ପର୍ଶପୂର୍ବକ ମୁଣ୍ଡନୁଆଁଇ ଦଣ୍ଡବତ କରି ଅଭୟଦାନ ମାଗି ନ୍ୟାୟ ପାଇଁକି ଆଶୀର୍ବାଦ କଲେ ।

ରାଜଦଣ୍ଡଧାରୀ ଚାରଣ ମହାରାଣୀଙ୍କର ଭାବ ଜାଣିପାରି ଆଗକୁ ବଢ଼ି ସେ ଭିଡ଼କୁ ସମ୍ବୋଧନ କଲା– "ପରମ ଭଗବତୀ, ପ୍ରଜାପାଳିକା, କଳିଙ୍ଗର ରାଜେଶ୍ୱରୀ ଅଭୟଦାନ ଦେଇଛନ୍ତି ! ପ୍ରଜା ନ୍ୟାୟ ପାଇଁ ପ୍ରାର୍ଥନା କରନ୍ତୁ ।"

ଭିଡ଼ ଭିତରୁ ଥରି ଥରି ବୃଦ୍ଧ ଜଣେ ଆଗକୁ ଆସିଲେ । ସେ ଧରିତ୍ରୀକୁ ଛୁଇଁ କରବଦ୍ଧ ହୋଇ କମ୍ପିତ କଣ୍ଠରେ ପ୍ରାର୍ଥନା କଲା– "ପରମ ଭଗବତୀ ମାତା, ଦୁଇଜଣଙ୍କୁ ନ୍ୟାୟର ଭିକ୍ଷା ମିଳୁ । ଦୁଇଜଣଙ୍କ ପ୍ରତି ଅନ୍ୟାୟ ହେଉଛି । ଭଗବତୀଙ୍କ ପ୍ରଜାଠାରୁ ତାଙ୍କର ବାପ-ଦାଦା ଭୂମି ଅଧିକାର କରିନେଇଛନ୍ତି । ପ୍ରଜାଙ୍କର କୁଟୀର ସବୁ ଭଙ୍ଗାଯାଇଛି । ଅନ୍ନଦାତା, ରକ୍ଷା ମିଳୁ !"

ମହାରାଣୀଙ୍କର ସୌମ୍ୟ, ଗୌର ମୁଖମଣ୍ଡଳରେ ଚିନ୍ତାର ରେଖାପାତ ହେଲା । ସେ ପାଲିଙ୍କି ନିକଟରେ ଥିବା ରାଜପୁରୁଷଙ୍କର ଯୂଥପଙ୍କୁ ସମ୍ବୋଧନ କଲେ – 'ପ୍ରଜା କ'ଣ କହୁଛନ୍ତି ? କ'ଣ ଏପରି ହେଉଛି ? ଏପରି କାହିଁକି ହେଉଛି ? ଏପରି କା'ର ଆଦେଶରେ ହେଉଛି ?'

ଯୂଥପ.. ଭିଡ଼କୁ ସମ୍ବୋଧନ କରି କହିଲେ– ''ପରମ ଭଗବତୀ, ଧର୍ମରକ୍ଷକ ରାଜେଶ୍ୱରୀ ଜାଣିବାକୁ ଚାହୁଁଛନ୍ତି, କ'ଣ ଏପରି ହେଉଛି ? ଏପରି କାହିଁକି ହେଉଛି ? କା'ର ଆଦେଶରେ ଏପରି ହେଉଛି ?''

ଭିଡ଼ ଭିତରୁ କେତେକଙ୍କ ସ୍ୱର ଏକ ସଙ୍ଗରେ ଶୁଭିଲା – ''ରାଜ ବର୍ମଚାରୀ ଓ ସୈନିକ ଆମର ଗାଁ ଉଜାଡ଼ିବାକୁ ଆଦେଶ ଦେଉଛନ୍ତି । ରାଜକର୍ମଚାରୀ କୁହନ୍ତି, ମହାସେନାପତିଙ୍କର ଏପରି ଆଦେଶ ଅଛି । ଆମ ବସ୍ତିର ଭୂମି ଉପରେ ଏକ ବିଶାଳ ଦୁର୍ଗ ତିଆରି ହେବ, ଏକ ମହାପ୍ରାସାଦ ତିଆରି ହେବ

ଦୀନ ପ୍ରଜାଙ୍କର ଗୁହାରି ଶୁଣି ନାହିଁର ସଂକେତ ଦେଇ କ୍ଷୁବ୍ଧସ୍ୱରରେ କହିଲେ – ''ନା-ନା- ଏପରି ହେବ ନାହିଁ । ଆମର ଦୁର୍ଗ ଲୋଡ଼ା ନାହିଁ, ଅନ୍ୟ ରାଜପ୍ରାସାଦ ଲୋଡ଼ା ନାହିଁ । ପରିଗ୍ରହରେ ସନ୍ତୋଷ ଓ ଶାନ୍ତି ନାହିଁ । .... ପ୍ରଜାଙ୍କୁ ଆଶ୍ୱାସନା ଦିଅନ୍ତୁ, ଏପରି ଅନ୍ୟାୟ ହେବ ନାହିଁ । କାହାରି ସ୍ଥାନ କିମ୍ବା ଭୂମି ନିଆଯିବ ନାହିଁ । ମୁଁ ଆଶ୍ୱାସନା ଦେଉଛି, ଏପରି ହେବନି ।''

ଯୂଥପ ପ୍ରଜାଙ୍କ ନିକଟକୁ ଯାଇ ମହାରାଣୀଙ୍କର ସନ୍ଦେଶ ଶୁଣାଇଦେଲେ ।

ପ୍ରଜାଙ୍କର ଆର୍ତ୍ତକାତର କଣ୍ଠ ନୀରବ ହୋଇଗଲା । ପ୍ରଜାବର୍ଗ ଉଚ୍ଚୈସ୍ୱରରେ କଳିଙ୍ଗ ରାଜେଶ୍ୱରୀଙ୍କର ଜୟ ଜୟକାର କଲେ –

''ପରମ ଭଗବତୀ ମହାରାଣୀଙ୍କର ଜୟ ହେଉ !
ରାଜେଶ୍ୱରୀ ମାତାଙ୍କର ପ୍ରତାପ ଅଖଣ୍ଡ ହେଉ !
ଅନ୍ନଦାତା ମାତାଙ୍କର ଜୟ ହେଉ !
ଦୟାସାଗର ଭଗବତୀଙ୍କର ଜୟ ହେଉ !''

ଚାରଣ ପାଲିଙ୍କି ସାମନାକୁ ଯାଇ ପୁଣି କହିଲେ – ''ପରମ ଭଗବତୀ ମହାରାଣୀଙ୍କର ଜୟ ହେଉ ! ପ୍ରଜା ଓ ପୌରଜନ ସସମ୍ମାନ ସାବଧାନ ! କଳିଙ୍ଗର ମହାମହିମାମୟୀ ରାଜେଶ୍ୱରୀଙ୍କ ପାଇଁ ପ୍ରଜାଗଣ ମାର୍ଗ ଦିଅନ୍ତୁ !''

ମହାରାଣୀଙ୍କର ପାଲିଙ୍କି ଚୈତ୍ୟର ଦ୍ୱାରଦେଶରୁ ରାଜପ୍ରାସାଦ ଅଭିମୁଖେ ପ୍ରସ୍ଥାନ କଲା ।

କଳିଙ୍ଗର ରାଜପ୍ରାସାଦରେ, ଅନ୍ତଃପୁରର ବିଶାଳ ଅଗଣାରେ, ଅଳିନ୍ଦମାନଙ୍କରୁ ପ୍ରମୋଦ ଉଦ୍ୟାନ ଆଡ଼କୁ ଚିକ୍କଣ ଶ୍ୱେତ ପ୍ରସ୍ତରର ଚୌଡ଼ା ଶିଡ଼ି ସବୁ ଉତୁରି ଯାଇଥିଲା । ଶିଡ଼ିରେ ଯୁବତୀ ରାଜଦାସୀ ହିତା, ଯୁବରାଣୀଙ୍କର ପ୍ରତୀକ୍ଷାରେ ଥିଲା । ହିତାର ମସ୍ତକ, କାନ୍ଧରୁ ନାଭି ପର୍ଯ୍ୟନ୍ତ ଗଭୀର ହଳଦିଆ ମୋଟା ବସ୍ତ୍ରରେ ଢଙ୍କା ଥିଲା । ଅଞ୍ଚଳ ସାମାନ୍ୟ ହାଲୁକା ହେବାରୁ ବସ୍ତ୍ର, ତାର ସୁଢୌଳ ପୁଷ୍ଟ ଶରୀରରୁ ନାଭି ଆଡ଼କୁ ଟାଣି ହୋଇ ରହିଥିଲା । ତାର ତମ୍ବରୁ ସଦୃଶ କଟିଦେଶରେ ଭିଡ଼ା ହୋଇଥିବା ଲାଲ ଶାଢ଼ିରେ ତାର ଶରୀରର ସୁନ୍ଦର ବର୍ତ୍ତୁଳତା ଆଉ ଚିକ୍କଣ ହୋଇଥିବା ପଲଙ୍କର ପୁଆ ପରି ପେଣ୍ଡୁଟିର ଗୋଲେଇ ଛପିପାରୁ ନ ଥିଲା । ଦାସୀ ଶରୀରର ଉପରିଭାଗର ଭାରସାମ୍ୟ ଠିକ୍ ରଖିବା ପାଇଁ ବାମହାତଟିକୁ ଅଣ୍ଟାରେ ରଖି, କାନ୍ଧକୁ ସାମାନ୍ୟ ପଛକୁ ନୁଆଁଇ ନେଇଥିଲା । ତାର ଡାହାଣହାତରେ ବଳବାନ୍ କୁକୁର ବଭ୍ରୁର ଜଞ୍ଜିର ଥିଲା । ବଭ୍ରୁ ପ୍ରାତଃକାଳୀନ ପ୍ରଥମ ମିଳନରେ ତା'ର ଲହଲହ କରୁଥିବା ଜିଭରେ ହିତାର ହାତକୁ ଛୁଇଁ ଦେଉଥିଲା । ହିତା ତାକୁ ସ୍ନେହରେ ଆକଟ କରୁଥିଲା– 'ଯା ପାଗଳ !' ବଭ୍ରୁ ଗଳାରେ ଲଟକିଥିବା ଜଞ୍ଜିର ଅନାବଶ୍ୟକ ଜଣାପଡୁଥିଲା । ସେ ସ୍ନେହର ଶିକୁଳିରେ ବନ୍ଧାହୋଇ ନିଜେ ହିତା ପାଖରେ ଲାଖି ଯାଇଥିଲା ।

ହିତା ଓ ବଭ୍ରୁ ଭିନ୍ନ ଜାତିର ଜୀବ ଥିଲେ ମାତ୍ର ଉଭୟଙ୍କର ଶରୀର ଗଠନରେ ଅନୁପାତର ଅନେକ ସାମ୍ୟତା ଥିଲା । ଉନ୍ନତ ସୁଗଠିତ ବକ୍ଷସ୍ଥଳ, ଉଭୟ ହସ୍ତରେ ସମାହିତ ଅର୍ଦ୍ଧଚନ୍ଦ୍ରଭଳି କଟି । ଗୋଲ ସୁଗଠିତ ଜଂଘ । ନେତ୍ରଯୁଗଳରେ ମଧ୍ୟ ସମ ତୀକ୍ଷ୍ଣତା । ହେମନ୍ତର କୁହୁଡ଼ିଭରା ପବନରେ ଦୁହିଁଙ୍କର ରୋମାଞ୍ଚ ହେଉଥିଲା, କିନ୍ତୁ ଦୁହିଁଙ୍କ ଭିତରେ ତତ୍ପରତାର ଭାବ ଥିଲା । ଦୁହେଁ ପ୍ରତୀକ୍ଷାରେ, ଅଳିନ୍ଦର ପଟକୁ ଖୋଲା ଦୀର୍ଘିକା ଆଡ଼କୁ ବାରବାର ଦେଖୁଥିଲେ । ଦୀର୍ଘିକା ଆଡ଼କୁ ଦେଖିଲା ବେଳେ ବଭ୍ରୁର କେତେବେଳେ ଡାହାଣକାନ ଟେକି ହୋଇ ଯାଉଥିଲା, କେତେବେଳେ ଡାହାଣକାନ ପଡ଼ିଯାଇ ବାମକାନ ଟେକି ହୋଇ ଯାଉଥିଲା ।

ବଭ୍ରୁ ହଠାତ୍ ଅଳିନ୍ଦ ଆଡ଼କୁ ଡେଇଁଲା । ତା ଶରୀର ଗଳାରେ ବନ୍ଧାଥିବା ଶୃଙ୍ଖଳରେ ଟାଣି ହୋଇଗଲା । ଜଞ୍ଜିରଟି ଟାଣି ହୋଇଗଲା ଆଉ ଜଞ୍ଜିରକୁ ଧରିଥିବା ଦାସୀର ହାତ ମଧ୍ୟ ଟାଣି ହୋଇଯାଇଥିଲା । ନିଜ ସ୍ଥାନରୁ ଟାଣି ହୋଇ ନ ଯିବ ବୋଲି ହିତା ମଧ୍ୟ ବିପରୀତ ଦିଗକୁ ଟାଣିହେଲା । ସେ ପଣତ ଖସି ପଡ଼ିଯିବନି ବୋଲି ଅଣ୍ଟାରେ ଖୋଷିନେଲା । ହିତା ବଭ୍ରୁର ବ୍ୟାକୁଳତାରୁ ବେଶ୍ ଅନୁମାନ କରି ନେଇଥିଲା ଯେ କୁକୁରର ତୀବ୍ର ନାକ ଆଉ କାନର

ଦୀର୍ଘିକାରେ ଯୁବରାଣୀଙ୍କର ଉପସ୍ଥିତିର ଆଭାସ ପାଇଯାଇଛି । କ୍ଷଣକପରେ ଯୁବରାଣୀ ଦୀର୍ଘିକାରୁ ଅଳିନ୍ଦରେ ଉପସ୍ଥିତ ହେଲେ ।

ମହାରାଜକୁମାରୀ ଅମିତାଙ୍କର କଳା, ଚିକ୍କଣ ଚିକୁରରେ ମୋତିମାଳ ଗୁନ୍ଥାହୋଇ ରହିଥିଲା, ମାତ୍ର କ୍ରୀଡ଼ାରେ ନାଚିବା ଡେଇଁବା ହେତୁ ତାଙ୍କର ବର୍ତ୍ତୁଳ ଗୌର ମୁଖମଣ୍ଡଳରେ ଅବିନ୍ୟସ୍ତ ହୋଇ ରହିଥିଲା । ରାଜକୁମାରୀଙ୍କର ଶରୀରରେ ସୁନାଜରିରେ ବୁଣା ପଶମ ଜାମା ଥିଲା ଏବଂ ବାଳସୁଲଭ ଶରୀର ଗଠନରେ ଉଦର ଓ କଟି ବାରି ହେଉ ନ ଥିଲା । ପୀତ ପଶମ ବସ୍ତ୍ରର ଏକ ଛୋଟ ଉତ୍ତରୀୟ ତାଙ୍କର ମେଖଳାରେ ବାନ୍ଧି ହୋଇ ରହିଥିଲା । କୋମଳ କରରେ ରତ୍ନଜଡ଼ିତ କଙ୍କଣ ପିନ୍ଧିଥିଲେ ଏବଂ କ୍ରୀଡ଼ା ଚଞ୍ଚଳତାରେ ଚନ୍ଦ୍ରହାର ସ୍କନ୍ଧଦେଶରେ ଲାଗି ରହିଥିଲା ।

ମହାରାଜକୁମାରୀ ପ୍ରତି ଦୁଇ ପାହୁଣ୍ଡ ଦଉଡ଼ିଯାଇ ତୃତୀୟ ପାଦ ବେଳକୁ ଅଧୀର ହୋଇ ପଡୁଥିଲେ । ତାଙ୍କ ପଛେ ପଛେ ଆସୁଥିବା ବୃଦ୍ଧ ରାଜରକ୍ଷୀ ଉଦ୍ଦାଳ ଲମ୍ୱା ରାଜକୀୟ ଚିହ୍ନ ବନ୍ଧା ପୋଷାକରେ ଦ୍ରୁତ ଗତି ହେତୁ ଧଇଁସଇଁ ହେଉଥିଲା । ଉଦ୍ଦାଳର ଅତି ବାର୍ଦ୍ଧକ୍ୟ ହେତୁ ନିଶଦାଢ଼ିରେ ଘୋଡ଼େଇ ହୋଇଥିବା ମୁହଁଟି ମଳିନ ପଡ଼ିଯାଇଥିଲା । ତାର ମୁହଁରେ ଅନୁଭବର ରେଖାସବୁ ଥିଲା, ଯାହା ଉତ୍ତରଦାୟିତ୍ୱର ବୋଝ ସ୍ପଷ୍ଟ କରୁଥିଲା । ଉଦ୍ଦାଳର ପଛରେ ଅଣନିଶ୍ୱାସୀ ହୋଇ ବୃଦ୍ଧା ଦାସୀ ବାପୀ ମଧ୍ୟ ଆସୁଥିଲା । ବାପୀ ହାତରେ ରାଜକୁମାରୀ ପାଇଁ ଚମଡ଼ାର ସୁନ୍ଦର ଛୋଟ ଛୋଟ ହଳେ ଲାଲ ଜୋତା ଥିଲା ।

ମହାରାଜକୁମାରୀ ଅମିତା ସ୍ନେହର ଆବେଗରେ ତାଙ୍କ ପାଖକୁ ଲାଗିଆସୁଥିବା ବଭ୍ରୁକୁ ଦେଖି ନିଜର ଛୋଟ ଗୋଲ୍ ମାଂସଳ ବାହୁ ତା ଆଡ଼କୁ ବଢ଼େଇ ଦେଇଥିଲେ । ଅମିତାଙ୍କ ହୃଦୟରେ ମଧ୍ୟ ସ୍ନେହ ଭରିଆସିଲା । ନବ ପ୍ରସ୍ଫୁଟିତ ଲାଲ କଢ଼ ସମ ତାଙ୍କର ଓଠ ଆଗକୁ ବଢ଼ି ଗୋଲ୍ ହୋଇଗଲା । ସେ କୁକୁରକୁ ଗେଲରେ ଡାକିଲେ – "ଆ ବଭ୍ରୁ ଆ !"

ବଭ୍ରୁ ଥରେ ମାଟିରେ ତା ପଞ୍ଝାକୁ ଜୋର ଭରାଦେଇ ଆହୁରି ବେଗରେ ରାଜକୁମାରୀ ପାଖରେ ଲାଗିଗଲା । ହିତା ଜଞ୍ଜିରକୁ ଦୁଇ ହାତରେ ଧରି କୁକୁରକୁ ଅଟକେଇନବାକୁ ପୂରାଶକ୍ତି ଲଗାଇ ଦେଲା । ହେମନ୍ତର ଶୀତରେ କଣ୍ଟକିତ ହିତାର ଗହମରଙ୍ଗିଆ ଶରୀର ଶ୍ରମର ଉଷ୍ମତାରେ ଚିକ୍କଣ ହୋଇଗଲା ଓ କପାଳରେ ସ୍ୱେଦକଣା ଉକୁଟି ଉଠିଲା । ଦାସୀର ଆଶଙ୍କା ଥିଲା, ପଶୁ ସ୍ନେହର ଉଦ୍‌ବେଗରେ ଦଉଡ଼ି ଯୁବରାଣୀଙ୍କୁ ଧକ୍କା ନ ଦେଉ । ଦାସୀଟି ଦୂରରୁ ହିଁ ତର୍ଜନୀ ଉଠାଇ କୁକୁରଟିକୁ ଶାନ୍ତ ରହିବାକୁ ଧମକେଇଲା । ବିଚରା ପଶୁଟି ବିବଶ ହୋଇ ନିଜ

ପେଟକୁ ତଳେ ପକେଇ ମାଟିରେ ମୁହଁ ରଗଡ଼ି ରଗଡ଼ି 'କୁଁ-କୁଁ' କରିବାକୁ ଲାଗିଲା ।

ଅମିତା କୁକୁର ପାଖରେ ବସିପଡ଼ି ଆଦରରେ ତାର ମୁଣ୍ଡକୁ କୋଳରେ ରଖି ଗେଲକଲେ । ତେବେ ମଧ୍ୟ ହିତା ବଭ୍ରୁର ଶିକୁଳିକୁ ସତର୍କତା ସହିତ ଟାଣିରଖିଥିଲା, କାରଣ ସେ ସ୍ନେହ ମୂଢ଼ତାବଶତଃ ରାଜକୁମାରୀଙ୍କର ମୁଖକୁ ତା ଜିଭରେ ଚାଟି ନ ଦେଉ । ଯେତେବେଳେ ବଭ୍ରୁ ଅଧୀରହୋଇ ନିଜ ଜିଭ ଅମିତାର ମୁହଁ ଆଡ଼କୁ ବଢ଼ାଉଥିଲା, ହିତା ଜଞ୍ଜିର ଟାଣି ନେଉଥିଲା ।

ପ୍ରୌଢ଼ା ଦାସୀ ବାପୀ ଆଗକୁ ବଢ଼ି ଅମିତାଙ୍କର ଜୋତା ତାଙ୍କ ସାମନାରେ ଥୋଇ ବିନୟ କଲା "ଅୟେ ମହାରାଣୀ, ଜୋତା ପିନ୍ଧନ୍ତୁ । ଘାସରେ ଛପିଥିବା କୀଟ-କଣ୍ଟକ କୋମଳ ପାଦକୁ କଷ୍ଟ ଦେବ । ବହୁତ ପୀଡ଼ା ହେବ ।"

ଅମିତା ତାଙ୍କର କୁଞ୍ଚିତ କେଶ ଜୋତା ପିନ୍ଧିବାକୁ ଅସ୍ୱୀକାର କରିବା ଭଙ୍ଗୀରେ ଛାଟିଦେଇ ପାହାଚ ପରେ ପାହାଚ ଡେଇଁ ଡେଇଁ ପ୍ରମୋଦ ଉଦ୍ୟାନରେ ଉତୁରିବାକୁ ଲାଗିଲେ ।

କଳିଙ୍ଗର ଯୁବରାଣୀ ମହାରାଜକୁମାରୀ ଅମିତାଙ୍କର ଆୟୁ ଛ'ବର୍ଷ ଥିଲା । ମଗଧର ସମ୍ରାଟ ବିନ୍ଦୁସାରଙ୍କର ପୁତ୍ର ଅଶୋକ ସିଂହାସନ ଆରୂଢ଼ ହେଲାପରେ ଚାରିବର୍ଷ ପର୍ଯ୍ୟନ୍ତ ନିଜର ଅନ୍ତରଙ୍ଗ ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ଓ ଶତ୍ରୁମାନଙ୍କୁ ନିର୍ମୂଳ କରିଥିଲେ । ରାଜବଂଶର ପ୍ରତିଦ୍ୱନ୍ଦ୍ୱୀମାନଙ୍କ ଠାରୁ ନିଶ୍ଚିନ୍ତ ହୋଇ ଅଶୋକ ନିଜର ରାଜ୍ୟାଭିଷେକ କରି ସମ୍ରାଟ ପଦବୀ ଗ୍ରହଣ କଲେ ଏବଂ ବୌଦ୍ଧଧର୍ମ ଗ୍ରହଣ କରିନେଲେ । ତା ପରେ ସେ ଦକ୍ଷିଣ ଦିଗରେ ସାମ୍ରାଜ୍ୟର ପ୍ରସାର ନିମନ୍ତେ କଳିଙ୍ଗ ଦେଶ ଆକ୍ରମଣ କଲେ ।

କଳିଙ୍ଗର ମହାପ୍ରତାପୀ, ଦେବରକ୍ଷିତ, ଧର୍ମରକ୍ଷକ ମହାରାଜାଧିରାଜ ସାମ୍ରାଜ୍ୟ ବିସ୍ତାର କରିବା ଇଚ୍ଛା କରୁଥିବା ମଗଧ ସମ୍ରାଟ ଅଶୋକଙ୍କର ଆକ୍ରମଣର ପ୍ରତିରୋଧ କରି ନିଜ ରାଜ୍ୟର ସୀମା ପର୍ଯ୍ୟନ୍ତ ସୈନ୍ୟ ନେଇ ପ୍ରତିଆକ୍ରମଣ କରିଥିଲେ । ହାତୀ ଉପରେ ଚଢ଼ି ଯୁଦ୍ଧକ୍ଷେତ୍ରରେ ନିଜ ସେନା ନେଇ ଯୁଦ୍ଧ କଲାବେଳେ କଳିଙ୍ଗ ରାଜାଙ୍କର ଶରୀରରେ କେତେକ ବାଣ ଲାଗି ଯାଇଥିଲା । ମହାରାଜ ନିଜ ଶରୀରରେ ଲାଗିଥିବା କ୍ଷତ ସବୁର ଚିନ୍ତା ନ କରି, ଅଶୋକଙ୍କର ସେନାମାନଙ୍କୁ ନିଜ ରାଜ୍ୟର ସୀମାରୁ ପଚାଶ ଯୋଜନ ଦୂର ପଛକୁ ଘଉଡ଼ିନେଇ ରାଜଧାନୀକୁ ଫେରିଥିଲେ । ମହାରାଜ ଯୁଦ୍ଧରେ ବିଜୟୀ ହୋଇଥିଲେ କିନ୍ତୁ କ୍ଷତସ୍ଥାନ ସବୁର ଚିକିତ୍ସା ଅନେକ ବଡ଼ ଚତୁର ବୈଦ୍ୟ ଓ ଶଲ୍ୟ-କ୍ରିୟାଦକ୍ଷ ଚିକିତ୍ସକମାନଙ୍କ ଦ୍ୱାରା ଏକବର୍ଷ ପର୍ଯ୍ୟନ୍ତ ବିତିଲା ପରେ ମଧ୍ୟ ତାଙ୍କର ସ୍ୱାସ୍ଥ୍ୟ ଲାଭ ହୋଇ ନ ଥିଲା ।

ଯେଉଁଥର ଅଶୋକ ନିଜ ସାମ୍ରାଜ୍ୟରେ କଳିଙ୍ଗକୁ ମିଶାଇ ଦେବାପାଇଁ ପ୍ରଥମ ଯୁଦ୍ଧ କରିଥିଲେ, କଳିଙ୍ଗରାଜାଙ୍କର ସିଂହାସନାରୂଢ଼ ହେବାର ଆଠବର୍ଷ ବିତି ସାରିଥିଲା, କିନ୍ତୁ ସେ ନିଃସନ୍ତାନ ଥିଲେ । ମହାରାଣୀ ମଧ୍ୟ ଏ ଅଭାବ ପାଇଁ ଦୁଃଖିତା ଥିଲେ । ଅଶୋକଙ୍କର ଆକ୍ରମଣର ବର୍ଷେ ପୂର୍ବରୁ ମହାରାଣୀ ନନ୍ଦା କଳିଙ୍ଗନଗରକୁ ଆସି ବୌଦ୍ଧସ୍ଥବିର ଜୀବକଙ୍କର ଚମତ୍କାର ସିଦ୍ଧିର ପ୍ରଶଂସା ଶୁଣିଥିଲେ । ସେ ସ୍ଥବିରଙ୍କ ପାଖରେ ବନ୍ଧ୍ୟାଭାବର ଅଭିଶାପ ଦୂର କରିବା ପାଇଁ ପ୍ରାର୍ଥନା କଲେ । ସ୍ଥବିର ଜୀବକଙ୍କର ଆଶୀର୍ବାଦରେ ଗର୍ଭଧାରଣ କରିଥିଲେ । ଜ୍ୟୋତିଷମାନଙ୍କ କଥନ ଅନୁସାରେ ଯେଉଁ ଶୁଭମୁହୂର୍ତ୍ତରେ ମହାରାଜା ଅଶୋକଙ୍କର ଆକ୍ରମଣର ପ୍ରତିରୋଧ କରିବା ପାଇଁ ଉତ୍ତରଦିଗ ଅଭିମୁଖେ ଯୁଦ୍ଧଯାତ୍ରା କଲେ, ସେହି ସମୟରେ ମହାରାଣୀ ନନ୍ଦା ପ୍ରଥମ ସନ୍ତାନ ରାଜକୁମାରୀଙ୍କୁ ଜନ୍ମ ଦେଇଥିଲେ । ରାଜଜ୍ୟୋତିଷ ମହାରାଜାଙ୍କର ବିଜୟ ଅଭିଯାନ ମୁହୂର୍ତ୍ତରେ ରାଜକୁମାରୀ ଅମିତ, ଅକ୍ଷୟ ବୈଭବ ଏବଂ ପ୍ରତାପୀ ହେବେ ବୋଲି ଭବିଷ୍ୟବାଣୀ ଦେଇଥିଲେ । ଜ୍ୟୋତିଷ ଗଣନା ଅନୁସାରେ ରାଜକୁମାରୀ ଅମିତ ବୈଭବ ଆଉ ପରାକ୍ରମୀ ହେବାର ବିଶ୍ୱାସରେ ରାଜକୁମାରୀଙ୍କର ନାମ ଅମିତା ରଖାଯାଇଥିଲା ।

କଳିଙ୍ଗ ରାଜା ବୀର ପ୍ରକୃତିର ଥିଲେ । ପୂର୍ଣ୍ଣ ଯୌବନରେ ଯୁଦ୍ଧର କ୍ଷତ ପାଇଁ ବୀରଗତି ପାଇ ସ୍ୱର୍ଗାରୋହଣ କଲାବେଳେ ମଧ୍ୟ ସେ ଅଧୀର ନ ଥିଲେ । ସେ ନିଜ ପିତା ମହାରାଜ ମୟୂଖଙ୍କ ସମୟର ବିଶ୍ୱାସପାତ୍ର ଓ ଅନୁଭବୀ ମହାମାତ୍ୟ ଆଚାର୍ଯ୍ୟ ସୁକଣ୍ଠ ଶର୍ମା, ମହାସେନାପତି ଓ ଭଦ୍ରକୀର୍ତ୍ତି, ଧର୍ମସ୍ଥ ଆର୍ଯ୍ୟ ପ୍ରଜିତଙ୍କ ହାତରେ ନିଜ ବଂଶ ଓ ରାଜ୍ୟର ରକ୍ଷାଭାର ସମର୍ପଣ କରି ଆଦେଶ ମଧ୍ୟ ଦେଇଥିଲେ ଯେ ସେ କଳିଙ୍ଗ ରାଜ୍ୟର ଉତ୍ତରାଧିକାରୀ ରୂପେ ଏକ ଅଶକ୍ତ ଶିଶୁ ବାଳିକାକୁ ଛାଡ଼ିଯାଉଛନ୍ତି । କଳିଙ୍ଗର ରାଜବଂଶ ଓ ରାଜମର୍ଯ୍ୟାଦାର ରକ୍ଷାଭାର ରାଜ୍ୟ-ପରିଷଦଙ୍କ ଉପରେ ହିଁ ନ୍ୟସ୍ତ ହେବ ।

ମହାମାତ୍ୟ ଆର୍ଯ୍ୟ ସୁକଣ୍ଠ, ମହାସେନାପତି ଭଦ୍ରକୀର୍ତ୍ତି ଓ ଧର୍ମସ୍ଥ ଆର୍ଯ୍ୟ ପ୍ରଜିତ ମହାରାଜଙ୍କର ରୋଗଶଯ୍ୟା ନିକଟରେ ଶପଥ ଗ୍ରହଣ କରିଥିଲେ ଯେ ତାଙ୍କ ଶରୀରରେ ପ୍ରାଣ ଥିଲା ପର୍ଯ୍ୟନ୍ତ ସେମାନେ କଳିଙ୍ଗର ବଂଶଧରଙ୍କର ଓ କଳିଙ୍ଗ ରାଜ୍ୟର ମର୍ଯ୍ୟାଦା ରକ୍ଷା କରିବେ । ମହାରାଜାଙ୍କର ଶେଷ ନିଶ୍ୱାସ ପୂର୍ବରୁ ହିଁ ରାଜକୁମାରୀ ଅମିତାଙ୍କୁ କଳିଙ୍ଗ ରାଜସିଂହାସନର ଉତ୍ତରାଧିକାରିଣୀ ଯୁବରାଜ୍ଞୀରୂପେ ଅଭିଷିକ୍ତ କରାଯାଇଥିଲା ।

ମହାରାଜାଙ୍କର ଦେହାନ୍ତ ପରେ ମହାରାଣୀ ନନ୍ଦାଙ୍କର ମନରେ ବୈଭବ ବିଳାସ ପ୍ରତି ବିରାଗଭାବ ଆସିଥିଲା । ସଂସାରପ୍ରତି ସବୁବେଳେ ବିରକ୍ତିଭାବ ଥିଲା, ମାତ୍ର

ଯୁବରାଜ୍ଞୀ ଏବଂ ରାଜ୍ୟପ୍ରତି ସଯତ୍ନ ଥିଲେ । ରାଜସିଂହାସନ ଲାଳସୀ ରାଜବଂଶୀୟ ଲୋକସବୁ ଯୁବରାଜ୍ଞୀଙ୍କ ହାତରୁ ସିଂହାସନ ଛଡ଼େଇନବା ପାଇଁ ଅନେକ ପ୍ରପଞ୍ଚ କରିଥିଲେ ମାତ୍ର ଆର୍ଯ୍ୟ ସୁକଣ୍ଠ, ଭଦ୍ରକୀର୍ତ୍ତି ଏବଂ ପ୍ରଜିତଙ୍କର ସତର୍କତାବଶତଃ ସେମାନେ ବିଫଳ ହୋଇଥିଲେ । ମହାରାଣୀ ସଂସାରଟି ଦୁଃଖମୟ ମନେକରି, ସଂସାର ପ୍ରତି ବିରକ୍ତ ହୋଇ ତଥାଗତ ବୁଦ୍ଧଙ୍କର ଆଶ୍ରୟ ନେଇ ଶାନ୍ତିର କାମନା କରି ନିଷ୍କାମ ଏବଂ ନିଃସଙ୍ଗ ହୋଇ ନିଜ ସମୟଟିକୁ ଶାନ୍ତି ଏବଂ ନିର୍ବାଣପ୍ରାପ୍ତିର ଚିନ୍ତାରେ ବିତେଇ ଚାଲିଥିଲେ ।

ଯୁବରାଜ୍ଞୀ ଅମିତା ଶ୍ୱେତପ୍ରସ୍ତରର ପାହାଚ ଡେଇଁ ଡେଇଁ ପ୍ରମୋଦ-ଉଦ୍ୟାନରେ ଓହ୍ଲେଇଗଲେ । ବଭ୍ରୁକୁ ହିତା ଜଞ୍ଜିରରୁ ମୁକୁଳେଇ ଦେଲା । ଦାସୀଟି ଧରିଥିବା କାଠର ପେଣ୍ଡୁଟିକୁ ଘାସ ଉପରେ ଚମକି ଉଠୁଥିବା ଶିଶିର ବିନ୍ଦୁ ଉପରେ ଗଡ଼େଇଦେଲା । ବଭ୍ରୁ କୁଦା ମାରି ମାରି କାଠପେଣ୍ଡୁ ଆଡ଼କୁ ଦୌଡ଼ିଗଲା । ରାଜକୁମାରୀ ସୁକୋମଳ ହାତ ଦୁଇଟିରେ ତାଳି ମାରିମାରି ବଭ୍ରୁ ପଛରେ ଗୋଡ଼େଇଲେ । ଦାସୀ ହିତା ଦେହରକ୍ଷୀ ହେତୁ ଦୂରକୁ ରାଜକୁମାରୀ ଚାଲି ନ ଯାଆନ୍ତୁ ଭାବି ନିଜେ ମଧ ଦୌଡୁଥିଲା । ବୃଦ୍ଧ ଉଦ୍ୟାନପାଳ ଓ ପ୍ରୌଢ଼ା ଦାସୀ ବାପୀ ମଧ୍ୟ ତାଙ୍କ ପଛରେ ଚାଲିଥିଲେ । ବଭ୍ରୁ ପେଣ୍ଡୁଟିକୁ କାମୁଡ଼ି ଦୌଡ଼ି ଦୌଡ଼ି ଆସି ଅମିତା ହାତରେ ଦେଇଦେଲା । ଅମିତା ନିଜ ଛୋଟ ବାହୁର ସାମର୍ଥ୍ୟ ଲଗେଇ ପେଣ୍ଡୁଟିକୁ ଯଥାସମ୍ଭବ ଦୂରକୁ ପୁଣି ଫିଙ୍ଗିଦେଲେ । ପେଣ୍ଡୁଟି ବେଶୀ ଦୂରକୁ ଯାଇପାରି ନ ଥିଲା । କୁକୁରଟି ତୁରନ୍ତ ପେଣ୍ଡୁଟିକୁ ନେଇଆସିଲା । ରାଜକୁମାରୀଙ୍କର ଇଚ୍ଛାରେ ହିତା ପୁଣି ପେଣ୍ଡୁଟିକୁ ଖୁବ୍ ଦୂରକୁ ଫିଙ୍ଗିଦେଲା । କାଠପେଣ୍ଡୁଟି ପ୍ରମୋଦ ଉଦ୍ୟାନର ଜଳକୁଣ୍ଡରେ ପଡ଼ି ଭାସିବାକୁ ଲାଗିଲା । ବଭ୍ରୁ ଚାଲି ଯାଉଥିବା ପେଣ୍ଡୁଟିକୁ ନେଇଆସିବା ଆଦେଶ ଭାବି ଜଳକୁଣ୍ଡକୁ କୁଦିପଡ଼ି ପେଣ୍ଡୁଟିକୁ ପାଟିରେ ନେଇ ଅମିତା ପାଖକୁ ଦୌଡ଼ି ଆସୁଥିଲା । ହିତାର ଆଶଂକା ହେଉଥିଲା, କୁକୁରଟି ନିଜ ଭିଜା ଶରୀରରେ ରାଜକୁମାରୀଙ୍କ ବସ୍ତ୍ର ଭିଜେଇ ନ ଦେଉ । ସେ ରାଜକୁମାରୀଙ୍କ ସାମନା ହୋଇ କୁକୁରଟିର ଗଳାରେ ଥିବା କନାପଟିଟିକୁ ଧରିନେଲା ।

ହିତା ତିନ୍ତିଯାଇଥିବା କୁକୁରଟି ପାଖରୁ ଧ୍ୟାନ ଭାଙ୍ଗିବ ବୋଲି ଜଳକୁଣ୍ଡ ସମୀପର ପ୍ରସ୍ତର ନିର୍ମିତ ମଣ୍ଡପଟିକୁ ଦେଖାଇ ନିର୍ଦ୍ଦେଶ କଲା— "ମହାରାଣୀ ପକ୍ଷୀମାନଙ୍କୁ ଅନ୍ନ ଦେବେ !"

"ହଁ, ହଁ ଦେବି !" ବାଳିକା ରାଜକୁମାରୀ ପ୍ରସନ୍ନତାରେ ନାଚି ଉଠିଲେ । ହିତା ବଭ୍ରୁକୁ ବୃଦ୍ଧା ଦାସୀ ପାଖରେ ବସେଇଦେଇ ନିଜ ଅଣ୍ଟିଭିତରେ ହାତଭରି

ମଣ୍ଡପର ଛାତ ଓ ନିକଟରେ ଥିବା କଦମ୍ବବୃକ୍ଷର ଆଡ଼କୁ ମୁହଁକରି ଆ.... ଆ....କରି ଡାକିଲା !

ହିତାର ଡାକରେ ଅନେକ ପାରା "ଘୁଟର୍-ଘୁଁ ଘୁଟର୍-ଘୁଁ" ଶବ୍ଦରେ ଉତ୍ତର ଦେଉଥିଲେ । ପାରାସବୁ ଡେଣାମେଲାଇ ତା ଆଡ଼କୁ ଉଡ଼ିଆସିଲେ । ତିନୋଟି ପାରା ହିତାର ମୁଣ୍ଡ ଓ କାନ୍ଧରେ ବସିଗଲେ, ଦୁଇଟି ତା ହାତରେ ବସିବାକୁ ଲଢ଼ିଲେ, କେତେ ପାରା ଭୂମିରେ ଭର୍ ଭର୍ ଘୂରି ଦାନା ଖୁମ୍ପିବାରେ ଲାଗିଲେ ।

"ମୁଁ, ମୁଁ, ମୁଁ ଖୁଏଇବି । ନିଜ ହାତରେ ପାରାଙ୍କୁ ଖୁଆଇବି ।" ଅମିତା ଆଗ୍ରହ ପ୍ରକାଶ କଲେ, "ମୋ ମୁଣ୍ଡରେ ପାରା ବସେଇଦିଅ !"

ହିତା ରାଜକୁମାରୀଙ୍କର କୋମଳ ହାତ, ପାପୁଲି ଓ ମୁଣ୍ଡରେ ଅନ୍ନର ଦାନା ରଖିଦେଲା । ପାରା ଦୁଇଟି ରାଜକୁମାରୀଙ୍କ ଶରୀରରେ ବସୁ ବସୁ ବଭ୍ରୁ ଦାସୀ ହାତରୁ ଛୁଟିଆସି ରାଜକୁମାରୀଙ୍କୁ ଆକ୍ରମଣ କରୁଥିବା ପକ୍ଷୀଦୁଇଟିଙ୍କୁ ଝପଟି ପଡ଼ିଲା । ଆତଙ୍କିତ ପକ୍ଷୀ ଦୁଇଟି ଫଡ଼ ଫଡ଼ ହୋଇ ତୁରନ୍ତ ଉଡ଼ିଗଲେ । ରାଜକୁମାରୀ.... ତାଳି ମାରି ମାରି ଏ ଖେଳ ଦେଖି ହସିଲେ ।

ବଭ୍ରୁ ଏ ପକ୍ଷୀମାନଙ୍କର ଦୁଃସାହସ ଧୃଷ୍ଟତା ପାଇଁ ଭୁକି ଭୁକି ଧମକେଇବାକୁ ଲାଗିଲା । ଅମିତା ତାଙ୍କର ଛୋଟ ଛୋଟ ହାତରେ ଗେଲକରି ଥାପୁଡ଼େଇ ବଭ୍ରୁକୁ ବୁଝେଇଲେ– ତୁ ନିରୀହ ପାରାମାନଙ୍କୁ କାହିଁକି ଆତଙ୍କିତ କରୁଛୁ ! ମା କହନ୍ତି, କାହା ପାଖରୁ ଛଡ଼େଇ ନିଅ ନାହିଁ, କାହାକୁ ଡରାଅ ନାହିଁ, କାହାକୁ ମାରିବ ନାହିଁ । ତୁ ଯଦି ଭୋକରେ ଅଛୁ ମୁଁ ତୋତେ କ୍ଷୀରଭାତ ଦେବି । ତୁ କପୋତମାନଙ୍କୁ ଖାଅନା ।

ଦାସୀର ଇସାରାପାଇ ବଭ୍ରୁ ମୁଣ୍ଡ ନୁଆଁଇ ତା ପାଖରେ ବସିପଡ଼ିଲା । ହିତା ପୁଣି ପାରାମାନଙ୍କୁ ରାଜକୁମାରୀଙ୍କ ପାଖକୁ ଡାକିଲା । ଆତଙ୍କିତ ପକ୍ଷିଗଣ ସନ୍ଦେହରେ ସେ-ପଟକୁ ଦେଖିଲେ ଓ ଶଙ୍କିତ ହୋଇ ମଣ୍ଡପ ବାଡ଼ ଓ କଦମ୍ବଗଛର ଶାଖାମାନଙ୍କରୁ ତଳକୁ ଆସିଲେ । ହିତା ବହୁତ ସାହସ ବଢ଼େଇବାରୁ ପୁଣି ପକ୍ଷୀସବୁ ରାଜକୁମାରୀଙ୍କର ଶରୀରରେ ଆସି ବସିଲେ । ବଭ୍ରୁ ଦୁଇଗୁଣା ରାଗି ପକ୍ଷୀଙ୍କ ଆଡ଼କୁ ଝପଟି ପଡ଼ିଲା । ପକ୍ଷୀ ପୁଣି ଭୟଭୀତ ହୋଇ ଉଡ଼ିଗଲେ ।

ଯୁବରାଜ୍ଞୀ ଅମିତା ବଭ୍ରୁର ଏ ଉଦ୍ଦଣ୍ଡତା ଦେଖି କ୍ଷୁବ୍ଧ ହୋଇପଡ଼ିଲେ । ଦାସୀ ଉଦ୍ଧାଳକୁ ସମ୍ବୋଧନ କରି ସେ ଡାକିଲେ– "ମାମା, ଏ ବଭ୍ରୁ ବଡ଼ ଦୁଷ୍ଟ । ନିରୀହ ପକ୍ଷୀମାନଙ୍କୁ ଡରଉଛି, ଛଡ଼େଇ ନେଉଛି, ସେ ମାରୁଛି ।" ମା କହନ୍ତି– "କାହା ପାଖରୁ ଛଡ଼େଇ ନିଅ ନାହିଁ, କାହାକୁ ଡରାଅ ନାହିଁ, କାହାରିକୁ ମାର ନାହିଁ । ମୁଁ ଏହାକୁ ଦଣ୍ଡଦେବି । ଏହାକୁ ଜଞ୍ଜିରରେ ବାନ୍ଧି ବନ୍ଦୀ କର ।"

ବୃଦ୍ଧ ଉଦ୍ଧାଳ ବଭ୍ରୁ ବେକରେ ଥିବା ଫିତାଟିରେ ଜଞ୍ଜିର ଲଗେଇଦେଇ ଅବୋଧ ପଶୁଟି ପାଇଁ ଯୁବରାଜ୍ଞୀଙ୍କର କ୍ରୋଧ ହେତୁ କ୍ଷମାପ୍ରାର୍ଥନା କଲେ– "ଅମ୍ଭେ ମହାରାଣୀ, ଏ ଅବୋଧ ପଶୁଟି ତ ଏହାହିଁ ଶିଖିଛି । ମହାରାଣୀ କ୍ଷମାକରନ୍ତୁ, ସେବକ ବଭ୍ରୁ ତ ମହାରାଣୀଙ୍କର ଶରୀର ରକ୍ଷା କରିଛି । ଦେବଲୋକପ୍ରାପ୍ତ, ପରମପ୍ରତାପୀ ମହାରାଜାଙ୍କର ସେବାରେ ସେ ଶିକାର ପାଇଁ ଗଲାବେଳେ ସିଂହ ଏବଂ ବରାହମାନଙ୍କୁ ମହାରାଜାଙ୍କ ଦିଗରେ ବଢ଼ିବାର ଦେଖିଲେ ତାଙ୍କର ରକ୍ଷା ଉଦ୍ଦେଶ୍ୟରେ ତତ୍ପର ରହୁଥିଲା । ଏଇ ଭକ୍ତି ଓ ନିଷ୍ଠା ପାଇଁ ଏ ମହାରାଜାଙ୍କର କୃପା ଓ ସ୍ନେହର ପାତ୍ର ହୋଇ ରହିଛି । ସେଇ ମହାପ୍ରତାପୀ ମହାରାଜାଙ୍କର ଧନୁର ଟଂକାରରେ ପୃଥ୍ୱୀକୁ ଜିଣିବା ଦର୍ପ କରୁଥିବା ଚଣ୍ଡ ଅଶୋକଙ୍କର ବୀରତା ଭୀରୁତାରେ ପରିଣତ ହୋଇଯାଏ । ଅମ୍ଭେ ମହାରାଣୀ, ବଭ୍ରୁ ସେଇ କଳିଙ୍ଗ ରାଜାଙ୍କର ସେବକ । ସେ ନିଜର ସ୍ୱାମିନୀ ଯୁବରାଣୀଙ୍କର ଅଙ୍ଗସ୍ପର୍ଶ କରିବାକୁ କୌଣସି ଜୀବକୁ କେମିତି ଛାଡ଼ିଦେବ ?"

ବୃଦ୍ଧ ଉଦ୍ଧାଳ ମହାରାଜକୁମାରୀଙ୍କୁ ସବୁବେଳେ ରୋଚକ ଓ ରୋମାଞ୍ଚକର କଥା ସବୁ ଶୁଣାଇଥିଲା । ଯୁବରାଣୀ ମଧ ବୃଦ୍ଧର କଥାସବୁ ଧ୍ୟାନଦେଇ ଶୁଣୁଥିଲେ । ଅମିତାଙ୍କର ସରଳ ଚେହେରାରେ କ୍ଷୋଭ ପରିବର୍ତ୍ତେ ଚିନ୍ତା ଓ ବିଚାରର ଭାବ ଖେଳିଗଲା । ବୃଦ୍ଧଙ୍କର ଶୁକ୍ଳ ଶ୍ମଶ୍ରୁଢଙ୍କା ମୁଖଟିକୁ ଆଖି ଉଠାଇ ଦେଖି ପ୍ରଶ୍ନ କଲେ– "ମାମା, ଅନ୍ୟଠାରୁ ଛଡ଼େଇ ନେବା, ଡରେଇବା, ଅନ୍ୟକୁ ମାରିବା କ'ଣ ବୀରତା ? ମା କହୁଛନ୍ତି, ଏପରି କରିବା ଉଚିତ ନୁହଁ । ମା କହୁଛନ୍ତି– ଏହା ପାପ ଅଟେ, ପାପ ନ କରିବା ଉଚିତ ।"

ଉଦ୍ଧାଳ ଟିକିଏ ସଂକୋଚ କରି ସ୍ୱୀକାର କଲେ– "ଅମ୍ଭେ ମହାରାଣୀ, ପରମ ଭଗବତୀ ସତ୍ୟ କହିଛନ୍ତି । ମହାରାଣୀ, ସେଇ ଧର୍ମ ଅଭିଜାତ ସ୍ୱାମୀବର୍ଗ ଏବଂ ତ୍ୟାଗୀ ସନ୍ଥମାନଙ୍କୁ ଶୋଭାଦିଏ । ରାଜବଂଶର ସେବକମାନଙ୍କୁ ସ୍ୱାମୀଭକ୍ତି ଏବଂ ସାହସ ହିଁ ଶୋଭାଦିଏ ।"

ଯୁବରାଜ୍ଞୀଙ୍କର ମନ ଖେଳରେ ଆଉ ରହି ନ ଥିଲା । ସେ ଉଦାସ ଭାବରେ ମୁଣ୍ଡହଲାଇ କହିଲେ 'ନା, ବଭ୍ରୁ ବହୁତ ଦୁଷ୍ଟ ।' ଆଚ୍ଛା, ମୁଁ ମା'ଙ୍କ ପାଖକୁ ଯିବି ।

ଯୁବରାଜ୍ଞୀଙ୍କର ଉଦାସୀଭାବ ଦେଖି ପ୍ରୌଢ଼ା ବାପୀ ଆଗକୁ ବଢ଼ି ହିତାକୁ କହିଲା– "ମହାରାଣୀଙ୍କ ପାଇଁ ନୂଆ ହରିଣ ଶାବକ ଆସିଛି । ତୁ କୋଉଠି ଲୁଚେଇ ରଖିଛୁ ରେ ? ମହାରାଣୀ ତାକୁ ଦେଖିବେ !"

ହିତା ରାଜକୁମାରୀଙ୍କ ସାମନାରେ ନଇଁପଡ଼ି ବିନୟ ଭାବରେ ହସି ହାତର ଇସାରାରେ ସଂକେତକରି ବତେଇଲା – ‘‘ଏତେ ଛୋଟ ଛୋଟ କଉତୁକିଆ ହରିଣଶାବକ ଜଳକୁଣ୍ଡ ପାଖରେ ଟୁକ୍ ଟୁକ୍ କରି ଦୂବଘାସ ଚରୁଛନ୍ତି । ମହାରାଣୀ ସେମାନଙ୍କୁ ଦେଖିବେ ?’’ ଅମିତାଙ୍କୁ ନୂଆ ଅଣାହୋଇଥିବା ହରିଣମାନଙ୍କୁ ଦେଖିବାର ଆଗ୍ରହ ହେଲାନି । ସେ ମୁଣ୍ଡ ହଲାଇ ଯିବେନି ବୋଲି ହଟ କଲେ– ‘‘ଏବେ ଯିବିନି, ମୁଁ ମା’ଙ୍କ ପାଖକୁ ଯିବି ।’’

ଉଦ୍ଦାଳ ରାଜକୁମାରୀଙ୍କ ପାଦତଳେ ବସି ନିବେଦନ କଲା– ‘‘ସ୍ୱାମିନୀ, ପରମଭଗବତୀ ମହାରାଣୀ ମାତାଙ୍କର ଶିବିକା ପୂଜାପାଇଁ ଚୈତ୍ୟ ଯାଇଛି, ଏବେ ସେ ଫେରି ଆସି ନାହାନ୍ତି ।’’

ବାପୀ ଅମିତାଙ୍କର ନିହାତି ନିକଟରେ ବସି ରହସ୍ୟର ସ୍ୱରରେ କହିଲା– ‘‘ମହାରାଣୀ, ନୂଆ ହରିଣ ଶାବକମାନଙ୍କୁ ଯେ ପ୍ରଥମ ନିଜ ହାତରେ ଖୁଏଇବ, ଶାବକମାନେ ତାର ମିତ୍ର ହୋଇଯିବେ ।’’ ପୁଣି ପ୍ରୌଢ଼ା ବଡ଼ପାଟିରେ ବାରଣ କଲା– ‘‘ହିତୁ, ପ୍ରଥମ ଶାବକମାନଙ୍କୁ ଦୂବ ଦେବ ନାହିଁ । ପ୍ରଥମ ମହାରାଣୀ ଖୁଆଇବେ ।’’

ହିତା ହରିଣ ଛୁଆଙ୍କପ୍ରତି କରୁଣା ପ୍ରକାଶ କରିବା ପାଇଁ ଓଠ ଉପରେ ଆଙ୍ଗୁଳିରଖି ପ୍ରାର୍ଥନା କଲା– ‘‘ମହାରାଣୀ, ଛୋଟ ଛୋଟ ଶାବକସବୁ ତ ବଡ଼ ଭୋକରେ ଅଛନ୍ତି ।’’

ପ୍ରାସାଦର ଦୁଆର ପଟରୁ ଉଦ୍ୟାନକୁ ଦାସୀ ଜଣେ ଆସି କହିଲା– ‘‘ମାମା, ପରମଭଗବତୀଙ୍କର ପାଲିଙ୍କି ଚୈତ୍ୟରୁ ଫେରିଆସିଲାଣି । ମହାରାଣୀ ଯୁବରାଜ୍ଞୀଙ୍କୁ ଅଭିମନ୍ତ୍ରିତ ଜଳର ଆଚମନ କରେଇବା ଓ ଆଶୀର୍ବାଦ ଦେବାଲାଗି ସ୍ମରଣ କରୁଛନ୍ତି ।’’

ରାଜପ୍ରାସାଦର ଅନ୍ତଃପୁରରେ ଅନ୍ୟ ଏକ ମହଲାର ଏକ ଅଳିନ୍ଦରେ ବାଳିକା ଯୁବରାଜ୍ଞୀ ଅମିତା ପାଖାପାଖି ନିଜ କାନ୍ଧ ପର୍ଯ୍ୟନ୍ତ ଉଚ୍ଚ ବଭ୍ରୁକୁ ଶିକୁଳିରେ ବାନ୍ଧି ନେଉଥିଲେ । କୁକୁରଟିର ଶିକୁଳି ନିଜ ହାତରେ ଧରି ଅମିତା ଚାଲୁଥିବାରୁ କୁକୁରଟି ଛାତି ଫୁଲାଇ ଗର୍ବରେ ଚାଲୁଥିଲା । ଅମିତା ବଭ୍ରୁକୁ ଆଦର ସ୍ୱରରେ ଧମକେଇ ଚାଲିଥିଲେ– ‘‘ତୁ ବଡ଼ ଦୁଷ୍ଟ ! ତୁ ଅନ୍ୟ ଜୀବମାନଙ୍କ ଠାରୁ ଛଡ଼େଇ ନଉଛୁ, ଅନ୍ୟ ଜୀବମାନଙ୍କୁ ମାରୁଛୁ । ମୁଁ ତୋତେ ମା’ଙ୍କ ପାଖରେ ଦଣ୍ଡ ଦିଆଇବି ।’’ ଅମିତାଙ୍କ ପଛେ ପଛେ ହିତା, ଉଦ୍ଦାଳ ଓ ବାପୀ ଆସୁଥିଲେ ।

ଅମିତା ମାତା ମହାରାଣୀଙ୍କ ଦ୍ୱାରଦେଶରେ ପହଞ୍ଚିଲା ପରେ ହିତା ଆଗେ ବଢ଼ି ବଭ୍ରୁର ବେକର ଫିତାଟି ଧରି ଅଟକେଇ ନେଲା । ରାଜକୁମାରୀ ଦ୍ୱାର ଭିତରକୁ ଯାଇ କୁକୁରର ଶିକୁଳିଟି ଟାଣିବାର ଆଗ୍ରହ ପ୍ରକାଶ କଲେ– "ବଭ୍ରୁକୁ ଆସିବାକୁ ଦିଅ ! ଏ ବଡ଼ ଦୁଷ୍ଟ । ମୁଁ ତାକୁ ମା'ଙ୍କ ହାତରେ ଦଣ୍ଡ ଦିଆଇବି ।"

ହିତା ସ୍ନେହ ଓ ବିନୟପୂର୍ଣ୍ଣ ନୟନରେ ଏବଂ ଭୟ ଦେଖେଇବା ପାଇଁ ଦାନ୍ତରେ ଆଙ୍ଗୁଳି ଦେଇ ରାଜକୁମାରୀଙ୍କୁ ସ୍ମରଣ କରେଇଦେଲା– "ପରମଭଗବତୀ ମାତାଙ୍କ କକ୍ଷକୁ କୁକୁରର ପ୍ରବେଶ ଉଚିତ ନୁହଁ ।"

"ନା ବତ୍ସ, ବଭ୍ରୁ ଏଠାକୁ ଆସିବନି । ଏହା ଠାକୁରଙ୍କ ଜାଗା । ଦିଅଁ ଘର ।" ମହାରାଣୀଙ୍କ ସ୍ନେହସିକ୍ତ ସ୍ୱର ଶୁଭିଲା, "ବତ୍ସେ, ବିଚରା ବଭ୍ରୁକୁ କାହିଁକି ବାନ୍ଧିଛ ? ଝିଅ, ଯାକୁ ବାହାରେ ଖେଳିବାକୁ ଦିଅ !" ମହାରାଣୀ ଅମିତା ପାଖକୁ ଆସୁ ଆସୁ କହିଲେ ।

ଅମିତା ବଭ୍ରୁର ଶିକୁଳିକୁ ହାତରେ ଧରି ମା'ଙ୍କର ଆଣ୍ଠୁ ଦୁଇଟାକୁ ଜାବୁଡ଼ି ତାଙ୍କ ମୁହଁକୁ ଚାହିଁ ଆବେଗଭରା କଣ୍ଠରେ କହିଲା– "ମା, ବଭ୍ରୁ ବଡ଼ ଦୁଷ୍ଟ । ମା' ତୁମେ କୁହ କାହା ପାଖରୁ ଛଡ଼େଇ ନିଅନି, କାହାକୁ ଡରାଅ ନାହିଁ, କାହାକୁ ମାର ନାହିଁ । ମା', ବଭ୍ରୁ କପୋତମାନଙ୍କୁ ଉଡ଼େଇ ଦେଉଛି, ସେମାନଙ୍କୁ ଡରଉଛି, ସେମାନଙ୍କୁ ମାରିବାକୁ ଦଉଡୁଛି । ଏଥିପାଇଁ ଏହାକୁ ବାନ୍ଧି ମୁଁ ଦଣ୍ଡ ଦେଇଛି ।"

"ଆଚ୍ଛା ମୋ ସୁନାଟା !" ମହାରାଣୀ ଝିଅର କପାଳରେ ଚୁମ୍ବନ ଦେଇ କହିଲେ, "ମୋ ଝିଅର ଧର୍ମପ୍ରତି ଏପରି ଆସ୍ଥା ଓ ପ୍ରବୃତ୍ତି ରହୁ । ତୁ କ୍ଷମାଶୀଳ ହୁଅ । ତୁ ଏ ଅବୋଧକୁ କ୍ଷମା କରିଦେ । ତୁ ଆ, ଅଭିମନ୍ତ୍ରିତ ଜଳରେ ଆଚମନ କରିନେ, ଈଶ୍ୱରଙ୍କ ଆଶୀର୍ବାଦ ନେଇଯା ।"

ଦାସୀଟି ଆଗକୁ ବଢ଼ି ରାଜକୁମାରୀ ହାତରୁ କୁକୁରର ଶିକୁଳିଟି ନେଇଗଲା । ଅମିତା ଦାସୀଟିକୁ ଅନୁରୋଧ କଲେ– "ମାମା, ବଭ୍ରୁକୁ ବର୍ତ୍ତମାନ ଯିବାକୁ ଦିଅ ନାହିଁ । ମୁଁ ତାକୁ କ୍ଷୀରଭାତ ଖୁଆଇବି ।"

ମହାରାଣୀଙ୍କ କକ୍ଷଟି ଆକାରରେ ବଡ଼ ଓ ସୁନ୍ଦର ଥିଲା ମାତ୍ର ବିଳାସର ସାମଗ୍ରୀସବୁ କାଢ଼ି ଦେଇଥିବାରୁ ବଡ଼ ମେଲା ଲାଗୁଥିଲା । ସାମନାରେ ମାଟିରେ ନିର୍ମିତ ବେଦୀ ଉପରେ ସୁନାପାତ୍ରରେ, ସୁଦୂର ନାଳନ୍ଦାରୁ ପ୍ରାପ୍ତ ଈଶ୍ୱରଙ୍କ ମୂର୍ତ୍ତି 'ଧାତୁଶେଷ' ରଖା ହୋଇଥିଲା । ସ୍ୱର୍ଣ୍ଣପାତ୍ର ନିକଟରେ ଅଷ୍ଟଧାତୁର ଏକ ପାତ୍ରରେ ସୁଗନ୍ଧିତ ଦ୍ରବ୍ୟସବୁର ପବିତ୍ର ଧୂମ ଆସ୍ତେ ଆସ୍ତେ ଉଠୁଥିଲା ଏବଂ ଏକ ଘୃତଦୀପ

ଦିନବେଳାର ଆଲୋକରେ ଜ୍ୟୋତିହୀନ ରୂପେ ଜଳୁଥିଲା । ବେଦୀର ସମୀପରେ ହିଁ ଏକ ପୀଢ଼ା ଉପରେ ଅଣାହୋଇଥିବା ପୂଜାର ଅଭିମନ୍ତ୍ରିତ ଜଳରେ ଭରା ସୁବର୍ଣ୍ଣ କଳସ ରଖା ହୋଇଥିଲା ଏବଂ ଅନ୍ୟ ପୀଢ଼ାରେ ପୂଜା ପ୍ରସାଦଭରା ଥାଳି ଥିଲା । ଡାହାଣପଟର ଭିତ୍ତି ସହିତ ଶ୍ୱେତ ଚିକ୍କଣ ଶିଳା ଚଟାଣ ଉପରେ ଏକ ମୋଟା, କୋମଳ, କମ୍ବଳ ମହାରାଣୀଙ୍କ ବିଶ୍ରାମ ଉଦ୍ଦେଶ୍ୟରେ ବିଛା ହୋଇଥିଲା । କମ୍ବଳ ପାର୍ଶ୍ୱରେ ରୁପାର ବ୍ୟାସଗାଦି ଉପରେ ଏକ ଧର୍ମଗ୍ରନ୍ଥ ପଢ଼ାହେବା ପାଇଁ ଖୋଲା ହୋଇଥିଲା ।

ମହାରାଣୀ ଅମିତାଙ୍କୁ କୋଳେଇନେଇ ମନ୍ତ୍ରପାଠ କରି ଅଭିମନ୍ତ୍ରିତ ଜଳ ସିଞ୍ଚି ପୁଣି ସୁନାର ଛୋଟ ପାତ୍ରରେ ଝିଅକୁ ଆଚମନ କରେଇଦେଲେ । ସେ ଅମିତାର ମୁଣ୍ଡରେ ହାତରଖି, ଆଖିବୁଜି ପ୍ରାର୍ଥନା କଲେ । "ତୋର କଲ୍ୟାଣ ହେଉ । ଧର୍ମରେ ତୋର ଆସ୍ଥା ଏବଂ ପ୍ରବୃତ୍ତି ରହୁ । ତୁ ସର୍ବଦା ବହୁଜନଙ୍କର ହିତ ଅର୍ଥରେ, ବହୁଜନଙ୍କର ସୁଖ ପାଇଁ, ବହୁଜନଙ୍କର ପରିତ୍ରାଣ ପାଇଁ ଯତ୍ନ କର । ତୁ କାହା ପାଖରୁ ଅଲଗା ହେବୁନି, ତୁ କାହାରିକୁ ଡରେଇବୁ ନାହିଁ, କାହାରିକୁ ମାରିବୁ ନାହିଁ । ଧର୍ମ, ଈଶ୍ୱର ସଂଘ ତୋର ରକ୍ଷକ ଏବଂ ସହାୟକ ହେବେ ।"

ମହାରାଣୀ ପ୍ରାର୍ଥନା ସମାପ୍ତ କରି ଆଖି ଖୋଲିଲେ । ଅମିତା ଉତ୍ସାହରେ ପାଟି କରି ଉଠିଲା– "ମା ଶୁଣ, କପୋତ ମୋ ହାତରେ ବସିଲା, ମୋ ମୁଣ୍ଡ ଉପରେ ... ।"

ମହାରାଣୀ ଝିଅ କଥାରେ ଧ୍ୟାନ ନ ଦେଇ ଉଦ୍ଦାଳକୁ ସଂକେତରେ ପାଖକୁ ଡାକି କହିଲେ– "ମାମୁ, ତୁମେ ଶୁଣିଛ କି କୌଣସି ନୂଆଦୁର୍ଗ ଅଥବା ରାଜପ୍ରାସାଦ ତିଆରି ଚାଲିଛି ?"

ମହାରାଣୀ ନନ୍ଦା ଯେଉଁ ସମୟରେ ରାଜବଧୂ ରୂପେ ପ୍ରାସାଦକୁ ଆସିଥିଲେ, ଉଦ୍ଦାଳର ବାଳ ପାଚିସାରିଥିଲା । ରାଜମାତା, ମହାରାଜାଙ୍କ ମା' ତାଙ୍କୁ ଭାଇ ବୋଲି ଡାକୁଥିଲେ । ମହାରାଣୀ ନନ୍ଦା ଉଦ୍ଦାଳକୁ ମାମୁ ବୋଲି ସମ୍ବୋଧନ କରୁଥିଲେ । ସେଇ ଦିନରୁ ପ୍ରାସାଦରେ ସଭିଏଁ ଉଦ୍ଦାଳକୁ ମାମୁ ବୋଲି ଡାକୁଥିଲେ ।

ଉଦ୍ଦାଳ ମୁଣ୍ଡନଇଁ ବିନମ୍ର ଭାବରେ ଉତ୍ତର ଦେଲା– "ପରମ ଭଗବତୀ ଅନ୍ନଦାତା, ଶୁଣିଛି ପ୍ରାଚୀର ବାହାରେ ଉତ୍ତରରେ ଗୋଟିଏ ଦୁର୍ଗ ନିର୍ମାଣ ହେବ ଆଉ ଉତ୍ତରରେ ନଗର ପ୍ରାଚୀରର ବିସ୍ତାର ହେବ ।"

ଅମିତା ମା'ଙ୍କ ଧ୍ୟାନ ନିଜ କଥା ଉପରେ ନ ଥିବା ଦେଖି ସାମନାକୁ ଆସି ମା'ଙ୍କ ହାତ ଧରି ଆବେଗ ଚଞ୍ଚଳ କଣ୍ଠରେ କହିଲେ– "ମା, କପୋତ ମୋ ମୁଣ୍ଡ ଉପରେ ଆଉ ହାତରେ ବସିଗଲା ଯଦି...."

ମହାରାଣୀ ଝିଅକୁ ମୁହଁ ଆଗରୁ କୋଳେଇନେଇ କହିଗଲେ– "କିନ୍ତୁ କାହିଁକି ମାମୁ ? କ'ଣ ଆବଶ୍ୟକତା ଅଛି ଦୁର୍ଗର ?"

ଉଦ୍ଧାଳ ପୁଣି ବିନୟ ଭାବରେ ମୁଣ୍ଡ ନଇଁ ଉତ୍ତରଦେଲା– "ଅନ୍ନଦାତା, କ୍ଷମା କରନ୍ତୁ, ଏହା ଦାସ ଜାଣେନା । ଏମିତି ବି ଶୁଣିଛି ଯେ ପୁଣି ଯୁଦ୍ଧ ହେବ ।"

ଅମିତା ନିଜକଥା ଶୁଣାଇବା ଆଗ୍ରହରେ ପୁଣି ମା'ଙ୍କ ସାମନାକୁ ଆସି କହି ଚାଲିଲେ । "ମା, ମା, ଶୁଣ ! ବଭ୍ରୁ.... ।"

ମହାରାଣୀ ପୁଣି ଝିଅକୁ ଟାଣିନେଲେ ଓ ଚିନ୍ତାମଗ୍ନ ହୋଇ ଦାସକୁ ସମ୍ବୋଧନ କଲେ– ମାମୁ, କା'ର ଆଦେଶରେ ଦୁର୍ଗ ନିର୍ମାଣ ଚାଲିଛି ? କାହା ଆଜ୍ଞାରେ ଏସବୁ ହେଉଛି ?"

ଉଦ୍ଧାଳ ପୁଣି ମୁଣ୍ଡ ନଇଁ ଉତ୍ତର ଦେଲା– "ଅନ୍ନଦାତା କ୍ଷମା ହେଉ, ଦାସ ଏହା ଜାଣେନା ।"

ଅମିତା ପୁଣି ମା'ଙ୍କ ସମ୍ମୁଖକୁ ଆସି ତାଙ୍କର ଗଣ୍ଡରେ ହାତ ଦେଇ ନିଜ କଥା ଶୁଣାଇବା ଆଗ୍ରହ କଲେ– "ମା, ମା ବଭ୍ରୁ ବଡ଼ ଜୋର୍‌ରେ ଭୋ-ଭୋ---"

ମହାରାଣୀ ପୁଣି ଝିଅର କଥା ନ ଶୁଣିଲା ପରି ସ୍ନେହରେ ତାଙ୍କୁ କୋଳକୁ ଟାଣିନେଲେ ଏବଂ ଉଦ୍ଧାଳକୁ ଆହୁରି ନିକଟକୁ ଆସିବାକୁ ସଂକେତ ଦେଇ କହିଲେ– "ମାମୁ, ଆଜି ପ୍ରଜାମାନେ ଚୈତ୍ୟର ଦ୍ୱାରଦେଶରେ ମୋତେ ନ୍ୟାୟ ଓ ଦୟା ପାଇଁ ପ୍ରାର୍ଥନା କରିଛନ୍ତି । ଦୁର୍ଗ ତିଆରି ସକାଶେ ପ୍ରଜାଙ୍କର ଭୂମି ଓ ନିବାସ ଅଧିକାର କରି ନିଆଯାଇଛି । ନିର୍ଦ୍ଦୟତା ଓ ଅନ୍ୟାୟ ମୁଁ କରିବାକୁ ଦେବିନି । ତୁମେ ଯାଇ ଦେଖ, ଦୁର୍ଗ କାହିଁକି ତିଆରି ହେଉଛି, କାହା ଆଦେଶରେ ତିଆରି ଚାଲିଛି । ତୁମେ ମହାରାଜାଙ୍କ ପିତାଙ୍କ ସମୟରୁ ଏ ବଂଶର ଦାସ । ଦେଖ, ଏ ବଂଶରେ କୌଣସି ପାପ ବା ଅନ୍ୟାୟ ନ ହେବା ଉଚିତ । ଏ ବଂଶ ଉପରେ କାହାରି ବି ନିଃଶ୍ୱାସ ନ ପଡୁ । ଆବାସିତଙ୍କୁ ଉଜାଡ଼ିବା ପାପ । ଏ ଦୁର୍ଗ ତିଆରି ହେବ ନାହିଁ ।"

ଦାସଟି ଆଦେଶ ସ୍ୱୀକାର କରିବା ଉଦ୍ଦେଶ୍ୟରେ ମଥାନତ ହେଲା ଏବଂ ମହାରାଣୀଙ୍କ ପଟକୁ ପଛନହେବ ବୋଲି ମୁଣ୍ଡ ନଇଁ, ପଛଘୁଞ୍ଚା ଦେଇ ଦେଇ କକ୍ଷର ଦ୍ୱାର ପଟକୁ ଚାଲିଗଲା ।

ଅମିତା ଦାସର ଯିବା ଦେଖି ମା'ଙ୍କ କୋଳରୁ ଯାଇ ଉଦ୍ଧାଳର ହାତଧରି କହିଲେ– "ମାମୁ, କୁଆଡ଼େ ଯାଉଛ ? ମୁଁ ମଧ ଯିବି ।"

ମହାରାଣୀ ଝିଅକୁ ବୁଝେଇଲେ– "ବଡ଼େ ମାମୁ କାମରେ ବାହାରକୁ ଯାଉଛନ୍ତି । ହିତୁ ସାଥିରେ ଝିଅ ଦୋଳି ଝୁଲିବ ।"

ଅମିତା ଦାସର ଗୋଡ଼କୁ ଜାବୁଡ଼ି ଧରିଲେ– "ମୁଁ ମାମୁ ସାଙ୍ଗରେ ଯିବି ।" ଉଦ୍ଧାଳ ଯୁବରାଣୀଙ୍କୁ ଗେଲକରି ବୁଝେଇଲା– "ମହାରାଣୀ ଝିଅକୁ ହିତା ଛମ୍‌ଛମ୍ ନାଚକରି ଦେଖେଇବ । "ମହାରାଣୀ ଝିଅ ପାଇଁକି ମୁଁ ଫୁଲ ଆଣିବି ।"

ଅମିତା ହଟରେ ମୁଣ୍ଡ ହଲେଇ ଆଗ୍ରହ ପ୍ରକାଶ କଲେ– ନା-ନା, ମୁଁ ମାମୁ ସାଙ୍ଗରେ ନଗର ବିହାର କରିବି । ମୁଁ ମାମୁ ସାଙ୍ଗରେ ଯିବି ।

ଅମିତାଙ୍କର ଆଗ୍ରହ ଦେଖି ମହାରାଣୀ କହିଲେ– "ତା'ହେଲେ ଝିଅ ଭୋଜନ କରିନିଅ ।" ସେ ଉଦ୍ଧାଳକୁ ଆଦେଶ ଦେଲେ, – "ଝିଅର ଭୋଜନ ବିଶ୍ରାମ ସରୁ ତା'ପରେ ଯିବ । ନେଇଯିବ, ଝିଅର ବିନୋଦ ହୋଇଯିବ । ଝିଅ, ତୁ ପାଲିଙ୍କିରେ ଯିବୁ ନା ହାତୀରେ ?"

ଅମିତା ପ୍ରସନ୍ନତାରେ ଉଚ୍ଛୁଳିଉଠି ଉତ୍ତର ଦେଲେ– "ହାତୀରେ, ବଡ଼ ହାତୀଆଣୀ ଲକ୍ଷ୍ମୀ ଉପରେ ।"

ଅମିତା ଦାସର ହାତଛାଡ଼ି ହିତାର ବାହୁରେ ଲାଗିଯାଇ ଚାଲିଗଲେ ।

ଦିନର ତୃତୀୟ ପ୍ରହର ଗଡ଼ି ଯାଇଥିଲା । କଳିଙ୍ଗନଗରର ଉତ୍ତରରେ ପ୍ରାଚୀର ସାଙ୍ଗକୁ ବାଉଁଶ ବଣ ଘେରା ଉଚ୍ଚଭୂମି ଉପରେ ବସିଥିବା ବେଣୁକ ଗ୍ରାମରେ ବୃକ୍ଷସବୁର ଛାଇ ପୂର୍ବ ଦିଗକୁ ଲମ୍ୱି ଯାଇଥିଲେ । ମାଟି ଛପରର ଛୋଟ ଛୋଟ ଘରସବୁ ମଧ୍ୟ ପଶ୍ଚିମ ଦିଗରେ ଖରାପାଇ ପୂର୍ବ ଦିଗକୁ ଛାଇ କରୁଥିଲା । ବସ୍ତିର ମଝିରେ ମଝିରେ ଛିଡ଼ାହୋଇଥିବା ପିପ୍ପଳ ଗଛର ତଳେ ନାଗପୂଜାର ଚଉରା ଚାରିପାଖରେ ମସିଣା ବିଛେଇ କିଛି ଲୋକ ଦି'ପହରିଆ ଗଡ଼ପଡ଼ ହେଉଥିଲେ । ଚଉରାରେ ଧନୁ, ତୂଣୀର, ଖଡ଼୍‌ଗ, ଆଉ ଢାଲ ଡେରା ହୋଇଥାଏ । ଶୋଇଥିବା ଲୋକଙ୍କ ପାଖରେ ପଗଡ଼ି ଓ କମରପଟି ସବୁ ଗୋଟିଏ ରଙ୍ଗର ଥିଲା । ଶୋଇ ପଡ଼ିଥିବା ଲୋକ ସବୁ କଳିଙ୍ଗର ରାଜପୁରୁଷ ଅଥବା ସୈନିକ ବୋଲି ଜଣାପଡୁଥିଲେ । ଗାଁର ଅନ୍ୟ ଗଛମାନଙ୍କରେ ଏବଂ କୁଟୀର ସବୁର ଛାଇରେ ବନ୍ଧା ପଶୁମାନଙ୍କ ନିକଟରେ ବସିଥିବା ଲୋକସବୁ ବାଉଁଶ ଚିରି ମସିଣା, ଡାଲିଆ, ପେଟିଆ ତିଆରିରେ ବ୍ୟସ୍ତ ଥିଲେ । ଗାଁର କେତେକ ବାଳକ ବିନା ବସ୍ତ୍ରରେ, କେତେକ କୌପୀନ ବାନ୍ଧି ଆଉ କେତେକ କାନ୍ଧରେ ଗାମୁଛା ପକେଇ ପିପ୍ପଳ

ପାଖେ ଭୂଇଁରେ ଛିଦ୍ର ବା ନାଳିସବୁ କରି ଖେଳୁଥିଲେ । ଚଉରାର କିଛି ଦୂରରେ ଦହିଭାତ ଖାଇ ଫୋପାଡ଼ି ଦେଇଥିବା କଦଳୀପତ୍ରର ଟୁକୁରାସବୁ ପଡ଼ିଥାଏ । ମାଟିର ପିଆଲାସବୁ ବୁଣିହୋଇଥାଏ । କେତେକ କୁଡ଼ିଆରୁ ଧାନ କୁଟିବାର ଶବ୍ଦ ବି ଶୁଭୁଥିଲା । ଅଶ୍ୱତ୍ଥ ଛାୟାରେ ଶୋଇଥିବା ସୈନିକଙ୍କ ମଧ୍ୟରୁ ଜଣକର ନିଦ ଭାଙ୍ଗିଲା । ସେ ଉଠି ବାହୁରେ ଆଣ୍ଠୁ ଭିଡ଼ି ବସିଗଲା । ହାଇ ମାରି ମାରି ସେ ଅନ୍ୟ ସୈନିକମାନଙ୍କୁ ଡାକିଲା – "ଆରେ ତମେସବୁ କେତେବେଳଯାଏ ଶୋଇ ରହିବ ! ଦେଖ, ସୂର୍ଯ୍ୟ ପଶ୍ଚିମ ଦିଗକୁ ଢଳିବସିଲେ ।

ସୈନିକର ଡାକରେ ଉଠିପଡ଼ିଥିବା ସୈନିକ ମଧ୍ୟରୁ ଜଣେ ଅଳସ ଭାଙ୍ଗି ଭାଙ୍ଗି କହିଲା– "ଆମ ଶୋଇବାରେ ତମର କ'ଣ ଆପତ୍ତି ଅଛି ? ଆମେ ଉଠିପଡ଼ିଲେ ସୂର୍ଯ୍ୟଙ୍କୁ ଢଳିବାରେ କ'ଣ ବାଧା ଦେବୁ ?"

ଅନ୍ୟଜଣକ ତା କଥା ପୂରା କଲା– "ଆଉ କ'ଣ.... ଆମେ ଏଠାକୁ ଯୂଥପଙ୍କ ଆଦେଶରେ ସୈନିକ କାମ ପାଇଁ ତ ଆସିଛେଁ ।"

ଆଉ ଏକ ସୈନିକ କଡ଼ମାରି କହୁଣି ଭରା ଦେଇ ଉଠି କହିଲା– "ତଥାଗତଙ୍କ ଭକ୍ତ ଦୟାଳୁ ମହାରାଣୀ ବସ୍ତି ଲୋକଙ୍କୁ ତାଙ୍କ ଭୂମିରେ ରହିବାକୁ ଆଶ୍ୱାସନା ଦେଇ ସାରିଛନ୍ତି ତ ଆମକୁ ଏଠାରେ ଆଉ କ'ଣ କରିବାକୁ ଅଛି ? ଶିବିରକୁ ତ ଫେରିଯିବାକୁ ହେବ । ଚଣ୍ଡ ଅଶୋକ ଏବେ ଅନେକ ଦୂର । କାମରୁ ଶିବିର ଫେରି ନ ଯାଇ; ଟିକିଏ ବିଶ୍ରାମ ପାଇଁ ଶୋଇପଡ଼ିଲେ ତ କ୍ଷତି କ'ଣ ହେଲା ?"

ଅନ୍ୟ ସୈନିକ ଉଠି କହିଲା– "ଏବେ ଫେରିଯିବା ହିଁ ଠିକ୍ ହେବ । .... ଚାଲ ଭାଇ, ଏବେ ଚାଲ ।"

ଆଉ ଏକ ସୈନିକ ଦୂରରେ ବସି ନିଜକାମରେ ବ୍ୟସ୍ତଥିବା ଲୋକଙ୍କୁ ଶୁଣେଇବା ପାଇଁ ପାଖରେ ଖେଳୁଥିବା ଛୁଆଙ୍କ ଆଡ଼କୁ ଦେଖି ଡାକିଲା– "ଆରେ, ତୁମକୁ ଜନ୍ମ ଦେଇଥିବା ଲୋକେ କୁଆଡ଼େ ଗଲେ ? କି ତୁମେ ସବୁ ଆକାଶରୁ ଝଡ଼ି ପଡ଼ିଛ ! ଦ୍ୱି'ପ୍ରହର ଆଗରୁ ଯେତେବେଳେ କୁଡ଼ିଆ ସବୁ ଭାଙ୍ଗିଦେବାର ଡର ଥିଲା ସେତେବେଳେ ତ ହାତଯୋଡ଼ି ଛିଡ଼ା ଥିଲ, ଗୁଡ଼, ଭାତ, ଦହି ନ ଖୁଆଇବା ପର୍ଯ୍ୟନ୍ତ ଛାଡ଼ିଲନି । ଏବେ ତାଙ୍କେ ଜଳ ଦେବାକୁ ବି ଚିନ୍ତା ନାହିଁ । ଏତିକି ଭାବୁନ ଯେ ମଣିଷ ଅଘେଇ ଯିବା ତକ୍ର ଖାଇଲେ ଦିନରେ ଶୁଏ ଉଠିଲେ ଶୋଷ ବି ହୁଏ । ଶୋଇ ଉଠିଲା ପରେ କୁଳି କରିବା, ମୁହଁ ଧୋଇବାର ବି ଆବଶ୍ୟକତା ପଡ଼େ ।"

ସର୍ବପ୍ରଥମ ଉଠିଥିବା ସୈନିକଜଣକ ତାକୁ ମନାକଲା– "ତୁମେ ତ ଏମିତି ବିଗିଡ଼ି ଯାଉଛ ଯେମିତିକି ଗାଁକୁ ବରଯାତ୍ରୀ ନେଇ ଆସିଛ ଆଉ ତୁମର ସତ୍କାର ହେଲାନି । ଗାଁ ଲୋକ ଭଲ । ସେମାନେ ଖାଇବାକୁ ଦେଇ ତୁମର ସତ୍କାର କରିଛନ୍ତି ମାନେ ଜଳ ମଧ୍ୟ ଦେବେ ।"

ସୈନିକଟି ଉଚ୍ଚୈସ୍ୱରରେ ଦୂରରେ ବସିଥିବା ଲୋକଙ୍କୁ ସମ୍ବୋଧନ କଲା– "ଆରେ ବାବା, ଢାଳେ ଜଳ ତ....."

ସୈନିକ ନିଜକଥା ପୂରା କରି ପାରି ନ ଥିଲା । ମୁଣ୍ଡିଆକୁ ପୂର୍ବପଟୁ ଚଢ଼ିବା ବାଟଦେଇ ନିହାତି ନିକଟରେ ଘୋଡ଼ା ଟାପୁର ଶବ୍ଦ ତାର ଧ୍ୟାନକୁ ଟାଣିନେଲା । ତତ୍‌କ୍ଷଣାତ୍ ଅଶ୍ୱାରୋହୀର ଆହ୍ୱାନ ଶୁଣାଗଲା– "ଏତେ ପ୍ରମାଦ ! ଏଇଟା ସୈନିକର କର୍ତ୍ତବ୍ୟ ?"

ପିପ୍ପଳ ତଳେ ମସିଣାରେ ବସି ହାଇମାରୁଥିବା ଆଉ ଗଡୁଥିବା ସୈନିକସବୁ ହଡ଼ବଡ଼େଇ ଉଠିପଡ଼ିଲେ ଏବଂ ଅଶ୍ୱାରୋହୀ ଯୂଥପଙ୍କୁ ନଇଁ ନଇଁ ଅଭିବାଦନ କରିବାକୁ ଲାଗିଲେ ।

ଯୂଥପ ସୈନିକମାନଙ୍କର ଅଭିବାଦନ କିମ୍ବା ବିନୟ ଭାବକୁ ଉପେକ୍ଷାକରି କ୍ରୋଧରେ ପ୍ରତାଡ଼ନା କରିଥିଲେ– "ମୂର୍ଖମାନେ, ତୁମ୍ଭମାନଙ୍କୁ କାଲି ଦ୍ୱି'ପ୍ରହରରୁ ଉପବନ ବିହାର ଏବଂ ନାଚଗୀତ ମଉଜ କରିବାକୁ ପଠାଯାଇ ଥିଲା ନା ଦିନକ ଭିତରେ ଦୁର୍ଗ ପାଇଁ ସ୍ଥାନ ମେଲା କରିବା ପାଇଁ ? ତୁମେ ତ ଏଠି ମଜାରେ ଥକ୍କାମାରି ବିଳାସୀଙ୍କ ପରି ବିଶ୍ରାମ କରିଛ !"

ସର୍ବପ୍ରଥମ ଉଠିଥିବା ସୈନିକଜଣକ ପୁଣି ନଇଁପଡ଼ି ନିବେଦନ କଲା– "ସ୍ୱାମୀ ଯୂଥପ, ଗ୍ରାମବାସୀ କହୁଛନ୍ତି– ଭଗବତୀ ମହାରାଣୀ ସେମାନଙ୍କୁ ଅଭୟ ପ୍ରଦାନ କରିଛନ୍ତି । ସେମାନେ ଏଇଠିହିଁ ରହିବେ । ସ୍ୱାମୀ ଯୂଥପ ତେଣୁକରି.... ।"

ସୈନିକର କଥା ଶୁଣି ଯୂଥପ କ୍ରୋଧରେ ଘୋଡ଼ା ପିଠିରୁ ଡହୁଁକି ଆସିଲା । ସେ ଉଚ୍ଚୈସ୍ୱରରେ ସୈନିକମାନଙ୍କୁ ଭର୍ତ୍ସନା କଲା– "ଭଗବତୀଙ୍କର ଆଜ୍ଞା ଆମକୁ ଜଣା ନାହିଁ କି ? ଦୁର୍ଗ ପାଇଁ ଅନ୍ୟ କୋଉ ଜାଗା ହୋଇପାରିବ ? କ'ଣ ମହାସେନାପତିଙ୍କୁ ମହାରାଣୀଙ୍କର ଆଜ୍ଞା ଜଣା ନାହିଁ ? ଆମର ଆଦେଶ ହିଁ ମହାରାଣୀଙ୍କର ଆଦେଶ । ଚଣ୍ଡ ଅଶୋକ ମୁଣ୍ଡ ଉପରେ ଚଢ଼ି ବସିଛି ଆଉ ଏ ଭୟାଳୁମାନଙ୍କୁ କୁଡ଼ିଆଗୁଡ଼ିକର ମୋହ ପାଗଳ କରୁଛି । ଏମାନଙ୍କ ଥଇଥାନ ନିମନ୍ତେ କ'ଣ ରାଜ୍ୟରେ ଅନ୍ୟ ସ୍ଥାନ ନାହିଁ । ମହାସେନାପତି ବୃକଦନ୍ତରେ ଏମାନଙ୍କୁ ଦୁଇଗୁଣ ଜାଗା ଦେଇସାରିଛନ୍ତି । କାଲି ଏଠି ଶିବିରର ନିର୍ମାଣ ଆରମ୍ଭ ହେବ ।"

ଯୂଥପ କୁଡ଼ିଆଗୁଡ଼ିକୁ ହାତ ଟେକି ଦେଖେଇ ଆଦେଶ ଦେଲେ । ଏହିକ୍ଷଣି ସବୁଲୋକ ଝୋପଡ଼ିରୁ ବାହାରିଯାଅ । କୁଡ଼ିଆଗୁଡ଼ିକୁ ଭାଙ୍ଗି ନିଆଁ ଲଗେଇଦିଅ । କୋରଡ଼ା ମାରି ଏମାନଙ୍କୁ ଏଠୁ ତଡ଼ିଦିଅ । କେହି ପ୍ରତିରୋଧ କଲେ ତାକୁ ବନ୍ଦୀ କର । ଯୂଥପର ମୁହଁର କଥା ନ ସରୁଣୁ ପନ୍ଦର ଜଣ ସୈନିକ ପିପ୍ପଳ ଗଛ ତଳେ ଚଉପାଢ଼ିରେ ରଖିଥିବା ନିଜ ନିଜର ଅସ୍ତ୍ରଶସ୍ତ୍ର ପାଇଁ ଝପଟି ପଡ଼ିଲେ । ଗଛ ତଳେ କୁଡ଼ିଆଗୁଡ଼ିକର ଆଖପାଖ କାମରେ ଲିପ୍ତ ଥିବା ସ୍ତ୍ରୀ-ପୁରୁଷ କାମ ଛାଡ଼ି ହାତ ଯୋଡ଼ି ସାଙ୍ଗେ ସାଙ୍ଗେ ଯୂଥପର ସାମ୍ନାକୁ ଆସି ଭୂଇଁ ଛୁଇଁ ଛୁଇଁ ନେହୁରା ହେଲେ ।

"ସ୍ୱାମୀ ନାୟକଙ୍କ ଜୟ ହେଉ । ମହାରାଣୀ ଆମ ଦୁଃଖୀ ଦରିଦ୍ରଙ୍କୁ ଅଭୟ ପ୍ରଦାନ କରିଛନ୍ତି । ଦରିଦ୍ର ପ୍ରଜାଙ୍କ ଜମି ଜବତ କରାଯିବ ନାହିଁ ।"

ଯୂଥପଙ୍କର ନେତ୍ର କ୍ରୋଧରେ ନାଲି ପଡ଼ି ସାରିଥିଲା । ସେ ଆହୁରି କ୍ରୋଧରେ ଚିତ୍କାର କଲେ, "ମହାରାଣୀଙ୍କର ଆଦେଶରେ ତୁମ୍ଭମାନଙ୍କୁ ଅଭୟଦାନ ଏବଂ ଦ୍ୱିଗୁଣା ଭୂମିଦାନ ମଧ୍ୟ ହୋଇସାରିଛି । ମହାରାଣୀଙ୍କ ଆଦେଶ କ'ଣ ଆମକୁ ଜଣା ନାହିଁ ? ମହାରାଣୀଙ୍କର ଆଦେଶ କ'ଣ ମହାସେନାପତିଙ୍କୁ ଜଣା ନାହିଁ ? ମହାରାଣୀଙ୍କ ଆଦେଶ ରାଜ୍ୟର ରକ୍ଷା ହେଉ । ଯାହା କିଛି ତମର ଅଛି ବାହାର କରି ତତ୍‌କ୍ଷଣାତ୍ ଖାଲି କର-ନତୁବା ନିଆଁ ଲଗେଇ ଦିଆ ହେବ ।

ପୁଣିଥରେ ଗ୍ରାମବାସୀ ଭୂମି ସ୍ପର୍ଶକରି ମହାରାଣୀଙ୍କ ଦେଇଥିବା ଅଭୟଦାନ ଓ ଦୟାର ଯାଚନା କରିବାକୁ ଲାଗିଲେ । ଗ୍ରାମବାସୀଙ୍କ ହଟରେ ଯୂଥପ କ୍ଷୁବ୍ଧ ହେଲା । ସେ ସୈନିକମାନଙ୍କୁ ସାବଧାନ୍ କରି ଚିତ୍କାର କଲା "ମୂର୍ଖମାନେ, କ'ଣ ଦେଖୁଛ ! ଲଗେଇ ଦିଅ ନିଆଁ ଏ କୁଡ଼ିଆ ସବୁରେ । ଯିଏ ପ୍ରତିବାଦ କରିବେ, କୋରଡ଼ାମାରି ଘୋଷାରିଦିଅ, ବାନ୍ଧି ପକେଇଦିଅ ।

କିଛି ସମୟ ପରେ ହାହାକାର ରବରେ ବାତାବରଣ ଭରିଗଲା । ଦୁଇଜଣ ସୈନିକ କୁଡ଼ିଆ ଭିତରକୁ ପ୍ରବେଶ କରି ନିଆଁ ନେଇଆସି ଜଳୁଥିବା ନିଆଁ ଲଗିକୁ ଛପର ଉପରକୁ ଫିଙ୍ଗିଦେବାର ଆତଙ୍କ ଦେଖେଇ ଆଦେଶ ଦେବାକୁ ଲାଗିଲେ – "ଚାଲିଯାଅ ! ବର୍ତ୍ତମାନ ଚାଲିଯାଅ !"

ଗ୍ରାମବାସୀଙ୍କର ଗୁହାରି ଆଉ ସ୍ତ୍ରୀ-ଛୁଆମାନଙ୍କର ଗଡ଼ି ଗଡ଼ି କାନ୍ଦିବାର ସ୍ୱର ଶୁଣାଗଲା । ଏହା ସତ୍ତ୍ୱେ ମଧ୍ୟ ମହାରାଣୀଙ୍କ ନାମ ନେଇ ନେଇ ଆଶୀର୍ବାଦ ଦେଇ ଚାଲିଥିବା ଲୋକଙ୍କ ମଧ୍ୟରୁ ଜଣକୁ ସୈନିକମାନେ ବାନ୍ଧି ଯୂଥପ ନିକଟକୁ ନେଇଗଲେ ଓ ରଶିର କୋରଡ଼ାରେ ମାରିବାକୁ ଲାଗିଲେ । ଗୋଟାଏ ଛପରରେ ନିଆଁ ଲଗେଇ ଦିଆଗଲା ।

ଯୂଥପ ଆଖିରେ କ୍ରୋଧାଗ୍ନି ଭରି ଘୋଡ଼ାପିଠିରେ ସବାର ହୋଇ ଏ କାଣ୍ଡ ସବୁ ଦେଖୁଥିଲେ । ନିଜ ସୈନିକମାନଙ୍କର ଶିଥିଳତା ଓ ଗ୍ରାମବାସୀଙ୍କର କଦର୍ଯ୍ୟ ବ୍ୟବହାରରେ ଯୂଥପ ଏତେ ଉଦ୍‌ବିଗ୍ନ ଥିଲେ ଯେ କିଛି ଦୂରରେ ଆସୁଥିବା ଓ ଧୀରେ ଧୀରେ ସ୍ପଷ୍ଟ ହୋଇ ଶୁଭୁଥିବା ହାତୀମାନଙ୍କର ଗଳଘଣ୍ଟିର ଶବ୍ଦ ତାଙ୍କ କାନ ଶୁଣି ପାରି ନ ଥିଲା । ମାରପିଟରେ ଲାଗିଥିବା ସୈନିକ ଓ ତ୍ରାହି ତ୍ରାହି ଚିତ୍କାର କରୁଥିବା ଗ୍ରାମବାସୀ ସବୁ ବା କ'ଣ ଧ୍ୟାନ ଦେଇଥାଆନ୍ତେ ।

ହାତୀଗଳାରେ ଥିବା ଘଣ୍ଟିର ଟଂକାର ଅତି ନିକଟତର ହେଲା ଓ ତା ସାଙ୍ଗକୁ ଡାକ ମଧ୍ୟ ଶୁଭିଲା – "ପରମ ଭଗବତୀ ମହାରାଣୀଙ୍କର ଜୟ ହେଉ ! ରୁହ, ରୁହ ! ଏହା ମହାରାଣୀଙ୍କର ଆଦେଶ ନୁହେଁ ।"

ଏ ଘୋଷରେ ଯୂଥପର କ୍ରୋଧାଗ୍ନିରେ ଘିଅ ପଡ଼ିଲା ଯେପରି । ସେ ହଠାତ୍ ଆବଦ୍ଧ ସିଂହ ଭଳି ବୁଲିପଡ଼ି ପଛକୁ ଅନେଇଲେ । ପୂର୍ବଦିଗରୁ ଆସୁଥିବା ରାସ୍ତାରେ ଏକ ରାଜକୀୟ ହାତୀ ତାଙ୍କ ପଛେ ପଛେ ଆସି ପହଞ୍ଚିଲେ । ହାତୀ ଉପର ହାଉଦାରେ ଛିଡ଼ା ଥିବା ରାଜଚିହ୍ନଧାରୀ କଞ୍ଚୁକୀ ଦୁଇବାହୁ ଉତ୍ତୋଳନ କରି କହି ଚାଲିଥିଲା – "ରୁହ ! ରୁହ ! ପରମ ଭଗବତୀ ପ୍ରଜାଙ୍କୁ ଅଭୟଦାନ ଦେଇଛନ୍ତି । ମହାରାଣୀଙ୍କର ଆଦେଶ ଅଛି, ଦୀନ ପ୍ରଜା ତ୍ରାସତ ନ ହେଉ, ତାଙ୍କ ସାଙ୍ଗରେ ଅନ୍ୟାୟ ନ ହେଉ ।"

ଯୂଥପ, ସୈନିକ ଏବଂ ତ୍ରାହି ତ୍ରାହି ଚିତ୍କାର କରୁଥିବା, ଗୁହାରି କରୁଥିବା ଲୋକସବୁ, ସ୍ତ୍ରୀ-ପିଲାମାନେ ସ୍ତବ୍ଧ ରହିଗଲେ । ହାତୀ ବସିଗଲା । କଞ୍ଚୁକୀ ହାଉଦାରୁ ବାହାରି ହାତୀ ଲାଞ୍ଜର ସାହାରାରେ ଏବଂ ହାତୀ ସାଙ୍ଗରେ ଚାଲୁଥିବା ବଲ୍ଲମଧାରୀ ଶରୀରରକ୍ଷକ ସୈନିକ ଚାରିଜଣଙ୍କ ମଧ୍ୟରୁ ଜଣକର ସାହାରା ନେଇ ଓହ୍ଲେଇ ଗଲା ।

ହାଉଦାରେ ମହାମହିମାମୟୀ କଳିଙ୍ଗର ବାଳିକା ଯୁବରାଜ୍ଞୀ ଅମିତା ମଧ୍ୟ ଛିଡ଼ାଥିଲେ । ସେ ତାଙ୍କୁ କୋଳେଇନବାକୁ ବାହୁ ବିସ୍ତାର କରି କଞ୍ଚୁକୀଙ୍କୁ ଡାକିଥିଲେ – "ମାମୁ, ମୋତେ ମଧ୍ୟ, ମୋତେ ବି ଉତାରି ଦିଅ !"

କଞ୍ଚୁକୀ ଉପରକୁ ବାହୁ ଉଠେଇଲେ ଏବଂ ହିତା ଯୁବରାଜ୍ଞୀଙ୍କୁ ହାତୀ ଉପରୁ ତଳକୁ କଞ୍ଚୁକୀର ବାହୁରେ ଦେଇଦେଲା । ଅମିତା ମଧ୍ୟ ତଳକୁ ଆସିଗଲେ ।

ଯୁବରାଜ୍ଞୀଙ୍କୁ ତଳେ ଛିଡ଼ାଥିବା ଦେଖି ଯୂଥପ ନିଜ ଘୋଡ଼ାରୁ କୁଦି ପଡ଼ି ବିନୟ ଭାବରେ ମୁଣ୍ଡ ନଇଁ ରାଜକୁମାରୀଙ୍କର ଅଭିବାଦନ କଲେ – "ଜୟ ହେଉ ! ଯୁବରାଜ୍ଞୀଙ୍କର ଜୟ ହେଉ !"

ଅମିତା ସେଇ ରୌଦ୍ରକାଣ୍ଡରେ ବିସ୍ମିତ ଓ ଦୁଃଖୀ ହେଲେ, ନେତ୍ରଯୁଗଳ ଭୟରେ ବିସ୍ଫାରିତ ହେଲା । ସରଳ, କୋମଳ, ଉଜ୍ଜ୍ୱଳ ମୁଖମଣ୍ଡଳରେ ଆତଙ୍କର ମଳିନତା ଛାଇ ଯାଇଥିଲା । ଯୂଥପଙ୍କ ଅଭିବାଦନ ଶୁଣି ଅମିତା ତାଙ୍କ ଆଡ଼କୁ ଚାହିଁ ପଲକ ନିକ୍ଷେପ କରି କହିଲେ– "ଏ ସୈନିକମାନେ ପ୍ରଜାଙ୍କୁ କାହିଁକି ଡରାଉଛନ୍ତି ? ସେମାନଙ୍କୁ କନ୍ଦାଉଛନ୍ତି କାହିଁକି ? ତାଙ୍କୁ କାହିଁକି ମାରୁଛନ୍ତି ?"

ଯୂଥପ ପୁଣି ବିନୟ ଭାବରେ ମୁଣ୍ଡ ନୁଆଁଇ ସ୍ୱରକୁ କୋମଳ କରି ଉତ୍ତର ଦେଲା– "ଭଗବତୀ ଯୁବରାଜ୍ଞୀଙ୍କର ଜୟ ହେଉ ! ଭଗବତୀ, ଏହା ମାରିବା ବା ଡରାଇବା ନୁହଁ । ଏହା ରାଜେଶ୍ୱରୀଙ୍କର ଆଦେଶରେ ରାଜ୍ୟରକ୍ଷାର ପ୍ରବନ୍ଧ । ଶତ୍ରୁ ପାଖରୁ ରକ୍ଷା ପାଇଁ... ।"

ଅମିତା ବାଳ-ସୁଲଭ ଉତ୍ତେଜନାରେ କହିଲେ– "ତୁମେ ଏମାନଙ୍କୁ ମାରୁଛ; ଏମାନଙ୍କର ରକ୍ଷା କରୁ ନାହଁ !"

ଯୂଥପ ପୁଣି ବିନୟ ହେଲେ– "ଭଗବତୀ ଯୁବରାଜ୍ଞୀ, ଏହା ପ୍ରଜାଙ୍କୁ ମାରିବା ନୁହଁ, ଏହା ପରମ ଭଗବତୀ ମହିଷୀଙ୍କର ଇଚ୍ଛା ଏବଂ ମହାସେନାପତିଙ୍କର ଆଦେଶ; ଯୁଦ୍ଧର ପ୍ରବନ୍ଧ ।"

ବାଳିକା ଅମିତା ଯୁଦ୍ଧର ପ୍ରବନ୍ଧର କଥା କେବେ ଶୁଣି ନ ଥିଲେ । ସେ ଯୂଥପର କଥାକୁ ବିଶ୍ୱାସ ନ କରି କହିଲେ– "ଓହୋ, ଏହା ମାଡ଼ ନୁହଁ ତ କ'ଣ ଖେଳ ? ଆଚ୍ଛା ମୁଁ ମଧ୍ୟ ଏ ଖେଳ ଖେଳେ ।"

ଘଟଣା-ସ୍ଥଳରେ ଯୁବରାଜ୍ଞୀ ସହସା ପହଞ୍ଚିବାରେ ସୈନିକମାନେ ଗ୍ରାମବାସୀଙ୍କୁ ଆହ୍ୱାନ କରି ମାରିବା ଛାଡ଼ି ମୂର୍ତ୍ତିବତ୍ ଛିଡ଼ା ହୋଇଯାଇଥିଲେ । ହାତରେ ଥିବା ରଶି କୋରଡ଼ା ସବୁ ତାଙ୍କ ହାତରେ ହିଁ ଲଟକି ରହିଥିଲା । ଅମିତା କୋରଡ଼ା ଧରି ଏକ ସୈନିକ ଆଡ଼କୁ ହାତବଢ଼େଇ କହିଲେ– "ଏ ଖେଳ ମୁଁ ମଧ୍ୟ ଖେଳିବି ।"

ସୈନିକ ବିନୟ ଭାବରେ ଭୂମିସ୍ପର୍ଶ କରି ରାଜକୁମାରୀଙ୍କ ଆଡ଼କୁ ବଢ଼ିଆସିଲେ । ଅମିତା ସୈନିକ ହାତରୁ କୋରଡ଼ା ନେଇଗଲେ ଏବଂ ସେନାନାୟକଙ୍କ ଆଡ଼କୁ ଘୂରିଗଲେ । ସେ ହାତୀ ପିଠି ଉପରୁ ସୈନିକ ଗ୍ରାମବାସୀଙ୍କୁ ମାରିବା ଦେଖିଥିଲେ । ସେହିପରି ତାଙ୍କ ଛୋଟ କୋମଳ ହାତ ଦୁଇଟିରେ କୋରଡ଼ାକୁ ଘୂରାଇ ଯୂଥପଙ୍କ ପିଠିରେ ମାରିଦେଲେ ଏବଂ ହସି ହସି ପଚାରିଲେ– "ଏ ଖେଳ ଠିକ୍ ଅଛି ?"

ମହାସେନାପତି ରୁଦ୍ରକୀର୍ତ୍ତିଙ୍କର ଭାଇ ପୁଅ ଯୂଥପ ସ୍କନ୍ଦ ଅସହ୍ୟ ଅପମାନ ପାଇ ସୁଦ୍ଧା ଯୁବରାଜ୍ଞୀଙ୍କ ସାମନାରେ ଚୁପ୍‌ଥାଏ । ଯୂଥପ ନିଜେ ନିଜକୁ ବଶରେ

ରଖିବାପାଇଁ ମୌନରହି ମୁଣ୍ଡ ନଇଁଦେଲେ । ଅବଶିଷ୍ଟ ସୈନିକଗଣ ଓ ଗ୍ରାମବାସୀଙ୍କ ବିସ୍ମୟ ଏବଂ ଆତଙ୍କରେ ରୋମାଞ୍ଚ ଜାତ ହେଲା ।

ନୂଆଖେଳ ପାଇ ଅମିତାଙ୍କ ଧ୍ୟାନ ଖେଳରେ ବୁଡ଼ିଗଲା । ମୁଣ୍ଡନଇଁ ମୌନଥିବା ଯୂଥପଙ୍କୁ ସମ୍ବୋଧନ କରି ସେ କହିଲେ– "ଆଚ୍ଛା, ଏବେ ତୁମେ ଖେଳ । ତୁମେ ମୋ ପିଠିରେ ଲଗାଅ । ଦେଖିବା ଏ ଖେଳ କେମିତି ଲାଗୁଛି ?"

ଯୂଥପ ସ୍କନ୍ଦ ମୌନ ଜଡ଼ବତ୍ ଛିଡ଼ା ରହିଲେ । ଅମିତା ତାଙ୍କ ଆଗ୍ରହ ପୁଣି ପ୍ରକାଶ କଲେ କିନ୍ତୁ ସ୍କନ୍ଦ ମୁଣ୍ଡ ନୁଆଁଇ ମୂର୍ତ୍ତିବତ୍ ଛିଡ଼ା ରହିଲେ ।

ବୃଦ୍ଧ ଉଦ୍ଦାଳ ଆଗକୁ ଆସି ଅମିତାଙ୍କୁ ସ୍ନେହରେ ବୁଝେଇଲେ– "ଭଗବତୀ ଅମ୍ଭେ, ଏହା ଉଚିତ ନୁହଁ । ଏପରି କରନ୍ତିନି । ରାଜପୁରୁଷଙ୍କୁ ଆଦର କରନ୍ତି ।"

ଅମିତା ହଟକରି ଦୁଇବାହୁ ହଲାଇ ଆଗ୍ରହ ପ୍ରକାଶ କଲେ– "ନା ମାମୁ, ଆମେ ଖେଳିବୁ ।" ଏବଂ ସେ ସେନାନାୟକଙ୍କୁ ପୁଣି ସମ୍ବୋଧନ କଲେ, ଖେଳ ନା ଖେଳ !

ଯୂଥପ ରୁଦ୍ଧ କଣ୍ଠରେ ମୁଣ୍ଡନୁଆଁଇ କହିଲେ – "ସେବକ ଏପରି ଅଧର୍ମ କରିପାରିବ ନାହିଁ ।"

ଅମିତା ଯୂଥପଙ୍କ ଉତ୍ତରରେ ରୁଷିଲେ ଏବଂ ଅନ୍ୟ ସୈନିକ ନିକଟକୁ ଯାଇ ତା ଆଡ଼କୁ କୋରଡ଼ା ବଢ଼େଇ କହିଲେ– "ଆଚ୍ଛା ତୁମେ ଏ ଖେଳ ଖେଳ । ମୋ ପିଠିରେ ମାର !"

ସୈନିକ କିଛି କହି ନ ପାରି ଭୂମିରେ ବସିପଡ଼ି କ୍ଷମା ଯାଚନା କରିବା ଉଦ୍ଦେଶ୍ୟରେ ମୁଣ୍ଡ ନୁଆଁଇ ଭୂମି ସ୍ପର୍ଶ କଲା ।

ରାଜକୁମାରୀ ନିଜକଥା କେହି ନ ମାନୁଥିବା ଦେଖି ଏବଂ କାହାପାଖରୁ ସହଯୋଗ ନ ପାଇ କୁଣ୍ଠିତ ହୋଇପଡ଼ିଲେ– "ଆଚ୍ଛା, ତାହେଲେ ମୁଁ ନିଜେ ନିଜେ ଖେଳିବି ।"

ଅମିତା କୋରଡ଼ାରେ ନିଜ ଦୁଇହାତରେ ନିଜ ପିଠିରେ ମାରିବାକୁ ଉଠାଇଲେ । କଞ୍ଚୁକୀ, ହିତା ଏବଂ ବାପୀ ଭୟଭୀତ ହୋଇ ତାଙ୍କୁ ବାଧାଦେବାକୁ ଝାମ୍ପି ପଡ଼ିଲେ, ମାତ୍ର ବାଧାଦେବା ପୂର୍ବରୁ ଅମିତା ନିଜ ପିଠିରେ କୋରଡ଼ା ମାରିସାରିଥିଲେ । ସେଇ ଚୋଟରେ ସେ ବ୍ୟାକୁଳ ହୋଇ ଉଠିଲେ । କୋରଡ଼ା ତାଙ୍କ ହାତରୁ ପଡ଼ିଗଲା ।

ହିତା ଯୁବରାଜ୍ଞୀଙ୍କୁ ତୁରନ୍ତ ଟେକିନେଇ ନିଜ ଛାତିରେ ଜାକି ଧରି ତାଙ୍କ ପିଠି ଆଉଁଶିବାରେ ଲାଗିଲା । ଦାସୀର ଆଖିରୁ ଲୁହ ବୋହିପଡ଼ିଲା । ବାପୀ

ଅଶ୍ରୁଳ ନୟନରେ ଆଗକୁ ବଢ଼ି ଅମିତାଙ୍କୁ ନିଜ କୋଳକୁ ଟାଣି ନେବାକୁ ଚାହୁଁଥିଲା । ମାତ୍ର ବାଳିକା ହିତା ପାଖରେ ଲଟକି ପଡ଼ିଲେ । କଞ୍ଚୁକୀ ମଧ ତ୍ରାସରେ ନିଜ ହାତ ଅମିତା ପିଠିରେ ରଖିଦେଲା ।

ଯୁବରାଜ୍ଞୀଙ୍କ ଆଖି ଲୁହରେ ଛଳଛଳେଇ ଆସିଥିଲା । ସେ ଯୂଥପ ଆଡ଼କୁ ଦେଖି କ୍ରୋଧ ପ୍ରକଟ କଲେ – "ଏହା ବଡ଼ ଖରାପ ଖେଳ । ତୁମେ ଦୁଷ୍ଟ । ତୁମେ ଅନ୍ୟମାନଙ୍କ ଅଧିକାର ଲୁଟି ନେଉଛ, ଅନ୍ୟମାନଙ୍କୁ ଡରାଉଛ, ମାରୁଛ । ମୁଁ ତୁମକୁ ବଭ୍ରୁ ପରି ବାନ୍ଧି ଦଣ୍ଡ ଦେବି ।"

ଅମିତା ହିତାକୁ ଆଦେଶ ଦେଲେ– "ହିତୁ, ତୁ ବଭ୍ରୁର ଜଞ୍ଜିର ନେଇଆ । ମୁଁ ଏ ଦୁଷ୍ଟକୁ ବଭ୍ରୁପରି ବାନ୍ଧିବି ।"

ରାଜପ୍ରାସାଦରୁ ଯିବା ସମୟରେ ବଭ୍ରୁକୁ ମଧ ହାତୀ ପିଠି ଉପରେ ହାଉଦାରେ ବସେଇ ନେବାକୁ ହୋଇଥିଲା । କୁକୁରଟି ହାଉଦାରେ ଉତ୍ପାତ ଆଉ ଡିଆଁ କୁଦା ନ କରିବ ବୋଲି ଭାବି କଞ୍ଚୁକୀ ତାର ଗଳାର ଜଞ୍ଜିରକୁ ହାଉଦା ବାଡ଼ରେ ବାନ୍ଧି ରଖିଥିଲା । ଅନ୍ୟ ଲୋକସବୁ ତଳକୁ ଓହ୍ଲେଇଯିବା ପରେ ବି ବଭ୍ରୁ ହାଉଦାରେ ବନ୍ଧା ରହିଥିବା କାରଣରୁ କାନଟେକି ଘଟଣା କ'ଣ ଜାଣିବା ଅଭିପ୍ରାୟରେ ଟାଣିଓଟାରି ହେଉଥାଏ ଓ କୁଁ କୁଁ କରୁଥାଏ ।

ପିଠିରେ ଚୋଟଖାଇ ଆଖିରେ ଲୁହଭରା ଯୁବରାଜ୍ଞୀଙ୍କ ଅନୁରୋଧର ଉପେକ୍ଷା କରାଯାଇ ପାରି ନ ଥିଲା । ତାଙ୍କୁ ବୋହୁଲେଇବାପାଇଁ ହିତାର ନିର୍ଦ୍ଦେଶରେ ମହାବତ କୁକୁର ଜଞ୍ଜିର ଖୋଲି ତଳକୁ ଫୋପାଡ଼ିଦେଲା ଏବଂ ହିତା ଜଞ୍ଜିରଟିକୁ ଆଣି ଅମିତା ହାତରେ ଦେଇଦେଲା । ଅମିତା ବାହୁତୋଳି ଟେକି ନେଲା ପରେ ମଧ ଯୂଥପ ଗଳାରେ ଜଞ୍ଜିର ପକେଇ ନ ଥିଲେ । ସେ ଏ କାମ କରିବାକୁ ହିତାକୁ ଆଦେଶ ଦେଲେ । ହିତା ଭୟ ଏବଂ ସଙ୍କୋଚରେ ନିଜ ମା ଓ ଉଦ୍ଧାଳ ଆଡ଼କୁ ଚାହିଁଲା । କଞ୍ଚୁକୀ ରାଜକୁମାରୀ ଆଗରେ ନଇଁଯାଇ ଧୀରକଣ୍ଠରେ ବିନୀତ ଭାବରେ ବୁଝେଇଲା ! – "ଅୟେ ଭଗବତୀ, ଏପରି କରନ୍ତିନି । ସମ୍ମାନିତ ସାମନ୍ତ ଏବଂ ରାଜପୁରୁଷଙ୍କୁ ଜଞ୍ଜିରରେ ବାନ୍ଧନ୍ତିନି ।"

ଅମିତା ହଟରେ ଚଞ୍ଚଳ ହୋଇପଡ଼ି କହିଲେ– "ନୁହଁ ମାମୁ, ଏ ଦୁଷ୍ଟ । ଦେଖ ଏ ଅନ୍ୟଲୋକଙ୍କୁ ବାନ୍ଧିଛନ୍ତି, ମାରିଛନ୍ତି । ମୁଁ ଏହାଙ୍କୁ ଦଣ୍ଡଦେବି । ହିତୁ, ତୁ ଏହାଙ୍କୁ ବାନ୍ଧିପକାଅ ।"

ହିତା ଏପରି ସାହସ କରି ନ ଥିଲା । ସେ ଅମିତାକୁ କୋଳକୁ ନେଇଗଲା । ଯୂଥପଙ୍କ କାନ୍ଧ ବରାବର ଉପରକୁ ଟେକି ତାଙ୍କ ସାମନାକୁ କରି ଦେଇଥିଲା ।

ଅମିତା କୁକୁର ଜଞ୍ଜିର ସେନାନାୟକଙ୍କ ଗଳାରେ ପିନ୍ଧେଇ ଦେଲେ ଏବଂ ମଜାରେ ପାଟିକରି ତାଳି ବଜେଇ ଅଟ୍ଟହାସ୍ୟ କରି ପକେଇଲେ । ଅମିତା ସେନାନାୟକଙ୍କୁ ଜଞ୍ଜିରରେ ଟାଣି ଟାଣି ହାତୀ ପାଖକୁ ନେଇ ଚାଲିଲେ ।

ଯୁବକ ସାମନ୍ତ ସ୍କନ୍ଦ ନିଜ ସମ୍ମାନରକ୍ଷା ପାଇଁ ଶତ ମଣିଷର ରକ୍ତବୁହାଇ ଦେବା କିମ୍ବା ନିଜ ମୁଣ୍ଡ କାଟ ପାଇଁ ମଧ ତାଙ୍କର ଭୟ ବା ସଙ୍କୋଚ ନ ଥିଲା । ମାତ୍ର ଦେବତା ଆଉ ରାଜାଙ୍କ ସମ୍ମୁଖରେ ତାର ମୁଣ୍ଡ ଉଠୁ ନ ଥିଲା । ସେ ଭାଗ୍ୟର ଏ ବିଡ଼ମ୍ବନାକୁ ସହିଛିବା ପାଇଁ ବିବଶ ଓ ମୃତ୍ୟୁରୁ ମଧ ଅଧିକ ଦାରୁଣ କଷ୍ଟ ଅନୁଭବ କରୁଥିଲେ । ବାଳିକା ଯୁବରାଜ୍ଞୀ ତାକୁ ଟାଣି ହାତୀ ପାଖକୁ ନେଇଯିବା ବେଳେ ଆଦରରେ କହୁଥିଲେ– "ତୁମେ ବଲ୍ଲୁ ପରି ଦୁଷ୍ଟ । ମୁଁ ତୁମକୁ ବାନ୍ଧିରଖି ଦୁଧଭାତ ଦେବି ।"

କଞ୍ଚୁକୀ ବାପୀ ଓ ହିତା ହାତଯୋଡ଼ି ପ୍ରାର୍ଥନା କରୁଥିଲେ ବାଳିକା ଯୁବରାଜ୍ଞୀଙ୍କୁ – "ଅମ୍ଭେ ମହାରାଣୀ; ଏହା ଉଚିତ ନୁହଁ । ପରମ ଭଗବତୀ ରାଜମାତା ଶୁଣି ରାଗିବେ । ଆଚାର୍ଯ୍ୟକାକା ଶୁଣି କ୍ଷୁବ୍ଧ ହେବେ । କିନ୍ତୁ ଅମିତା ହଟ ଛାଡ଼ିଲେନି । ଗଳାରେ ଜଞ୍ଜିର ପିନ୍ଧି ସେନାନାୟକଙ୍କୁ ହାତୀ ଉପରେ ବସିବାକୁ ହେଲା ।

କଞ୍ଚୁକୀ ହାତୀରେ ବସିବା ଆଗରୁ ଶେଷ ସୈନିକଗଣଙ୍କୁ ପୁଣିଥରେ ଶେଷ ଚେତାବନୀ ଦେଲେ– "ପରମ ଭଗବତୀ ମହାରାଣୀ ପ୍ରଜାଙ୍କୁ ଅଭୟ ଦାନ ଦେଇଛନ୍ତି । ମହାରାଣୀଙ୍କର ଆଦେଶ ପ୍ରଜାକୁ ତ୍ରାସ ନ ହେଉ । ତାଙ୍କ ଉପରେ ଅନ୍ୟାୟ ନ ହେଉ । ତାଙ୍କ ଘରବାଡ଼ି ଅଧିକାର କରା ନ ହେଉ । ମହାରାଣୀଙ୍କର ଦୁର୍ଗ ଅଥବା ରାଜପ୍ରାସାଦର ଇଚ୍ଛା ନାହିଁ ।"

ଗ୍ରାମବାସୀଙ୍କ ଲୁହ ପଲକ ମାତ୍ରକେ ଶୁଖିଗଲା । ସେମାନେ ଆଶ୍ୱସ୍ତ ହୋଇ ଜୟ ଜୟକାର କରିବାକୁ ଲାଗିଲେ– "ପରମ ଭଗବତୀଙ୍କର ଜୟ ହେଉ ! ଭଗବତୀ ଯୁବରାଜ୍ଞୀଙ୍କର ଜୟ ହେଉ ।"

ସୂର୍ଯ୍ୟ କ୍ଷିତିଜରୁ ତଳକୁ ଓହ୍ଲେଇ ସାରିଥିଲା । ମାତ୍ର ପଶ୍ଚିମ ଆକାଶରେ ଏବେବି କିଛିଟା ଅରୁଣିମା ଥିଲା । କଳିଙ୍ଗର ରାଜପ୍ରାସାଦର ଊର୍ଦ୍ଧ୍ୱରେ ଏବେବି ସୂର୍ଯ୍ୟର ଅନ୍ତିମ କିରଣ ଆଗରେ ଚମକୁଥିଲା, କିନ୍ତୁ ପ୍ରକାଣ୍ଡ ପ୍ରାଚୀର ଓ ଅଳିନ୍ଦ ଘେରାମାନଙ୍କରେ ଧୀରେ ଧୀରେ ମହାରାଣୀଙ୍କ କକ୍ଷର ଚାରିକୋଣରେ ଉଚ୍ଚ ଦୀପାଧାରରେ ନିର୍ଧୂମ ସୁଗନ୍ଧିତ ତୈଳର ଦୀପ ସବୁ ଜଳେଇ ଦିଆ ଯାଇଥାଏ ।

ମହାରାଣୀ ବେଦୀ ଉପରେ ତଥାଗତଙ୍କର ଧାତୁର ସ୍ୱର୍ଣ୍ଣପାତ୍ର ସମ୍ମୁଖରେ ରଖି ଘିଅଦୀପର ବତିକୁ ତେଜିଦେଲେ ଆଉ ଧୂମପାତ୍ରରେ ଚନ୍ଦନ ଆଉ ସୁଗନ୍ଧିତ ଦ୍ରବ୍ୟମାନଙ୍କର ଚୂର୍ଣ୍ଣ ଭରି ପବିତ୍ର ସୁଗନ୍ଧିତ ଧୂମର ମାତ୍ରା ବଢ଼େଇ ଦେଇଥିଲେ । ସୁନାଥାଳିରେ ଘୃତ ଦୀପ, ଧୂମପାତ୍ର ଆଉ ନୈବେଦ୍ୟ ନେଇ ସେ ଭଗବାନ୍‌ଙ୍କ ଧାତୁର ସ୍ୱର୍ଣ୍ଣପାତ୍ରରେ ଆଳତି ଦେବାକୁ ଲାଗିଲେ ।

ଦାସୀ ରୁପାର ଛୋଟ ରୁଖାରେ ଦୀପଟିଏ, ଚଟାଣ ଉପରେ ପଡ଼ିଥିବା ଆସନ ସମ୍ମୁଖରେ ଗ୍ରନ୍ଥପିଢ଼ା ଉପରେ ରଖି ଦେଇଥିଲା । ମହାରାଣୀ ପୂଜା ସାରି ଧର୍ମ ଗ୍ରନ୍ଥ ପାଠରେ ବସିଗଲେ ।

ରାଜମାତାମହୀଙ୍କର ଜଣେ ଦାସୀ, ମହାରାଣୀଙ୍କ କକ୍ଷଦ୍ୱାରରେ ନତମସ୍ତକ ହୋଇ ଛିଡ଼ାହେଲା । ମହାରାଣୀ ତୁରନ୍ତ ଗ୍ରନ୍ଥପାଠ ଛାଡ଼ି ଦ୍ୱାରଦେଶକୁ ଆସିଲେ । ବୃଦ୍ଧା ରାଜମାତା ଦାସୀ କାନ୍ଧରେ ଭରାଦେଇ ଆସି ମହାରାଣୀଙ୍କ କକ୍ଷରେ ପ୍ରବେଶ କଲେ । ରାଜମାତାଙ୍କର କେଶ ଶ୍ୱେତ ଥିଲା । ଦାନ୍ତସବୁ ଝଡ଼ି ସାରିଥିବାରୁ ପାଟି ପାକୁଆ ହୋଇଯାଇଥିଲା । ତାଙ୍କ ଶରୀରରେ ଗହମ ରଙ୍ଗର ପଶମ ଚାଦର ଆଉ କଟିଦେଶରେ ଶ୍ୱେତ ରେଶମର ଶାଟବ ବସ୍ତ୍ର ଲାଗିଥିଲା । ମହାରାଣୀ ରାଜମାତାଙ୍କର ଚରଣ ସ୍ପର୍ଶ କରି ପ୍ରଣାମ କଲେ ଓ ଆସନ ଗ୍ରହଣ କରିବାକୁ ପ୍ରାର୍ଥନା କଲେ ।

ରାଜମାତାମହୀ ମହାରାଣୀଙ୍କର ଯୁବରାଜ୍ଞୀ ପୁତ୍ରୀର ଶତାୟୁ କାମନାରେ ଆଶୀର୍ବାଦ ଦେଇ ଆସନ ଗ୍ରହଣ କଲେ । ଜଣେ ଦାସୀ ବାହୁରେ ଏକ ଉତ୍ତରୀୟ ବସ୍ତ୍ର ଝୁଲେଇ ଏବଂ ଆଉ ଏକ ଦାସୀ ରଜତ ତାମ୍ବୂଳ ମଞ୍ଜୁଷା ଧରି ତା ପଛରେ ଠିଆ ହୋଇଥିଲା । ବୃଦ୍ଧା କକ୍ଷର ପ୍ରତିକୋଣରେ ଆଖି ବୁଲେଇ କହିଲେ – 'ବୋହୂ, ସାରାଦିନ ବିତିଗଲା; ସୂର୍ଯ୍ୟାସ୍ତ ହେଲା, ଆଜି ମୋ ଚାନ୍ଦ, ନାତୁଣୀ ଦିଶିଲା ନାଇଁ । ମନ ମାନିଲା ନାହିଁ ବୋଲି ଚାଲିଆସିଲି । କୁଆଡ଼େ ଯାଇଛି ସେ !'

ରାଜକୁମାରୀ ଅମିତା ତୃତୀୟ ପ୍ରହରରେ କଞ୍ଚୁକୀ ସହିତ ଯାଇଥିଲେ ଏବଂ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଫେରି ନ ଥିଲେ । ମହାରାଣୀ ମଧ୍ୟ ଚିନ୍ତିତ ଥିଲେ, ମାତ୍ର ତଥାଗତଙ୍କର ସନ୍ଧ୍ୟାକାଳୀନ ପୂଜାର ସମୟ ହୋଇଯାଇଥିବା ହେତୁ ସେ ଚିନ୍ତାହାରୀ କରଣୀୟ ମୈତ୍ରୀ ସୂତ୍ରର ପାଠ କରି ମନକୁ ନିଶ୍ଚିନ୍ତ କରି ନେଇଥିଲେ । ସେ ଶାଶୁମାତାଙ୍କର ପ୍ରଶ୍ନର ଉତ୍ତରରେ କହିଲେ – 'ଝିଅ ନଗର ବିହାରକୁ ଯିବାପାଇଁ ଇଚ୍ଛା କରୁଥିଲା । କଞ୍ଚୁକୀ ମାମୁ ଓ ବାପୀ ସହିତ ହାତୀରେ ଯିବାପାଇଁ ମୁଁ

ତାକୁ ଅନୁମତି ଦେଇଥିଲି । ତାର ଏ ଯାଏ ଫେରିଆସିବା କଥା, ବୋଧହୁଏ ଆସୁଥିବ । ଈଶ୍ୱର ରକ୍ଷାକାରୀ ଅଛନ୍ତି !

ରାଜମାତାମହୀ ବିସ୍ମୟରେ ପାକୁଆ ଗାଲରେ ହାତରଖି କହିଲେ— ବୋହୂ, କୋଡ଼ଛୁଆକୁ କିଏ କୋଉଠି ଏତେବେଳ ଆଖି ଆଗରୁ ଦୂରେଇ ରଖେ ? ଶୁଣ, ତୁମେ ଚୈତ୍ୟରେ ଝିଅର କଲ୍ୟାଣ ପାଇଁ ପରିତ୍ରାଣ ଦିବାସେନାର ପାଠ କରାଉଛ ତ ? ତାହା ସହିତ ବୈତାଳିକ ଦ୍ୱାରା ଦୋଷ ମାର୍ଜନା କରାଉଛ ନା ନାହିଁ ?

ରାଜମାତା ତାମ୍ବୂଳବାହିକା ଦାସୀକୁ ଅନେଇଲେ । ଦାସୀ ସ୍ୱାମିନୀଙ୍କର ଇଚ୍ଛା ବୁଝି ତୁରନ୍ତ ପାନ ଭାଙ୍ଗି ବସିଲା । ରାଜମାତାମହୀ ଆପଣାର ଅସନ୍ତୋଷ ପ୍ରକାଶ କରି କହି ଚାଲିଥିଲେ— 'ବୋହୂ, ତମର ବୈରାଗ୍ୟ ତ ଏଭଳି ଯେ ତମେ ତମର ନିଜର ଚିନ୍ତା ଛାଡ଼ିଦେଇଛ, ଏପରିକି ଝିଅ ପ୍ରତି ମଧ୍ୟ ନିର୍ଦ୍ଦୟ ହେଉଛ ଧୀରେ ଧୀରେ । ସେଇ ତ ବଂଶ ଦୀପକର ଜ୍ୟୋତି !''

ମହାରାଣୀ ଚିତ୍ତକୁ ସ୍ଥିର କରିବା ନିମିତ୍ତ ଘଡ଼ିକ ପାଇଁ ଆଖି ବୁଜି କହିଲେ— 'ମା, ଚିନ୍ତାରେ କେବଳ ମନ ଭ୍ରମିତ ... ।'

ମହାରାଣୀଙ୍କର କଥା ସରି ନ ଥିଲା; ସେତେବେଳେ କକ୍ଷର ଅଳିନ୍ଦରେ ଅମିତାଙ୍କର କଣ୍ଠସ୍ୱର ଶୁଣାଗଲା ।... 'ମା'... ମା'... ଆଉ ନାଚି ଡେଇଁ ଖିଲିଖିଲି ହସି ହସି ଅମିତା କକ୍ଷମଧ୍ୟରେ ପ୍ରବେଶ କଲେ । ମହାରାଣୀଙ୍କର ମୁଖର କଥା ମୁଖରେ ହିଁ ରହିଗଲା ! ମହାରାଣୀଙ୍କର ସୂତ୍ରପାଠ କରି ତଥାଗତଙ୍କର ସ୍ମରଣ କରିବା ମାତ୍ରକେ ଝିଅର ଆସିଯିବାକୁ ଭଗବାନ୍‌ଙ୍କର କୃପାର ଚମତ୍କାର ମନେକରି ସେ ମଥାନତ କରି ଆଖିବୁଜି ପ୍ରଣାମ କଲେ ।

ପିତାମହୀ ରାଜମାତା ବାହୁତୋଳି ପୌତ୍ରୀକୁ ଡାକିଲେ 'ଆ... ଆ ଚାନ୍ଦ... କୁଆଡ଼େ ଯାଇଥିଲୁ ତୁ ?'

ପିତାମହୀଙ୍କର ଡାକରା ଅମିତାଙ୍କର କାନରେ ପଡ଼ିଲା ନାହିଁ । ସେ ପଛକୁ ଲେଉଟି ଚାହିଁ ଆପଣା ହାତରେ ଜଞ୍ଜିରରେ ବନ୍ଧାହୋଇ ରହିଥିବା ଜୀବଟିକୁ ଭିତରକୁ ଡାକୁଥିଲେ । ଶୃଙ୍ଖଳରେ ବନ୍ଧାହୋଇ ଯୂଥପ ଭିତରକୁ ଆସିବାକୁ ଏକପ୍ରକାର ବାଧ୍ୟ ହୋଇଗଲା । ଯୂଥପର ମୁଖମଣ୍ଡଳରେ କ୍ରୋଧ, ଅପମାନ ଏବଂ ଆପଣାର ଅସହାୟ ଅବସ୍ଥାର ଗ୍ଳାନିର ମଳିନତା ଖେଳି ରହିଥିଲା ।

ଅମିତା ପିତାମହୀଙ୍କର ଗେଲ କଥାକୁ କାନ ନ ଦେଇ ଉତ୍ତେଜିତ ସ୍ୱରରେ ମହାରାଣୀଙ୍କ ଆଗରେ ଅଭିଯୋଗ କରୁଥିଲେ... 'ମା.. ମା... ଏ ପୁରୁଷ ବଲ୍ଲୁଭଳି ଦୁଷ୍ଟ । ସେ ଅନ୍ୟକୁ ଡରାଉଛି, ମାରୁଛି । ତାକୁ ଦଣ୍ଡ ଦେବାକୁ ମୁଁ ବାନ୍ଧି ଆଣିଛି ।'

ମହାରାଣୀଙ୍କର ନେତ୍ର ବିସ୍ମୟ ବିସ୍ଫାରିତ ହୋଇଉଠିଲା । ସେ ଉଚ୍ଚୈସ୍ୱରରେ ଆଜ୍ଞା ଦେଲେ... 'ଛାଡ଼ ... ତାଙ୍କୁ ତୁରନ୍ତ ଛାଡ଼ ।'

ଅମିତାଙ୍କ ପଛରେ କକ୍ଷ ବାହାରେ ଠିଆ ହୋଇ ରହିଥିବା କଞ୍ଚୁକୀ ତୁରନ୍ତ ଦଉଡ଼ିଆସି ଯୂଥପଙ୍କ ଗଳାର ଶୃଙ୍ଖଳ ଖୋଲିଦେଲା ।

ମହାରାଣୀ ଝିଅକୁ ଭର୍ତ୍ସନା କରି କହିଲେ– 'କ'ଣ ଏ ମୂର୍ଖତା ! ମନୁଷ୍ୟକୁ କ'ଣ ପଶୁଭଳି ବନ୍ଧାଯାଏ । ରାଜପୁରୁଷଙ୍କୁ ଦାସ ଭଳି ବନ୍ଧାଯାଏ ?'

ଅମିତାଙ୍କର ପିତାମହୀ ଦାସୀଦ୍ୱାରା ପ୍ରସ୍ତୁତ ତାମ୍ବୂଳ ଗ୍ରହଣ କରି ସାରିଥିଲେ । ପାଟି ପୂରି ରହିଥିବା ହେତୁ ବିକୃତ ସ୍ୱରରେ ଆକଟ କଲେ 'ବୋହୂ, କ'ଣ ହେଲା, ପିଲାଲୋକ ! ରାଗୁଛୁ କାହିଁକି ? ସେ ବି ତ ତା'ର ପ୍ରଜା !'

ମହାରାଣୀ କଞ୍ଚୁକୀକୁ ଦେଖି ଅସନ୍ତୋଷ ପ୍ରକାଶ କଲେ । ...'ମାମୁ, ତମେ ଥାଉ ଥାଉ ଏମିତି କେମିତି ହେଲା ! ମିତୁ ଅବୋଧ ! ତମେ ତ ଏଭଳି ହେବାକୁ ଦେଇ ନ ଥାନ୍ତ !' ସେତେବେଳେ ମହାରାଣୀଙ୍କର କଣ୍ଠରେ କ୍ରୋଧର ଧ୍ୱନି ନ ଥିଲା । ସେ ପଚାରିଲେ– 'ପ୍ରଜା ନ୍ୟାୟର ପ୍ରାର୍ଥନା କରିଥିଲେ । ତମେ କ'ଣ ଦେଖିଲ ?'

କଞ୍ଚୁକୀ ନତଶିର ହୋଇ ଧୀର ଗଳାରେ, ମୁଣ୍ଡିଆ ତଳେ ଥିବା ଗାଆଁକୁ ଉଜାଡ଼ି ଦେବା, ପ୍ରଜାଙ୍କୁ ତାଙ୍କର ନିବାସ ସ୍ଥାନରୁ ବଳପୂର୍ବକ ବହିଷ୍କାର କରିବା, ସେମାନଙ୍କ କୁଟୀର ସବୁ ଭାଙ୍ଗିବା ଓ ଅଗ୍ନିଦାହର ଉଦ୍ୟମ ଓ ପ୍ରଜାଙ୍କର ବ୍ୟାକୁଳତାର ପ୍ରତ୍ୟକ୍ଷ ବୃତ୍ତାନ୍ତ ମହାରାଣୀଙ୍କ ଆଗରେ ନିବେଦନ କରିବାକୁ ଲାଗିଲା ।

'ନା' ନା, ସେଭଳି କଦାପି ହେବ ନାହିଁ ।' ମହାରାଣୀ ଅସନ୍ତୋଷ ପ୍ରକାଶ କରି କହିଲେ– 'କାହାର ଆବାସ ଓ ଭୂମି ବଳପୂର୍ବକ ନିଆଯିବ ନାହିଁ । ଆମର ନୂତନ ଦୁର୍ଗ ଏବଂ ଆବାସର ଆବଶ୍ୟକତା ନାହିଁ । ରାଜ୍ୟ ଏବଂ ପ୍ରଜାର ସୁରକ୍ଷା ଅନ୍ୟାୟରେ ହେବ ନାହିଁ; ହୋଇପାରିବ ନାହିଁ । ମନୁଷ୍ୟ ଲୋଭ ଓ ତ୍ରାସ ହେତୁ ଅନ୍ୟାୟ କରିଥାଏ । ଯୁଦ୍ଧ ଓ ହିଂସାର ଭରସା କର ନାହିଁ । ଅଭିଧର୍ମର ଏହାହିଁ ଆଦେଶ । କାହାଠାରୁ ଲୁଣ୍ଠନ କର ନାହିଁ, କାହାକୁ ଡରାଅ ନାହିଁ, କାହାରି ହତ୍ୟା କର ନାହିଁ । ଯୂଥପ ! ମହାସେନାପତିଙ୍କୁ ଆଦେଶ ଦେବ– ଏ ରାଜ୍ୟରେ ହିଂସା ହେବ ନାହିଁ । କଳିଙ୍ଗରେ ଅଭିଧର୍ମର ପାଳନ ହେବ ।

# ଆଚାର୍ଯ୍ୟ ସୁକଣ୍ଠ

ରାତ୍ରୀର ଦ୍ୱିତୀୟ ପ୍ରହର ବିତୁଥିଲା । କଳିଙ୍ଗର ମହାମାତ୍ୟ ଆଚାର୍ଯ୍ୟ ସୁକଣ୍ଠଙ୍କର କକ୍ଷରେ ଭବନ ପରିସରରେ ଏକ ମଶାଲ ଜଳୁଥିଲା । ମୁଖ୍ୟଦ୍ୱାରର ବଡ଼ ବଡ଼ କବାଟ ପଡ଼ିସାରିଥିଲା । ଆଉ ରାତିରେ ସତର୍କତା ପାଇଁ ପ୍ରହରୀ ଛିଡ଼ା ଥିଲା । ଏତିକିବେଳେ ଜଣେ ଘୋଡ଼ସବାର ହାତରେ ମଶାଲ ନେଇ ଫାଟକ ସାମନାରେ ଆସି ଅଟକିଗଲା । ଆଉ ସେ ସମ୍ବାଦ ଦେଲା– "ଆର୍ଯ୍ୟ, ମହାସେନାପତିଙ୍କର ରଥ ଆସୁଛି ।"

ମୁଖ୍ୟ ଦ୍ୱାରରେ ଥିବା ଏକ ପ୍ରହରୀ ତୁରନ୍ତ ସମାଚାର ଦେବାକୁ ଭିତରକୁ ଚାଲିଗଲା । ଆଉ ଦୁଇଟି ମଶାଲ ଜଳିଉଠିଲା । ଫାଟକର ଦ୍ୱାର ରଥକୁ ଯିବା ପାଇଁ ମାର୍ଗ ଦେବା ଉଦ୍ଦେଶ୍ୟରେ ଖୋଲିଗଲା । ମହାସେନାପତିଙ୍କର ରଥ ଆସି ପହଞ୍ଚିଲା ।

ମହା ଅମାତ୍ୟଙ୍କ କୋଠା ଭିତରକୁ, ଅନ୍ତଃପୁରର ଅଗଣାରୁ ସେତେବେଳେ ମଧ କୌଣସି ବନ୍ଦୀ ଅଥବା ଚାରଣ ଦ୍ୱାରା ମନ୍ଦ୍ର ବିଳମ୍ବିତ ଲୟରେ ବୀଣା ବଜାଇବାର ସ୍ୱର ଶୁଣାଯାଉଥିଲା । ଅନୁମାନ ହେଉଥିଲା ଯେ ଅନ୍ତଃପୁରରେ ଆଚାର୍ଯ୍ୟଙ୍କର ଯୁବକ ପୁତ୍ର ଏବଂ ପୁତ୍ରବଧୂ ଏ ଯାଏ ଶୋଇ ନାହାନ୍ତି । ସେହି ଲୟରେ ନିଦ୍ରା ଏବଂ ବିଶ୍ରାମର ଇଚ୍ଛାର ସଙ୍କେତ ଥିଲା, ମାତ୍ର ଆଚାର୍ଯ୍ୟଙ୍କର ଅଗଣାରେ ଏତେବେଳେ ମଧ ପ୍ରହରୀମାନଙ୍କ ସହିତ ଦୁଇଜଣ ଦୂତ ପ୍ରତୀକ୍ଷାରେ ଥିଲେ । ମହାମନ୍ତ୍ରୀଙ୍କର ନିୟମ ଥିଲା ଯେ ସନ୍ଧ୍ୟା ପର୍ଯ୍ୟନ୍ତ ଆସିଥିବା ଦୂତଙ୍କ ବାର୍ତ୍ତା ସେ ଶୟନ କକ୍ଷକୁ ଯିବା ପୂର୍ବରୁ ଶୁଣୁଥିଲେ ।

ଆଚାର୍ଯ୍ୟଙ୍କର କକ୍ଷରେ ଉଜ୍ଜ୍ୱଳ ଆଲୋକ ଥିଲା । ସେ ଏବେ ମଧ କାନ୍ଥକୁ ଲାଗିରହିଥିବା କାଠର ବଡ଼ ତକ୍ତାରେ ପଶମ କପଡ଼ାର ଆସନ ଉପରେ ଚକାମାରି ଡାହାଣହାତ ମୁଠିରେ କାନପଟିକୁ ସାହାରା ଦେଇ, ନିର୍ଧୂମ ଦୀପର ଆଲୋକରେ, ଭୋଜପତ୍ର ଉପରେ ଅଙ୍କିତ ଏକ ସନ୍ଦେଶ ପଢୁଥିଲେ । ମହାମନ୍ତ୍ରୀଙ୍କ କପାଳ କେଶରହିତ । ପାଚିଲା ବାଳର ଝାଲେର ଗୋଟିଏ କାନପଟିରୁ ଆରମ୍ଭ ହୋଇ ମୁଣ୍ଡର ପରିକ୍ରମା କରି ଅନ୍ୟ କାନପଟିକୁ ପହଞ୍ଚି ଯାଇଥିଲା । ଭ୍ରୂଲତା ମଧ ପକ୍ୱ.... । ଓଷ୍ଠ-ଶ୍ୱେତ ନିଶ ଆଉ ଦାଢ଼ିର ମିଳନରେ ଲୁଚିଯାଇଥିଲା । ଶ୍ୱେତଦାଢ଼ି ନାଭିମଣ୍ଡଳ ପର୍ଯ୍ୟନ୍ତ ଲମ୍ବି ଯାଇଥିଲା । ଶରୀର ବାଦାମୀ ରଙ୍ଗର ପଶମ ଉତ୍ତରୀୟରେ

ଢଙ୍କା ଥିଲା । ଶରୀରର ଯେଉଁ ଅଂଶ ଦେଖା ଯାଉଥିଲା, ମଜାହୋଇଥିବା ତମ୍ବା ଭଳି ଓଜଃପୂର୍ଣ୍ଣ ଥିଲା ।

ଆଚାର୍ଯ୍ୟଙ୍କ ପତ୍ନୀଙ୍କର ଦେହାନ୍ତ ଅନେକ ବର୍ଷ ପୂର୍ବରୁ ହୋଇ ସାରିଥିଲା । ସେହିଦିନଠାରୁ ସେ ବାହାର ଅଗଣାର କକ୍ଷରେହିଁ ବାନପ୍ରସ୍ଥ ଜୀବନଯାପନ କରୁଥିଲେ । ସେ ବିଳାସରୁ ବିରତ ହୋଇ ରାଜକାର୍ଯ୍ୟ ଏବଂ ଅଧ୍ୟୟନରେ ବୁଡ଼ି ରହିଥିଲେ । ସ୍ୱର୍ଗୀୟ ମହାରାଜ ବୀର ପ୍ରକୃତିର କ୍ଷତ୍ରିୟ ଯୁବକ ଥିଲେ । ତାଙ୍କର ଅଧିକ ସମୟ ବିଳାସ ଏବଂ ଆଖେଟରେ ହିଁ ବିତୁଥିଲା । ତାଙ୍କ ପିତାଙ୍କ ଅମଳରୁ ହିଁ ରାଜ୍ୟର ନୀତି ଓ ନିବନ୍ଧର କାର୍ଯ୍ୟ ବଂଶକ୍ରମାଗତ ମହାମାତ୍ୟ ଆଚାର୍ଯ୍ୟ ସୁକଣ୍ଠଙ୍କର ହିଁ କାନ୍ଧରେ ନିର୍ଭର ଥିଲା । ମହାରାଜାଙ୍କ ପରାକ୍ରମ ଆଚାର୍ଯ୍ୟଙ୍କ ନୀତିର ନିର୍ବାହରେ ଶିଥିଳତା ନ ଆଣିବାରେ ହିଁ ଥାଏ । ମହାରାଜାଙ୍କର ସ୍ୱର୍ଗାରୋହଣ ପରେ ମହାରାଣୀ ବୈଧବ୍ୟକୁ ଗତଜନ୍ମର ତପଭଙ୍ଗର ଫଳ ବୋଲି ଧରିନେଇ ତଥାଗତଙ୍କର ବୈରାଗ୍ୟ ତପର ସାଧନା, ପ୍ରାସାଦମାନଙ୍କରେ ସଂଘର ସେବାରେ ଲୀନ ହୋଇ ଯାଇଥିଲେ । ରାଜ୍ୟର ନୀତି ଓ ବ୍ୟବସ୍ଥା ପୂର୍ଣ୍ଣତଃ ମହାମାତ୍ୟଙ୍କର ହାତରେ ହିଁ ହେବା ଫଳରେ ପ୍ରଜା ଓ ରାଜପୁରୁଷଗଣ ମହାରାଜାଙ୍କର ମୃତ୍ୟୁରେ କୌଣସି ପରିବର୍ତ୍ତନ ବା ଶିଥିଳତା ଅନୁଭବ କରିପାରି ନ ଥିଲେ ।

ଏକ ପ୍ରତିହାରୀ ମହାମାତ୍ୟଙ୍କର କକ୍ଷଦ୍ୱାରରେ ଆସି ଅଭୟଦାନ ମାଗିଲା ଏବଂ ମହାସେନାପତିଙ୍କର ଆଗମନର ସୂଚନା ଦେଲା । ଅଶୋକଙ୍କ ଆସନ୍ନ ଆକ୍ରମଣର ସ୍ଥିତିରେ ମହାସେନାପତି ଦ୍ୱିତୀୟ-ତୃତୀୟ ବି' ମନ୍ତ୍ରଣା ପାଇଁ ଅବଶ୍ୟ ଆସୁଥିଲେ କିନ୍ତୁ ତାଙ୍କର ଆସିବା ସମୟଟି ଦିନର ଚତୁର୍ଥ ପ୍ରହର ଥିଲା । ମହାସେନାପତିଙ୍କର ଅଧରାତିରେ ଆଗମନ ବିଶେଷ କାରଣ ବିନା ଅସମ୍ଭବ । ଆଶଙ୍କାର ସମ୍ଭାବନାରେ ମଧ୍ୟ ମହାମାତ୍ୟଙ୍କର ପ୍ରଶସ୍ତ କପାଳରେ କ୍ଷୋଭର କୌଣସି ଚିହ୍ନ ଦେଖାଦେଲା ନାହିଁ ।

ସେବକ ମହାସେନାପତିଙ୍କ ପାଇଁ ଏକ କୋମଳ ବସ୍ତ୍ରରେ ଢଙ୍କା ଆସନ ମହାମାତ୍ୟଙ୍କ ତକ୍ତା ପାଖକୁ ରଖିଦେଲା ।

ମହାସେନାପତି କକ୍ଷକୁ ଆସି ପ୍ରଣାମ କଲେ– "ଆଚାର୍ଯ୍ୟ ମହାମାତ୍ୟ, ଭଦ୍ରକୀର୍ତ୍ତିଙ୍କର ପ୍ରଣାମ ସ୍ୱୀକାର କରନ୍ତୁ । ଅସମୟରେ ଆସି କଷ୍ଟ ଦେଇଥିବାରୁ କ୍ଷମା କରିବେ ।"

ମହାମାତ୍ୟ ସେନାପତିଙ୍କର ଅଭ୍ୟର୍ଥନା କଲେ– "ଆର୍ଯ୍ୟଙ୍କର ଦର୍ଶନ ସବୁ ସମୟରେ ମଙ୍ଗଳକାରକ । ଆର୍ଯ୍ୟ ଆସନ ଗ୍ରହଣ କରନ୍ତୁ ।"

ମହାସେନାପତି ଚଉକିରେ ବସି ତୁରନ୍ତ ଗୋପ୍ୟ ମନ୍ତ୍ରଣା କରିବାପାଇଁ ମହାମାତ୍ୟଙ୍କ ଆଡ଼କୁ ନଇଁପଡ଼ିଲେ । ବ୍ୟବହାର-କୁଶଳ ସେବକ ପରିସ୍ଥିତି ଅନୁମାନ କରି ତୁରନ୍ତ କକ୍ଷରୁ ବାହାରକୁ ଚାଲିଗଲେ । ଭଦ୍ରକୀର୍ତ୍ତି ଟିକିଏ କାଶିଦେଇ ନିଜର କଣ୍ଠ ପରିଷ୍କାର କରି ଧୀରସ୍ୱରରେ କହିଲେ– "ଆର୍ଯ୍ୟ, ଏଥର ଚଣ୍ଡ ଅଶୋକଙ୍କର ଆକ୍ରମଣରୁ ରାଜ୍ୟର ରକ୍ଷା କିପରି ହେବ ? ଆଚାର୍ଯ୍ୟଙ୍କ କହିବା କଥା ଅଶୋକ ଏଥର ଚାରିଗୁଣ ସୈନ୍ୟବଳ; ଚାରିଲକ୍ଷ ପଦାତିକ, ପାଞ୍ଚହଜାର ହାତୀ ଏବଂ ରଥ ନେଇ ଆକ୍ରମଣ କରୁଛନ୍ତି । ଚାରିବର୍ଷରେ ଆମେ ଗତଥରର ଯୁଦ୍ଧର କ୍ଷତିପୂରଣ କରି ପାରି ନାହୁଁ । ଏଇ ଆକ୍ରମଣର ପ୍ରତିରୋଧ କରିବାପାଇଁ ଛିଡ଼ାହେବାର ସ୍ଥାନ ମଧ୍ୟ ଆମ ପାଖରେ ନାହିଁ, ତା'ହେଲେ ଆମେ କ'ଣ କରିବା ?"

ମହାମାତ୍ୟ ଆଶ୍ୱାସନା ଦେବା ସ୍ୱରରେ ଉତ୍ତର ଦେଲେ– "ଆର୍ଯ୍ୟ, ଅଶୋକଙ୍କ ପ୍ରଥମ ଆକ୍ରମଣର ସମୟରେ ମଧ୍ୟ ଆପଣଙ୍କ ପରାକ୍ରମ ଏବଂ ବୁଦ୍ଧି-ବଳରେ ହିଁ ଅଶୋକଙ୍କର ଅଭିମାନ ଭଙ୍ଗକରି କଳିଙ୍ଗର ରକ୍ଷା କରିଥିଲେ । ଏବେ ମଧ୍ୟ କଳିଙ୍ଗର ସାଧନା ଆଉ ସୈନ୍ୟବଳର ଲଗାମ ଆପଣଙ୍କର ହିଁ ହାତରେ ଅଛି । ଗତଯୁଦ୍ଧର କ୍ଷତି ପୂର୍ତ୍ତି ପାଇଁ ଆହୁରି ଅନେକ-ଶସ୍ତ୍ର ତଥା ସୈନ୍ୟଦଳର ସଂଗ୍ରହରେ ବିଳମ୍ବ ନ ହେବା ଅଭିପ୍ରାୟ ନେଇ ଚାଲୁକ୍ୟ ଏବଂ ଗୌଡ଼ ଦେଶମାନଙ୍କରୁ ମଧ୍ୟ ଅସ୍ତ୍ରଶସ୍ତ୍ର ଆଣିବାର ବ୍ୟବସ୍ଥା ହୋଇଛି । ଆଜି ହିଁ ସମାଚାର ମିଳିଛି ଯେ ଚାଲୁକ୍ୟ ଆଉ ଦକ୍ଷିଣାପଥରୁ ଦୁଇଶତ ଶକଟରେ ଉତ୍ତମ ଶସ୍ତ୍ର ନେଇ ଆସୁଛନ୍ତି । ଗୌଡ଼ଦେଶରୁ ସମୁଦ୍ର ମାର୍ଗ ଦ୍ୱାରା ମଧ୍ୟ ନାବିକ ଉତ୍ତମ ଶସ୍ତ୍ର ନେଇ ଆସିଛନ୍ତି । ସେହି ଦେଶମାନଙ୍କରୁ ପ୍ରାୟ କୋଡ଼ିଏ ସହସ୍ର ସୈନିକ ମିଳିପାରେ... ।"

ମହାସେନାପତି ନିଜ ଚିନ୍ତା ଆୟତ୍ତରେ ରଖିବାକୁ ଦୁଇ ହାତକୁ ପରସ୍ପର ମୁଠେଇ ଧରି କହିଲେ– "ଆଚାର୍ଯ୍ୟ, ଶସ୍ତ୍ର ଆଉ ସୈନିକ ହିଁ କ'ଣ କରିବେ ? ଅଶୋକଙ୍କର ଏ ସୈନ୍ୟଦଳକୁ ରାଜଧାନୀରୁ ପଚାଶ ଯୋଜନ ଆଗେ ବଢ଼ି ପରାଜିତ କରାଯାଇ ପାରିବନି ? ଏଥର ତ ପାଦେ ପାଦେ ଉପାୟ ଖୋଜି, ତାଙ୍କର ବଳ କ୍ଷୀଣ କରି, ଅନ୍ତିମ ନିର୍ଣ୍ଣୟ ଏଠାରେ ରାଜଧାନୀ ପ୍ରାଚୀର ନିକଟରେ ହିଁ ହେବ । ଏ ସମୟରେ ଆମର ମୁଖ୍ୟ ଶକ୍ତି ଉତ୍ତର-ଦ୍ୱାରର ଦୁର୍ଗ ହିଁ ହେବ.... କ'ଣ ସମାଚାର ମିଳି ନାହିଁ ?" ଭଦ୍ରକୀର୍ତ୍ତି ଆଚାର୍ଯ୍ୟଙ୍କୁ ଦେଖିଲେ ।

ଆଚାର୍ଯ୍ୟ ମହାସେନାପତିଙ୍କ ଅଭିପ୍ରାୟ ଜାଣିବା ଉଦ୍ଦେଶ୍ୟରେ ହିଁ ତାଙ୍କ ଆଡ଼କୁ ଅନେଇ ରହିଲେ ।

ଭଦ୍ରକୀର୍ତ୍ତି କହିଲେ– "ଆଶ୍ଚର୍ଯ୍ୟ କଥା, ଆପଣଙ୍କ ପାଖକୁ ସମାଚାର ପହଞ୍ଚି ନାହିଁ । ଆର୍ଯ୍ୟଙ୍କ ଅନୁମତିରେ ବେଣୁକ ଗ୍ରାମର ଭୂମିରେ ଶିବିର ନିର୍ମାଣର ନିଶ୍ଚୟ

କରାଯାଇଥିଲା । ପରମ ଭଗବତୀଙ୍କ ଆଦେଶ ଅଛି, ସେଠାରେ ଶିବିର ତିଆରି ହେବ ନାହିଁ ।''

ମହାମାତ୍ୟଙ୍କର ଝାଳ ଦେଇ ମଥାର ରେଖାସବୁ ସ୍ପଷ୍ଟ ହୋଇଗଲା ଏବଂ ତାଙ୍କ ହାତ ନିଜ କେଶରହିତ କପାଳ ଉପରକୁ ଚାଲିଗଲା । ''ଆର୍ଯ୍ୟ କ'ଣ କହୁଛନ୍ତି ?'' ଆଚାର୍ଯ୍ୟ ପଚାରିଲେ ''ପରମ ଭଗବତୀଙ୍କୁ ତଥାଗତଙ୍କର ଧର୍ମ ଆଉ ସଂଘର ସେବାରେ ପ୍ରୟୋଜନ । ତାଙ୍କୁ ଶିବିର ବିଷୟ ନେଇ କ'ଣ ପ୍ରୟୋଜନ ଆଉ ସେଥିରେ ଆପତ୍ତି କାହିଁକି କରିବେ ?''

ମହାସେନାପତି ନିଜ କ୍ଷୋଭ ପାଇଁ ଲଗାଇଥିବା ନିରୋଧକୁ ଭୁଲି କହିଲେ– ''ବେଣୁକ ଗ୍ରାମର ଉଚ୍ଚ ଭୂମିର ପ୍ରତିଦାନରେ, ଗ୍ରାମବାସୀ ଦକ୍ଷିଣରେ ଦୁଇଗୁଣ ଭୂମି ପାଇଲା ପରେ ମଧ୍ୟ ସନ୍ତୋଷ ହେଲେ ନାହିଁ । ପ୍ରଜାଙ୍କ ଭିତରେ ଏପରି ସ୍ପର୍ଦ୍ଧା ଆଗରୁ କେବେ ଦେଖା ଯାଇ ନ ଥିଲା । କାଲି ଦ୍ୱିପ୍ରହର ବେଳେ ଦଳେ ସୈନିକଙ୍କୁ ଗ୍ରାମର ସ୍ଥାନ ଖାଲି କରିବାକୁ ପଠା ଯାଇଥିଲା । ଶୁଣିଛି, ସକାଳେ ଗ୍ରାମର ପ୍ରଜାଗଣ ପ୍ରାସାଦର ଦ୍ୱାରଦେଶରେ ପରମ ଭଗବତୀଙ୍କ ସମ୍ମୁଖରେ ଗୁହାରି କରିବାକୁ ଯାଇଥିଲେ । ମହାରାଣୀ ଅନ୍ତଃପୁର କଞ୍ଚୁକୀକୁ ପଠାଇ ସୈନିକଙ୍କୁ ନିଷେଧ ଆଦେଶ ଦେଇଛନ୍ତି ଯେ ଉଚ୍ଚଭୂମିରୁ କୌଣସି କୁଟୀର ଉଠାଯିବ ନାହିଁ । ମହାରାଣୀ ରାଜ୍ୟପରିଷଦ ଆଉ ରାଜପୁରୁଷଙ୍କ ବୁଦ୍ଧି ଏବଂ କର୍ତ୍ତବ୍ୟ ଉପରେ ଭରସା ନ କରି ଜନଗଣଙ୍କର ବିଶ୍ୱାସ କରିବେ ତ ରାଜ୍ୟର ଅନୁଶାସନ କିପରି ଚଳିବ ?''

ମହାସେନାପତି କ୍ଷୋଭ ଶାନ୍ତି କରିବାକୁ କିଛି ସମୟ ପାଇଁ ମୌନ ରହି କହିଲେ– ''ଆଚାର୍ଯ୍ୟ ଆଉ କ'ଣ ହେଲା ଜାଣି ନାହାନ୍ତି ? ... ଭଗବତୀ ମହାରାଣୀ କଞ୍ଚୁକୀ ସାଙ୍ଗରେ ବାଳିକା ଯୁବରାଜ୍ଞୀଙ୍କୁ ପଠାଇ ସ୍ଥାନ ରିକ୍ତ କରିବା ପାଇଁ ଯାଇଥିବା ସାମନ୍ତ ବଂଶର ଯୂଥପ ସ୍କନ୍ଦଙ୍କର ବେକରେ କୁକୁର ବନ୍ଧା ଶିକୁଳି ଲଗାଇ ଧରି ଅଣେଇଥିଲେ .... ।'' ମହାସେନାପତି ଯୁବଆବେଶ ହେତୁ କିଛିକ୍ଷଣ ମଉନ ରହି ପୁଣି କହିଲେ, ''ସ୍କନ୍ଦ ଏ ଅପମାନ ଏବଂ ଲଜ୍ଜା ହେତୁ ଗଳାରେ ଦଉଡ଼ି ଦେଇ ପ୍ରାଣ ହରାଇବାକୁ ଚାହୁଁଥିଲେ । ତାଙ୍କୁ ଅନେକ ଅନୁନୟ ହୋଇ ବୁଝାଇଛନ୍ତି ଯେ ଅବୋଧ ବାଳିକାର କାର୍ଯ୍ୟକୁ ବାଳକ୍ରୀଡ଼ା ବୋଲି ହିଁ ବୁଝିବା କଥା । ଆଚାର୍ଯ୍ୟ, ରାଜ୍ୟର ରକ୍ଷା କିପରି ଭାବରେ ହେବ ? ମହାରାଣୀ ଭିକ୍ଷୁମାନଙ୍କୁ ଯେତେ ଆଦର କରିବେ କରନ୍ତୁ, ସୈନିକମାନଙ୍କୁ ଅପମାନ କରାଇବାର କ'ଣ ଆବଶ୍ୟକତା ଅଛି... କ'ଣ ଏହା କଳିଙ୍ଗର ଧର୍ମରାଜ୍ୟ ଅଟେ ଯେଉଁଠାରେ ବ୍ରାହ୍ମଣ ଓ ରାଜଶକ୍ତିର ଅପମାନ ହେବ !''

ଆଚାର୍ଯ୍ୟ କେଶହୀନ କପାଳରେ ହାତଦେଇ କହିଲେ – "ଆର୍ଯ୍ୟ ଭଦ୍ରକୀର୍ତ୍ତି, ମୁଁ ଏ ବିଷୟ ନେଇ କିଛି ଶୁଣି ନାହିଁ କିନ୍ତୁ ଆର୍ଯ୍ୟଙ୍କର ସମ୍ବାଦ ପ୍ରମାଣ ଅଟେ । କର୍ତ୍ତବ୍ୟ ପାଳନ ପାଇଁ ଆର୍ଯ୍ୟପୁତ୍ର ସ୍କନ୍ଦଙ୍କର ପଦ-ବୃଦ୍ଧି କରି ତାଙ୍କର ଉତ୍ସାହ ବଢ଼ାଇବା ଉଚିତ ହେବ । ଅସ୍ତୁ; ଆର୍ଯ୍ୟ ମହାରାଣୀଙ୍କର ସ୍ୱଭାବ ଏବଂ ପ୍ରକୃତି ତ ଏପରି ନୁହଁ । ବିସ୍ମୟ, ରାଜାଜ୍ଞାର ବିରୋଧର ସ୍ପର୍ଦ୍ଧା ବେଣୁକ ଗ୍ରାମକୁ କିପରି ବ୍ୟାପ୍ତ ହେଲା ! ଏହା ଚିନ୍ତାର କାରଣ ।"

ଭଦ୍ରକୀର୍ତ୍ତି କହିଲେ – "ଆଚାର୍ଯ୍ୟ, ପରିସ୍ଥିତି ବିସ୍ମୟକର ଏବଂ ଚିନ୍ତାଜନକ ଅଟେ । ସାମନ୍ତ ବିଷ୍ଣୁବର୍ମା ଯୂଥପ ସ୍କନ୍ଦଙ୍କୁ ନେଇ ମୋ ନିକଟକୁ ଆସିଥିଲେ । ମହାରାଣୀ ଯୂଥପ ଦ୍ୱାରା ମହାସେନାପତିଙ୍କୁ ବାର୍ତ୍ତା ପଠାଇଥିଲେ ଯେ ଯୁଦ୍ଧ ଏବଂ ହିଂସାର ଭରସା କର ନାହିଁ । କଳିଙ୍ଗରେ ଅଭିଧର୍ମର ପାଳନ ହେବ । ଶିବିରର ଆବଶ୍ୟକତା ନାହିଁ । ମହାରାଣୀଙ୍କ ବାଣୀରେ ଏହା କା'ର ଶବ୍ଦ ? ମହାସେନାପତି ଏବଂ ମହାମାତ୍ୟଙ୍କୁ ସେବାରେ ସ୍ମରଣ ନ କରି, ଭଗବତୀ ମହାରାଣୀ ଯୂଥପମାନଙ୍କ ଦ୍ୱାରା ସନ୍ଦେଶ ପଠାଇବେ ଏବଂ ଦାସୀଙ୍କ ଦ୍ୱାରା ଯୂଥପମାନଙ୍କୁ ନିୟନ୍ତ୍ରଣ କରିବେ ଯଦି ରାଜ୍ୟର ଅନୁଶାସନ କିପରି ଚଳିବ ଆଚାର୍ଯ୍ୟ ?"

ଆଚାର୍ଯ୍ୟ ତେବେ ମଧ୍ୟ ସେହିପରି ଚିନ୍ତାରେ ମୁଣ୍ଡ ନୁଆଁଇ ଶାନ୍ତସ୍ୱରରେ କହିଲେ – "ଆର୍ଯ୍ୟ, ଏ ଶବ୍ଦ ମହାରାଣୀଙ୍କର ହୋଇପାରେ ମାତ୍ର ଅନ୍ତରାଳରେ ଅନ୍ୟ ରହସ୍ୟ ମଧ୍ୟ ହୋଇପାରେ । ସଂଘ ଏବଂ ବିହାର କେବଳ ପରଲୋକର ଚିନ୍ତା ନ କରି ଇହଲୋକର ବ୍ୟବସ୍ଥା ମଧ୍ୟ କରିବାକୁ ଚାହୁଁଛନ୍ତି । ଶ୍ରମଣମାନଙ୍କ ନୂଆ କଳ୍ପନାମାନଙ୍କରୁ ବଣିକମାନଙ୍କ ଭିତରେ ମଧ୍ୟ ବ୍ରାହ୍ମଣ ଏବଂ କ୍ଷତ୍ରିୟର ଶାସନର ପ୍ରତିସ୍ପର୍ଦ୍ଧା ଜାଗିଛି । ମଗଧରେ ଶୂଦ୍ରଙ୍କ ଶାସନ ସେଥିମଧ୍ୟରୁ ନୂଆ ଆକାଂକ୍ଷା ଜଗାଉଛି । ମଗଧ ଚାଣକ୍ୟଙ୍କ କୂଟନୀତି ଏବଂ କୁଚକ୍ରରେ ବିଶ୍ୱାସ କରୁଛି । ଜାଣିବାକୁ ହେବ, ଏ ଘଟଣାର ସୂତ୍ର କେଉଁଠି ? ଅଜାତଶତ୍ରୁ ହିଁ ସମସ୍ତଙ୍କଠାରୁ ଭୟଙ୍କର ଅଟନ୍ତି ।"

ମହାସେନାପତି କ୍ଷୁବ୍ଧସ୍ୱରରେ କହିଲେ – "ଆଚାର୍ଯ୍ୟ, ଘଟଣାର କାରଣ ପାଇଁ ଚିନ୍ତା ଅବଶ୍ୟ ଉଚିତ କିନ୍ତୁ ଏ ଘଟଣାର ପରିଣାମ ସେନା ଏବଂ ଅନୁଶାସନ ପାଇଁ ଠିକ୍ ହେବ ନାହିଁ । ନଗରର ରକ୍ଷାପାଇଁ ଉଚ୍ଚଭୂମିରେ ଦୁର୍ଗ ତିଆରି ନିତାନ୍ତ ଉଚିତ, ଅନ୍ୟଥା ସେଇ ଉଚ୍ଚଭୂମି ନଗର ପାଇଁ ଘାତକ ହେବ । ପ୍ରାଚୀର ଭିତରର ପୁରୁଣା ଦୁର୍ଗ ଗତବର୍ଷ ମହାରାଜାଙ୍କ ଶ୍ରାଦ୍ଧ ସମୟରେ ମହାରାଣୀ ବିହାରକୁ ଅର୍ପଣ କରିଛନ୍ତି । ଆଚାର୍ଯ୍ୟ, ସେବକ ସେ ସମୟରେ ମଧ୍ୟ ଆପତ୍ତି କରିଥିଲେ, ନଗରରେ ଧର୍ମଦ୍ରୋହୀଙ୍କ ପାଦ ଦୃଢ଼ ହେବା କଳିଙ୍ଗ ପାଇଁ ଅଶୁଭ ହେବ ।"

ଆଚାର୍ଯ୍ୟ ସ୍ୱୀକୃତି ସହ ମୁଣ୍ଡ ନୁଆଁଇ କହିଲେ– "ସତ ଅଟେ, ଆର୍ଯ୍ୟ ଆପତ୍ତି କରିଥିଲେ ମାତ୍ର ଧର୍ମକୁ ଧର୍ମରେ କ'ଣ ବିରୋଧ । ଯଦି କୌଣସି ଧର୍ମ, ଧର୍ମ ଅଟେ ଅଥବା ସତ୍ୟ ଅଟେ ତା'ହେଲେ ସେଇ ଧର୍ମର ଅଭିବୃଦ୍ଧି ହିଁ ଘଟିବ । ଆମେ ମହାରାଣୀଙ୍କ ଇଚ୍ଛାର ବିରୋଧ କରିବା ଉଚିତ ନୁହଁ । ବୁଝୁଛି କାହିଁକି ନା ଦୁର୍ଗ ଜୀର୍ଣ୍ଣ ହୋଇସାରିଲାଣି ଆଉ ଚାରିପଟରୁ ବସତିରେ ଘେରା ଯାଇଥିବା ହେତୁ ଯୁଦ୍ଧ ଉପଯୋଗୀ ମଧ୍ୟ ନୁହଁ । ମହାରାଣୀଙ୍କ ଇଚ୍ଛାର ଅବହେଳା ମଧ୍ୟ ଉଚିତ ନ ଥିଲା । ଏବେ ମଧ୍ୟ ଶିବିର ବିଷୟ ନେଇ ମହାରାଣୀଙ୍କର ଆପତ୍ତି ଏକ କଠିନ ସମସ୍ୟା । ରାଜାଙ୍କର ଆଦେଶ ଅପୂର୍ଣ୍ଣ ରହିବାରୁ ରାଜଶକ୍ତି କ୍ଷୀଣ ହୁଏ ।"

ଭଦ୍ରକୀର୍ତ୍ତି ଅସନ୍ତୁଷ୍ଟ ହୋଇ କହିଲେ– "କିନ୍ତୁ ଭଗବତୀ ମହାରାଣୀ କେବଳ ଚୈତ୍ୟ ଏବଂ ବିହାରକୁ ହିଁ ଧର୍ମ ବୁଝୁଛନ୍ତି, ଦୁର୍ଗ ଓ ସେନାଙ୍କୁ ଧର୍ମ ବୁଝୁ ନାହାନ୍ତି । ଦଶସହସ୍ର ସୈନିକ ଖରାକାକରରେ ପଡ଼ିଛନ୍ତି, ତାଙ୍କ ପାଇଁ ସ୍ଥାନ ନାହିଁ । ଭିକ୍ଷୁମାନଙ୍କୁ ଆଖି ବୁଜି ଦେଇ ତଥାଗତଙ୍କର ହିଁ ଶରଣକୁ ଯିବାପାଇଁ ବିଶାଳ ଦୁର୍ଗର ଆବଶ୍ୟକତା ରହିଛି । ଶ୍ରମଣଙ୍କ ପାଇଁ ତଥାଗତଙ୍କର ହିଁ ଶରଣ ପର୍ଯ୍ୟାପ୍ତ ନୁହଁ, ତାଙ୍କୁ ବିଶାଳ ଭବନ ମଧ୍ୟ ଆବଶ୍ୟକ । ରାଜ୍ୟ ଏବଂ ଶାସନର ରକ୍ଷା ସୈନିକ ଏବଂ ଯୋଦ୍ଧା ନୁହଁ, ହାତରେ ଭିକ୍ଷାପାତ୍ର ନେଇ ମାଗିବା ଲୋକେ କରିବେ ।"

ଆଚାର୍ଯ୍ୟଙ୍କ ହାତ କପାଳରୁ ଉତୁରି ତାଙ୍କର ଶ୍ୱେତଦାଢ଼ିର କେଶ ପର୍ଯ୍ୟନ୍ତ ଆସିଗଲା । ଭୂମିଆଡ଼କୁ ଦେଖି ସେ କହିଲେ– "ଉତ୍ତର ଉଚ୍ଚଭୂମିରେ ଦୁର୍ଗ ନିର୍ମାଣ ପାଇଁ ମହାରାଣୀ ଅନୁମତି ଦେବା ଉଚିତ । ରାଜାଜ୍ଞାରେ ଶଙ୍କା କରି ମହାରାଣୀଙ୍କ ନିକଟ ପର୍ଯ୍ୟନ୍ତ ମଙ୍ଗଳ ଭିକ୍ଷା କରିବାକୁ ସ୍ପର୍ଦ୍ଧା ପ୍ରଜାଙ୍କ ଭିତରେ କେମିତି ଆସିଲା ? ଉଚ୍ଚ ଭୂମିବାସୀଙ୍କର ଏ ହଟ କାହିଁକି ? ସେମାନଙ୍କର ନିବାସ ପାଇଁ ଦୁଇଗୁଣା ଭୂମି ପ୍ରତିଦାନ ସ୍ୱରୂପ ଦିଆ ସରିଥିଲା । ଏ ଘଟଣାର ପରୋକ୍ଷରେ ଆମକୁ କୂଟନୀତିର ସନ୍ଦେହ ଅଛି । ମହାରାଣୀଙ୍କର ଧର୍ମ-ବିଶ୍ୱାସ, ରାଜ୍ୟ ଧର୍ମ ଅନୁଶାସନ ଏବଂ ରାଜ୍ୟର ରକ୍ଷାରେ ଯଦି ବାଧା ତେବେ ନିତ୍ୟ ସଂକଟ ଆସିବ । ଆର୍ଯ୍ୟ ବିଶ୍ୱାସ କରନ୍ତୁ, ଆଚାର୍ଯ୍ୟ ରାଜ-ଦର୍ଶନ ପାଇଁ ପ୍ରାସାଦରେ ଉପସ୍ଥିତ ହେବ ।"

× × × × ×

କଳିଙ୍ଗର ରାଜପ୍ରାସାଦ ବାହାରେ ଅଗଣା ଏବଂ ଅନ୍ତଃପୁରର ମଧ୍ୟରେ ପରିଷଦ ଭବନ ଓ ମନ୍ତ୍ରଣାକକ୍ଷ ଥିଲା । ପରିଷଦଭବନ ଏବଂ ମନ୍ତ୍ରଣାକକ୍ଷର ଦୁଇଆଡ଼କୁ ପ୍ରଶସ୍ତ ଅଳିନ୍ଦ ଥିଲା । ମନ୍ତ୍ରଣାକକ୍ଷରେ ରାଜାଙ୍କ ଆସନ ସମୀପରେ ଆଚାର୍ଯ୍ୟ

ସୁକଣ୍ଠ ମହାମାତ୍ୟଙ୍କ ଆସନ ଉପରେ ମୁଣ୍ଡ ନୁଆଁଇ, କେଶହୀନ କପାଳ ଉପରେ ହାତରଖି ପ୍ରତୀକ୍ଷାରେ ବସିଥିଲେ । ରାଜ୍ୟାସନ ଏବେ ଖାଲି ଥିଲା । କକ୍ଷରେ ଅନ୍ୟ କେହି ବି ନ ଥିଲେ । ଅନ୍ତଃପୁର ଦିଗର ଅଳିନ୍ଦରୁ କ୍ଷୀଣସ୍ୱରରେ ଚେତାବନୀ ଶୁଣାଗଲା ! "ପରମ ଭଗବତୀ ମହାମହିମାମୟୀ କଳିଙ୍ଗର ରାଜେଶ୍ୱରୀ ଆସୁଛନ୍ତି ।"

ଆଚାର୍ଯ୍ୟ ସୁକଣ୍ଠ ନିଜ ଆସନରୁ ଛିଡ଼ାହେଲେ ।

ଶରୀର ଉପରେ ଶ୍ୱେତ ଆଭରଣ ଏବଂ ଅଣ୍ଟାରେ ଶ୍ୱେତ ରେଶମର ଶାଢ଼ି ପରିହିତା ମହାରାଣୀ କକ୍ଷରେ ପ୍ରବେଶ କଲେ । ମହାମାତ୍ୟ ମୁଣ୍ଡ ନୁଆଁଇ ତାଙ୍କର ଅଭିବାଦନ କଲେ— "ପରମ ଭଗବତୀ ଧର୍ମରକ୍ଷକ କଳିଙ୍ଗ ମହାରାଣୀଙ୍କର ଜୟ ହେଉ ।"

ମହାରାଣୀ ସଂକୋଚରେ ଆସି ସିଂହାସନର ଅର୍ଦ୍ଧେକ ଭାଗରେ ବସିଗଲେ । କେବଳ ଚାମରଧାରୀ ଦାସୀ ସିଂହାସନ ପଛକୁ ଛିଡ଼ା ଥିଲା । ମହାରାଣୀ ଆଚାର୍ଯ୍ୟଙ୍କୁ ସମ୍ବୋଧନ କଲେ— "ମହାମତି, କଳିଙ୍ଗ ରାଜ୍ୟର ଶୁଭଚିନ୍ତକ, ଆଚାର୍ଯ୍ୟ ମହାମାତ୍ୟ ପ୍ରଣାମ ସ୍ୱୀକାର କରନ୍ତୁ ।" ମହାମାତ୍ୟ ସବିନୟ ଯୁବରାଜ୍ଞୀଙ୍କ ଉଦ୍ଦେଶ୍ୟରେ ଆଶିଷ କାମନା କଲେ ।

ମହାରାଣୀ କିଛି ସମୟ ଚିନ୍ତାକରି କହିଲେ— "ମହାମତି ଆଚାର୍ଯ୍ୟ, କାଲି ପ୍ରଜାବର୍ଗ ନ୍ୟାୟ ପାଇଁକି ପ୍ରାର୍ଥନା କରିଛନ୍ତି । ମୋତେ ବିସ୍ମୟ ଓ ଦୁଃଖ ହେଲା, ଧର୍ମ ଆଉ ନ୍ୟାୟର ରକ୍ଷାରେ ମହାମତି ଆଚାର୍ଯ୍ୟଙ୍କ ପ୍ରବନ୍ଧରେ ଅନ୍ୟାୟ ହେଉଛି । କାତର ପ୍ରଜାଗଣ ଗୁହାରି କରିଛନ୍ତି ଯେ ମହାସେନାପତିଙ୍କ ଆଜ୍ଞାରେ ବେଣୁକ ଗ୍ରାମରେ ଦୁର୍ଗ ନିର୍ମାଣ ନିମନ୍ତେ ପ୍ରଜାଙ୍କର ବସାଘର ଉଜାଡ଼ି ଭୂମି ଅଧିକାର କରି ନେଉଛନ୍ତି । ଏପରି ଅନ୍ୟାୟ ନ ହେବାପାଇଁ ମୁଁ ଆଦେଶ ଦେଇଛି । ଆମକୁ ଦୁର୍ଗର ଆବଶ୍ୟକତା ନାହିଁ ।"

ମହାମାତ୍ୟ ବିନୀତ ଭାବରେ ନତମସ୍ତକ ହୋଇ, ବିଚାରପୂର୍ଣ୍ଣ ଗମ୍ଭୀର ସ୍ୱରରେ ଉତ୍ତର ଦେଲେ— "ପରମ ଭଗବତୀଙ୍କର ଧର୍ମ ଏବଂ ପରଲୋକରେ ନିଷ୍ଠା ପାଇଁ ଏ ବିଚାର ଉଚିତ ଅଟେ କିନ୍ତୁ ଭଗବତୀ ! ଏହାଦ୍ୱାରା ଧର୍ମର ଦ୍ୱନ୍ଦ୍ୱ ହେବ । ଅନ୍ନଦାତା, ବର୍ତ୍ତମାନ ପରିସ୍ଥିତି ଭିନ୍ନ ଅଟେ । ସେବକ ଏବଂ ମହାସେନାପତି ଭଟ୍ଟନବୀଙ୍କର ଆଜ୍ଞାର ଅନ୍ତର୍ଗତ ହିଁ ଉତ୍ତର ଭୂମି ଉପରେ ଦୁର୍ଗର ନିର୍ମାଣର ରାଜାଜ୍ଞା ଦେଇଛନ୍ତି । ତାହା ମହାରାଣୀଙ୍କର ହିଁ ଆଜ୍ଞା । ଅନ୍ନଦାତା ମହାରାଣୀ ଜାଣନ୍ତି ଯେ, କଳିଙ୍ଗ ରାଜ୍ୟକୁ ରକ୍ଷକହୀନ ଜାଣି ଚଣ୍ଡ ଅଶୋକ ପୁନଃ ଆକ୍ରମଣ କରୁଛନ୍ତି । ଏଥର ସେ ଗତଥରର ଆକ୍ରମଣର ଅପେକ୍ଷା ଅନେକ ଅଧିକ ସୈନ୍ୟବଳ ନେଇ ଆସୁଛନ୍ତି । ଅଶୋକ, ମହାରାଜାଧିରାଜଙ୍କ ସମୟରେ କଳିଙ୍ଗରାଜ୍ୟରୁ ପାଇଥିବା

ପରାଜୟର ପ୍ରତିଶୋଧ ନେବାକୁ ଚାହୁଁଛନ୍ତି । ଏଇ ଆକ୍ରମଣରୁ ରାଜଧାନୀର ରକ୍ଷା କରିବା ପାଇଁ ଏ ଦୁର୍ଗ ଆବଶ୍ୟକ । ଶତ୍ରୁର ଆକ୍ରମଣର ପ୍ରତିରୋଧ ହୋଇ ନ ପାରିଲେ କେବଳ ଉତ୍ତର ଭୂମିର ପ୍ରଜାଙ୍କର ରକ୍ଷା ହୋଇପାରିବ ନାହିଁ ନୁହେଁ ସଂପୂର୍ଣ୍ଣ ରାଜଧାନୀର ପ୍ରଜାଙ୍କୁ ମଧ୍ୟ ଆତତାୟୀର ପାଦତଳେ ଦଳି ଦିଆଯିବ । ମହାରାଣୀଙ୍କ ଆଜ୍ଞାରୁ ଉତ୍ତର ଭୂମିର ପ୍ରଜାଙ୍କୁ ଦକ୍ଷିଣରେ ଦୁଇଗୁଣା ଭୂମି ଦିଆଯାଇସାରିଛି । ଅନ୍ନଦାତା, ଆତ୍ମରକ୍ଷା ପାଇଁ ଯୁଦ୍ଧ ସମୟରେ ଉଚିତ ଦୁର୍ଗ ହିଁ ରାଜାର ଶକ୍ତି ହୋଇଥାଏ ।''

ମହାରାଣୀଙ୍କୁ ଯୁଦ୍ଧ ପ୍ରସଙ୍ଗ ନେଇ ବିରକ୍ତି ଅନୁଭବ ହେଉଥିଲା । ଏ ବିଷୟ ନେଇ ଅଧିକ ଚର୍ଚ୍ଚା ନ କରିବାର ଭାବ ନେଇ ସେ ଉତ୍ତର ଦେଲେ– ''ମହାମତି ଆଚାର୍ଯ୍ୟ, ଆପଣ ଦୁର୍ଗ ବା ଶିବିର ନିର୍ମାଣ କରିବାକୁ ଚାହୁଛନ୍ତି ଯଦି ସେଭଳି ଭୂମିର ଅଭାବ ନାହିଁ । ଆପଣ ଯଥେଷ୍ଟ ଦୁର୍ଗ ଏବଂ ଶିବିର ନିର୍ମାଣ କରନ୍ତୁ କିନ୍ତୁ ବସାଘର ଉଜାଡ଼ିବା ଅଥବା କୌଣସି ଘରଦ୍ୱାର ବଳାତ୍ ଅଧିକାର କରିବାକୁ ଅନୁମତି ମୁଁ ଦେଇପାରିବି ନାହିଁ ।''

ଆଚାର୍ଯ୍ୟ ମୁଣ୍ଡନୁଆଁଇ ନିବେଦନ କଲେ– ''ପରମ ଭଗବତୀଙ୍କର ଆଦେଶ ପାଳନ ହିଁ ସେବକର କର୍ତ୍ତବ୍ୟ ଅଟେ, ମାତ୍ର ଅନ୍ନଦାତା, ଦୁର୍ଗ ଏବଂ ଶିବିର ଯହିଁ ତହିଁ ତିଆରି ହେଲେ ସେ ପ୍ରୟୋଜନ ପୂରା ହୁଏ ନାହିଁ । ଦୁର୍ଗ ତଥା ଶିବିର ତ ସ୍ଥାନବିଶେଷରେ ହିଁ ପ୍ରତିଷ୍ଠିତ ହୁଏ । ଉତ୍ତରରୁ ଆକ୍ରମଣର ନିରୋଧ ପାଇଁ ଉତ୍ତର ଉଚ୍ଚଭୂମିରେ ହିଁ ଦୁର୍ଗ ନିର୍ମାଣ ଆବଶ୍ୟକ । ଅନ୍ନଦାତା, ଏହା ବ୍ୟତୀତ ନଗରରେ କୋଡ଼ିଏ ସହସ୍ର ସୈନିକ ରଖିବା ଆବଶ୍ୟକ । ଧର୍ମରେ ନିଷ୍ଠା ଏବଂ ପ୍ରଜାଙ୍କ କଲ୍ୟାଣ ଚାହୁଁଥିବା ମହାରାଣୀଙ୍କୁ ନିବେଦନ ଯେ ଯୁଦ୍ଧକାଳରେ ପୁରୁଣା ଦୁର୍ଗ ମଧ୍ୟ ସୈନିକଙ୍କ କାର୍ଯ୍ୟ ପାଇଁ ଦେବାକୁ ସ୍ୱୀକାର କରନ୍ତୁ । ଶ୍ରମଣ ଏବଂ ଭିକ୍ଷୁ କିଛି ସମୟ ପାଇଁ ରାଜ୍ୟର ଅନ୍ୟ ନଗରମାନଙ୍କରେ ଅଥବା ବଣରେ ମଧ୍ୟ ନିବାସ କରିପାରିବେ । ଯୁଦ୍ଧରେ ବିଜୟ ପରେ ଧର୍ମରେ ଭକ୍ତି ରଖିଥିବା ମହାରାଣୀଙ୍କର ଇଚ୍ଛା ଅନୁସାରେ ସଂଘମାନଙ୍କର ଏବଂ ଶ୍ରମଣମାନଙ୍କ ପାଇଁ ଉଚିତ ସ୍ଥାନ ଓ ବିହାର ମଧ୍ୟ ନିର୍ମାଣ କରାଯାଇପାରିବ ।''

ମହାରାଣୀଙ୍କ ଦୃଷ୍ଟି ଭୂମି ଉପରେ ଥିଲା । ନଇଁ ଆସିଥିବା ମଥା ନକାରାତ୍ମକ ଢଙ୍ଗରେ ଆନ୍ଦୋଳିତ କରି କହିଲେ– ''ନା, ନା ! ମହାମତି ଆଚାର୍ଯ୍ୟ, ଏପରି ହେବ ନାହିଁ । ତଥାଗତ ସଂଘ ଏବଂ ଭିକ୍ଷୁମାନଙ୍କୁ ତାଙ୍କ ସ୍ଥାନରୁ ଅଲଗା କରା ଯାଇପାରିବ ନାହିଁ । ଶ୍ରମଣମାନଙ୍କର ଓ ଅର୍ହତମାନଙ୍କର ଧ୍ୟାନ-ଚିନ୍ତନ ଏବଂ ସାଧନାରେ ବିଘ୍ନ ସୃଷ୍ଟି କରାଯାଏ ନାହିଁ ।''

ମହାରାଣୀଙ୍କର ନକାରାତ୍ମକ ଆଗ୍ରହ ଶୁଣି ଆଚାର୍ଯ୍ୟ ସୁକଣ୍ଠ କିଛିକ୍ଷଣ ମୌନ ରହିଗଲେ । କଳିଙ୍ଗରାଜ୍ୟର ଏତେବର୍ଷର ବ୍ୟବସ୍ଥାରେ ସ୍ୱର୍ଗୀୟ ମହାରାଜା ଏବଂ ତାଙ୍କ ପିତା ମହାରାଜା ମୟୂଖ ମଧ୍ୟ ଆଚାର୍ଯ୍ୟଙ୍କ ଠାରୁ କୌଣସି ପରାମର୍ଶର ଅବହେଳା କରି ନ ଥିଲେ । ଆଚାର୍ଯ୍ୟ ନିଜେ ନିଜକୁ ସମ୍ଭାଳି ଆହୁରି ବିନୀତ ସ୍ୱରରେ କହିଲେ– "ଧର୍ମନିଷ୍ଠ, ପରମ ଭଗବତୀ ଜାଣନ୍ତି ଯେ ଧର୍ମର ଚିନ୍ତନ ଏବଂ ମନନ ବୃକ୍ଷମାନଙ୍କ ତଳେ ଓ ଗୁମ୍ଫାମାନଙ୍କରେ ହିଁ ହୋଇଥାଏ । ଭଗବାନ୍ ତଥାଗତ ବୁଦ୍ଧତ୍ୱର ପ୍ରାପ୍ତି ପିପ୍ପଳ ବୃକ୍ଷ ତଳେ ହିଁ କରିଥିଲେ, ମାତ୍ର ସୈନିକମାନଙ୍କ ଶକ୍ତି ଦୁର୍ଗ ବିନା କ୍ଷୀଣ ହୋଇଯାଏ । ଚଣ୍ଡ ଅଶୋକ ଏଥର ଅସାଧାରଣ ବଳ ଓ ବେଗରେ ଆସୁଛନ୍ତି । ସେ ନିଜର ସାମ୍ରାଜ୍ୟର ସମସ୍ତ ପ୍ରାନ୍ତମାନଙ୍କରୁ ସୈନ୍ୟବଳ ନେଇ ଆସୁଛନ୍ତି । ଅଶୋକଙ୍କ ଦ୍ୱାରା ପଦଦଳିତ ପ୍ରାନ୍ତମାନଙ୍କରୁ ଲକ୍ଷ ଲକ୍ଷ ଶରଣାର୍ଥୀମାନେ କଳିଙ୍ଗରେ ଶରଣ ନେଇଛନ୍ତି । ପରମଭଗବତୀ, ଏଇଥର ରାଜଧାନୀର ରକ୍ଷା ପାଇଁ ଉତ୍ତର ମାର୍ଗରେ ଦୁର୍ଗ ଅନିବାର୍ଯ୍ୟ ଅଟେ ।"

ମନ୍ତ୍ରଣା-କକ୍ଷ ପ୍ରାସାଦର ଅନ୍ୟ ମହଲାରେ ଥିଲା । କକ୍ଷର ଅଳିନ୍ଦରେ ଖୋଲାଯାଉଥିବା ଦ୍ୱାରରୁ ନଗର ଏବଂ ରାଜପଥର ମଧ୍ୟ କିଛି ଭାଗ ଦେଖା ଯାଉଥିଲା । ଆଚାର୍ଯ୍ୟ ସେହିଆଡ଼କୁ ସଂକେତ କରି ନିବେଦନ କଲେ– "ଚଣ୍ଡ ଅଶୋକ ଦ୍ୱାରା ପ୍ରତାଡ଼ିତ ସୀମାନ୍ତର ପ୍ରଜାମାନଙ୍କରେ ନଗରର ପଣ୍ୟ ଏବଂ ପଥ ଭରିଯାଇଛି । ଅଶୋକଙ୍କର ଉଚିତ ନିରୋଧ କରି ନ ପାରିଲେ କଳିଙ୍ଗର ପ୍ରଜାଙ୍କ ଅବସ୍ଥା କ'ଣ ହେବ ? ଅନ୍ନଦାତା ନିଜ ପ୍ରଜାଙ୍କ ରକ୍ଷାପାଇଁ ଦୁର୍ଗର ଅବହେଳା କରିପାରିବେ ନାହିଁ ।"

ମହାରାଣୀଙ୍କ ନଇଁ ଯାଇଥିବା ଦୃଷ୍ଟି ମହାମାତ୍ୟଙ୍କ ଆଡ଼କୁ ଉଠିଲା । ସେ ଦୃଢ଼ ନିଶ୍ଚୟ ଭାବରେ ଉତ୍ତର ଦେଲେ– "ଆଚାର୍ଯ୍ୟ, ଅଶୋକ ଯାହା କାଲି କରିବେ ଆପଣ ଆଜି ତାହା ହେଉ ଭାବୁଛନ୍ତି । ପ୍ରଜାଙ୍କର ଘର ଅଧିକାର କରି ପ୍ରଜାଙ୍କର ରକ୍ଷା ହେବ ନାହିଁ । ଅଶୋକ ଯେଉଁ ପାପ କରିବେ, ତାର ଫଳ ସେ ପାଇବେ । ଅଶୋକଙ୍କର ପାପର ବିରୋଧ କରିବା ପାଇଁ ଆମେ ପାପ କରିବା ନାହିଁ । ମହାମତି ଆଚାର୍ଯ୍ୟ, ଭଗବାନ୍‌ଙ୍କ କୃପା ଉପରେ ବିଶ୍ୱାସ କରନ୍ତି ନାହିଁ, ମହାସ୍ଥବିର ସିଦ୍ଧ ଜୀବକଙ୍କର ଚମତ୍କାର ସିଦ୍ଧି ଉପରେ ଭରସା କରୁ ନାହାନ୍ତି ଯଦି ତା'ହେଲେ ଯାହା ଚାହୁଁଛନ୍ତି କରନ୍ତୁ, ମାତ୍ର ପ୍ରଜାମାନଙ୍କ ଭିତରୁ କାହାର ଘରଦ୍ୱାର ଅଧିକାର କରାଯିବ ନାହିଁ । ଏହି ବିହାରମାନଙ୍କୁ ଏବଂ ପ୍ରାସାଦମାନଙ୍କୁ ହିଂସକ ସୈନିକମାନଙ୍କର ଶିବିର ପାଇଁ ଦିଆଯିବ ନାହିଁ ।"

ମହାମାତ୍ୟ, ମହାରାଣୀଙ୍କ ହଟରେ ଏଥର କିଛିସମୟ ଅଧିକ ମୌନ ରହି ପୁଣି କହିଲେ– "ପରମଭଗବତୀ ଧର୍ମନିଷ୍ଠ ମହାରାଣୀ, ଭଗବାନ୍‌ଙ୍କ କୃପା ଏବଂ ରକ୍ଷାର ବିଶ୍ୱାସର ଉପେକ୍ଷା କିଏ କରିପାରିବ ? ତାଙ୍କରି କୃପାରେ ଦିବଂଗତ ମହାରାଜ ଆତତାୟୀର ମାନ-ମର୍ଦ୍ଦନ କରିଥିଲେ । ତାଙ୍କରି ଲୀଳାରେ ଚଣ୍ଡ ଅଶୋକ ପୁନଃ କଳିଙ୍ଗ ଉପରେ ଆକ୍ରମଣ କରୁଛି । ଭଗବାନ୍ ନିଜ ଲୀଳାରେ ଯାହାକୁ ଯାହା ଯୋଗ୍ୟ ବୁଝି ଯେଉଁ ଭୂମିକା ନିର୍ବାହ କରିବାକୁ ଦିଅନ୍ତୁ, ତାକୁ ପୂରା କରିବା ମନୁଷ୍ୟର କର୍ତ୍ତବ୍ୟ ଅଟେ । ମନୁଷ୍ୟ ନିଜ ପାଇଁ ନିୟତ ଭୂମିକାକୁ ଯେପରି ପୂର୍ଣ୍ଣ କରୁଛି, ତାହାହିଁ ତାର କର୍ମଫଳର ଆଧାର ହୋଇଥାଏ । ଆମ୍ଭପୂରୁଷଗଣ ଏହି ମାର୍ଗକୁ ଯୋଗର ମାର୍ଗ ଏବଂ ତପ କହିଛନ୍ତି । ଏଇଥିରୁ ମନୁଷ୍ୟ ଇହଲୋକ ଏବଂ ପରଲୋକ ପ୍ରାପ୍ତ କରନ୍ତି ।"

ମହାରାଣୀଙ୍କ ନେତ୍ରରେ ଅସନ୍ତୋଷର ଛାଇ ଦେଖାଦେଲା । ମହାମାତ୍ୟଙ୍କ ଆଡ଼କୁ ଦେଖି ସେ ଉଦ୍‌ବିଗ୍ନ ସ୍ୱରରେ କହିଲେ– "ଇହଲୋକ ଏବଂ ପରଲୋକ ଉଭୟ ଲୋକର ଲୋଭ, ଆସକ୍ତି ଅଟେ । ଏହା କର୍ମଯୋଗ ନୁହେଁ, ବନ୍ଧନ ଅଟେ । ମୁକ୍ତି ଇହଲୋକ ଏବଂ ପରଲୋକର ଆସକ୍ତି ଓ ଲିପ୍ସାରେ ନାହିଁ । ମୁକ୍ତି ଅନାସକ୍ତି ଦ୍ୱାରା ନିର୍ମାଣ ହୋଇଥାଏ ।"

ମହାମାତ୍ୟ ମତଭେଦର ପ୍ରସଙ୍ଗ ଆଣିବା ପାଇଁ ଚିନ୍ତା କରି କହିଲେ– "ପ୍ରଜାବତ୍ସଳ ପରମ ଭଗବତୀ, ଦେବତାମାନଙ୍କଠାରୁ ପ୍ରଶଂସା ପାଇବା ଯୋଗ୍ୟ ମହାରାଜା ଏଇ ରାଜ୍ୟର ମର୍ଯ୍ୟାଦା ରକ୍ଷା ପାଇଁ ଶରୀରରେ କ୍ଷତର ପୀଡ଼ା ସହି ମଧ୍ୟ ଅଶୋକଙ୍କର ମାନ-ମର୍ଦ୍ଦନ କରିଥିଲେ । କଳିଙ୍ଗର ମର୍ଯ୍ୟାଦା ରକ୍ଷାରେ ସେ ସଂସାରକୁ ମଧ୍ୟ ତୁଚ୍ଛ ମଣିଥିଲେ । ସ୍ୱର୍ଗସ୍ଥିତ ମହାରାଜ ଆମର ଉପେକ୍ଷାକୁ ଦେଖି କ'ଣ କହିବେ !"

ମହାମାତ୍ୟଙ୍କର ଅନୁମାନ ଥିଲା ଯେ ମହାରାଣୀଙ୍କୁ ଦବେଇ ହେବ ମାତ୍ର ମହାରାଣୀ ନନ୍ଦାଙ୍କର ମୁଖରେ ଦୃଢ଼ଭାବ ଆସିଗଲା । ତାଙ୍କ କାନ୍ଧ ସିଧା ହୋଇଗଲା । ସେ କହିଲେ– "ଆଚାର୍ଯ୍ୟ, ମହାରାଜା ଅଶୋକଙ୍କର ବଳକୁ ଖଣ୍ଡିତ କରି; ତାଙ୍କୁ ଯୁଦ୍ଧରେ ପରାଜିତ କରି ମଧ୍ୟ ଏ ରାଜ୍ୟକୁ ନିର୍ଭୟ କରିପାରିଲେ ନାହିଁ । ଆପଣ ଭୟ କାରଣରୁ ହିଁ ଦୁର୍ଗ ତିଆରି ପାଇଁ ଚାହୁଁଛନ୍ତି । ଆଚାର୍ଯ୍ୟ, ଆପଣ ଭୟ ଓ ଶତ୍ରୁତା ବଢ଼ାଉଛନ୍ତି । ଆଚାର୍ଯ୍ୟଙ୍କର ମନର ପରିଗ୍ରହ ଅଶୋକଙ୍କ ମନର ପରିଗ୍ରହର ଭାବନା ହେତୁ ଭୟଭୀତ । ମନକୁ ଭୟରୁ ମୁକ୍ତ କରନ୍ତୁ । ଦେବଲୋକରେ ସ୍ଥିତ ମହାରାଜା ପରିଗ୍ରହରୁ ମୁକ୍ତ ହୋଇ ଦେଖୁଛନ୍ତି ଯେ ଅଶୋକଙ୍କର ମନର ପରିଗ୍ରହ ଭୟର କାରଣ ଅଟେ । ସେ ସଂପୂର୍ଣ୍ଣ ପୃଥିବୀଟିକୁ ଜିଣି ମଧ୍ୟ ନିର୍ଭୟ

ହୋଇପାରିବେ ନାହିଁ; ସେଇ ପରାଜିତ ହିଁ ରହିଥିବେ । ପରିଗ୍ରହ ଛାଡ଼ି ନିର୍ଭୟ ହୋଇଯିବା ଲୋକ ହିଁ ବିଜୟୀ ହେବ । ମାରିବାବାଲା ଆଉ ମାଡ଼କୁ ଭୟ କରୁଥିବା ଉଭୟେ ଭ୍ରମରେ ଅଛନ୍ତି, ଦୁଃଖୀ ସେମାନେ, ଆମେ ଧର୍ମଧର ସିଦ୍ଧ ମହାସ୍ଥବିରଙ୍କୁ ପ୍ରାର୍ଥନା କରିବା ଯେ ଆପତ୍ତି ନିବାରଣ ପାଇଁ ଏକସହସ୍ର ଭିକ୍ଷୁମାନଙ୍କ ଦ୍ୱାରା ପରିତ୍ରାଣ ଦିବାସେନାଙ୍କର ପାଠ କରାଇବେ ।''

ମହାରାଣୀ ନିଜ କଥା ବନ୍ଦକରି ନେତ୍ର ମୁଦିଦେଲେ ଏବଂ ତାଙ୍କର ଓଠ ବଚନ ପାଠରେ ଧୀରେ ଧୀରେ ହଲିବାକୁ ଲାଗିଲା ।

ମହାମାତ୍ୟ ବାଧହୋଇ ମହାରାଣୀଙ୍କ ଆଡ଼କୁ ଦେଖି ରହିଗଲେ କିନ୍ତୁ ମୌନ ରହିଯିବା ତାଙ୍କ ପାଇଁ ସହ୍ୟ ହେଲା ନାହିଁ । ସେ କହିଲେ, ''ପରମ ଭଗବତୀ, ଆତତାୟୀର ସମ୍ମୁଖରେ ମଥା ନୁଆଁଇ ନିଜ ସ୍ୱତ୍ୱ ଛାଡ଼ିଦେବା ମନୁଷ୍ୟର ଧର୍ମ ନୁହେଁ; ଏହା କଦର୍ଯ୍ୟ ଅଟେ । ସ୍ୱର୍ଗୀୟ ମହାରାଜ, ସେବକ ଆଉ ରାଜ୍ୟପରିଷଦଙ୍କ ଉପରେ କଳିଙ୍ଗର ରାଜ୍ୟ ଏବଂ ରାଜବଂଶ ରକ୍ଷାର ଉତ୍ତରଦାୟିତ୍ୱ ଦେଇ ଯାଇଛନ୍ତି । ସେବକମାନେ ଏବଂ ରାଜ-ପରିଷଦଗଣ ମହାରାଜାଙ୍କର ଅନ୍ତିମ ସମୟରେ ତାଙ୍କ ସମ୍ମୁଖରେ କଳିଙ୍ଗରାଜ୍ୟ ଏବଂ କଳିଙ୍ଗ ରାଜବଂଶର ରକ୍ଷାପାଇଁ ପ୍ରତିଜ୍ଞା କରିଥିଲେ । ସେବକ ଏବଂ ରାଜ୍ୟ-ପରିଷଦ ସେଇ ପ୍ରତିଜ୍ଞାକୁ ପୂରା କରିବେ । ଏହା ସେବକଙ୍କର ଧର୍ମ । ସେବକମାନଙ୍କର ମଧ୍ୟ କୌଣସି ପରିଗ୍ରହ ନାହିଁ । ତାଙ୍କ ପାଇଁ ଏକ ମସିଣା ଏବଂ ଗୋଟିଏ ଢାଲ ଯଥେଷ୍ଟ । ଶରୀରର ମୋହ ମଧ୍ୟ ଏବେ ନାହିଁ ବରଂ କଳିଙ୍ଗର ମର୍ଯ୍ୟାଦାର ରକ୍ଷା ସେବକମାନଙ୍କର ଧର୍ମ । ସେବକର ପ୍ରାର୍ଥନା ଯେ, ଯେପରି ପୁଣ୍ୟ ସ୍ମୃତି ମହାରାଜ ଏବଂ ମହାରାଜାଙ୍କ ପିତା ସେବକମାନଙ୍କୁ ବିଶ୍ୱାସ କରୁଥିଲେ, ସେହିପରି ଭଗବତୀ ମଧ୍ୟ କରନ୍ତୁ । ସେବକର ସେବା କର୍ତ୍ତବ୍ୟରେ ବାଧା ଦିଅନ୍ତୁ ନାହିଁ.... ।''

ମହାରାଣୀ ମହାମାତ୍ୟଙ୍କୁ ଶୁଣାଇଲେ– ''ଆଚାର୍ଯ୍ୟ, ହିଂସାର ପ୍ରତିଦ୍ୱନ୍ଦ୍ୱିତାରେ ହିଂସା କରିବା ଧର୍ମ ନୁହେଁ । ନିଜ ସାମର୍ଥ୍ୟର ଅହଂକାରରେ ଭଗବାନ୍‌ଙ୍କର ଚମତ୍କାର ଶକ୍ତିର ଉପେକ୍ଷା କରିବା ଜ୍ଞାନ ନୁହେଁ । ଆପଣ ନିଜ କର୍ତ୍ତବ୍ୟ କରି ଯାଆନ୍ତୁ କିନ୍ତୁ ମୁଁ ପ୍ରଜାଙ୍କୁ ଗୃହହୀନ ହେବାକୁ ଦେବି ନାହିଁ । ଧର୍ମ ସ୍ଥାନରୁ ହିଂସାର ଶିବିର ତିଆରି ପାଇଁ ଦେବି ନାହିଁ । ଏପରି କଲେ ରାଜ୍ୟ ପାପର ଭାଗୀ ହେବ ।''

ମହାରାଣୀଙ୍କ ନେତ୍ର ଉତ୍ତେଜନାରେ ଓଦା ହୋଇଗଲା । ସେ ଆଖିବୁଜି, ହାତଯୋଡ଼ି ପୁଣି ପାଠ କରିବାକୁ ଲାଗିଲେ–

'ସଚେ ଭାୟସୀ ଦୁକ୍‌ଖସ୍‌ସ ସଚ ତେ ଦୁକ୍‌ଖଂ ମପ୍ପିୟ ।

ଉପେହି ସରଣଂ ବୁଦ୍ଧଂ .... ।'

ମହାମାତ୍ୟ ମହାରାଣୀଙ୍କ ଆଡ଼କୁ ଦେଖି ଅବାକ୍ ଏବଂ ବିବଶ ରହିଗଲେ । ତାଙ୍କ କାନରେ ଅଳିନ୍ଦରୁ ଡାକ ଶୁଭିଲା । – "ଅମ୍ମା, ଅମ୍ମା !"

ତା ସାଙ୍ଗକୁ ଚାପାଗଳାରେ ଅନ୍ୟ ଶବ୍ଦ ମଧ୍ୟ ଶୁଣାଗଲା – "ଅମ୍ଭେ ମହାରାଣୀ, ବର୍ତ୍ତମାନ ସେ ଆଡ଼କୁ ନୁହଁ ! ଭଗବତୀ ମା ରୁଷ୍ଟ ହେବେ ।"

କକ୍ଷଦ୍ୱାରରୁ ଲାଗିଥିବା ପରଦାକୁ ଆଡ଼େଇ ବାଳିକା ଯୁବରାଜ୍ଞୀ ଅମିତା ଦଉଡ଼ି ଦଉଡ଼ି ମନ୍ତ୍ରଣାକକ୍ଷକୁ ଆସିଗଲେ । ବାଳିକା ହାତରେ କାଠର ଏକ ରଙ୍ଗିନ୍ କଣ୍ଢେଇ ଥିଲା । ଅମିତା ମା'କୁ ଡାକିବା ପାଇଁ ମୁହଁ ଖୋଲିଲେ, କିନ୍ତୁ ମା'ଙ୍କ ନିମୀଳିତ ଆଖିରେ ଲାଗିଥିବା ଲୁହ ଦେଖି ସ୍ତମ୍ଭିତ ରହିଗଲେ ।

ମହାମାତ୍ୟ ବିବଶ ପରିସ୍ଥିତିରେ କ୍ଷୁଣ୍ଣତା ଅନୁଭବ କରି ହାତଯୋଡ଼ି ଧୀର-ସ୍ୱରରେ ନିବେଦନ କଲେ – "ପରମ ଭଗବତୀ ସ୍ୱାମିନୀ .... ।"

ମହାରାଣୀ ଆଚାର୍ଯ୍ୟଙ୍କ କଥା ନ ଶୁଣି, ଆଖି ବୁଜି ପାଠ କରିବାରେ ଲାଗିଲେ ।

ଅମିତା ପରିସ୍ଥିତି ବୁଝିବା ପାଇଁ କେତେବେଳେ ମା'ଙ୍କ ଆଡ଼କୁ ତ କେତେବେଳେ ମହାମାତ୍ୟଙ୍କ ଆଡ଼କୁ ଦେଖୁଥିଲେ । ସେ ହଠାତ୍ କହିଲେ – "ଆଚାର୍ଯ୍ୟକାକା, ଆପଣ ମା'ଙ୍କୁ କଷ୍ଟ ଦେଇଛନ୍ତି !" ବାଳିକାର ଆଖିରେ ଲୁହ ଆସିଗଲା ।

ଆଚାର୍ଯ୍ୟ ନିର୍ବାକ ରହିଗଲେ । କିଛି ଉପାୟ ନ ଥିଲା । ସେ ମୁଣ୍ଡ ନୁଆଁଇ ମହାରାଣୀଙ୍କ ସମ୍ମୁଖରେ ଭୂମିସ୍ପର୍ଶ ପ୍ରଣାମ କଲେ ଏବଂ ରାଜସଭାର ସଭାର ରୀତି ଅନୁସାରେ ମହାରାଣୀଙ୍କ ଦିଗକୁ ମୁହଁ କରି ନଇଁଯାଇ ମନ୍ତ୍ରଣାକକ୍ଷରୁ ବାହାରକୁ ଚାଲିଗଲେ ।

## ଶ୍ରେଷ୍ଠୀ ସୌମିତ୍ର

ରାଜସଖା ନଗରଶ୍ରେଷ୍ଠୀ ସୌମିତ୍ରର ପ୍ରାସାଦରେ ନା ଯୁଦ୍ଧର ଆତଙ୍କର ବିଶେଷ ପ୍ରଭାବ ଥିଲା ନା ଆଉ ମହାବଳି ଯଜ୍ଞର ସମାଚାର ସବୁରେ ଉତ୍ସାହ ଥିଲା । ସେଠାରେ ପ୍ରାୟତଃ ସନ୍ଧ୍ୟାକାଳରେ ନାଚ-ଗୀତର ଆସର ଜମୁଥିଲା । ଏଇ ସମାରୋହର ପ୍ରୟୋଜନ ଶେଠ ସୌମିତ୍ରଙ୍କ ବିଳାସ-ବିନୋଦରେ ରୁଚି ନୁହଁ ବରଂ କୁଳର କ୍ରମାଗତ ମର୍ଯ୍ୟାଦାର ରକ୍ଷା ଥିଲା । ସଭାରେ ଆମନ୍ତ୍ରିତ ବ୍ୟକ୍ତିଙ୍କର ଏବଂ ଅତିଥିମାନଙ୍କର ବିନୋଦ ହେଉଥିଲା । ସୌମିତ୍ରଙ୍କର ରୁଚି ବିଳାସ ଏବଂ

ବିନୋଦରେ ନ ଥିଲା କିନ୍ତୁ ତାଙ୍କର ସଂସାର ପ୍ରତି ବୈରାଗ୍ୟ ମଧ୍ୟ ନ ଥିଲା । ସେ ଶ୍ରମଣମାନଙ୍କର ଏ ଉପଦେଶ ସ୍ୱୀକାର କରୁଥିଲେ ଯେ ଆସକ୍ତି ଏବଂ ବିଳାସରେ କେବେ ସନ୍ତୋଷ ଆସେ ନାହିଁ, ପରନ୍ତୁ ସୌମିତ୍ରଙ୍କ ବିଚାରରେ ପରଲୋକର ଆସକ୍ତିରେ ଇହଲୋକକୁ ଭୁଲାଇଦେବା ମଧ୍ୟ ଭ୍ରମ ଥିଲା ।

ସୌମିତ୍ର ସଞ୍ଚୟ ଏବଂ ସଂଗ୍ରହ ଦ୍ୱାରା ନିଜ ଶକ୍ତିର ବୃଦ୍ଧିରୁ ସନ୍ତୋଷ ପାଉଥିଲେ । ତାଙ୍କ ଧନର ସମ୍ବନ୍ଧରେ ଅନେକ କୀର୍ତ୍ତି ପ୍ରସିଦ୍ଧ ଥିଲା । ଅନେକ ବର୍ଷ ପୂର୍ବେ ସ୍ୱର୍ଗୀୟ ମହାରାଜାଙ୍କର ପିତାଙ୍କର ରାଜ୍ୟକାଳରେ ଦୁର୍ଭିକ୍ଷ ପଡ଼ିଥିଲା । ସେତେବେଳେ ସୌମିତ୍ରଙ୍କ ପିତା ଏକ ମହାଯଜ୍ଞ କରିଥିଲେ । ପ୍ରତିଦିନ ଏକସହସ୍ର ପ୍ରଜାଙ୍କୁ ଭୋଜନ ଦେଉଥିଲେ । ମହାରାଜା ପ୍ରସନ୍ନ ହୋଇ ସୌମିତ୍ରଙ୍କ କୁଳକୁ 'ରାଜସଖା'ର ସମ୍ମାନ ଏବଂ ମହାସାମନ୍ତ ବଂଶର ଅଧିକାର ଦେଇଥିଲେ । ରାଜପୁରୁଷ ରାଜପ୍ରାସାଦରୁ ବିଶେଷ ଆଜ୍ଞାବିନା ଦଣ୍ଡପାଇଁ ତାଙ୍କ କୋଠାକୁ ପ୍ରବେଶ କରିପାରୁ ନ ଥିଲେ । ଶେଠଙ୍କର କୋଠାର ଦ୍ୱାରଦେଶରେ ତାଙ୍କ ନିଜର ସଶସ୍ତ୍ର ସୈନିକମାନେ ପହରା ଦେଉଥିଲେ ଏବଂ ତାଙ୍କ ଦ୍ୱାରଦେଶରେ ପ୍ରାତଃ-ସନ୍ଧ୍ୟା ମହୁରି ବାଜୁଥିଲା । ନଗର ଶେଠଙ୍କର ଇଚ୍ଛା ହେଲା ମାତ୍ରେ ରାଜପ୍ରାସାଦରେ ପ୍ରବେଶ କରି ରାଜଦର୍ଶନର ଅଧିକାର ଥିଲା । ତାଙ୍କ ବଂଶ 'ଜଗତ ଶେଠ' ଭାବରେ ପରିଚିତ ଥିଲେ ଏବଂ ସେମାନେ ନଗରର ଶେଠମାନଙ୍କର ଜ୍ୟେଷ୍ଠ ଭାବରେ ପରିଗଣିତ ହେଉଥିଲେ ।

ଫାଲ୍‌ଗୁନ ମାସର ସେହି ସନ୍ଧ୍ୟାରେ ସୌମିତ୍ରଙ୍କ କୋଠାର ସଭାରେ କଳିଙ୍ଗର ପ୍ରମୁଖ ନର୍ତ୍ତକୀ ତାରାର ନୃତ୍ୟ ଥିଲା । ସୌମିତ୍ରଙ୍କ ଏଇ ଆଶଙ୍କା ଥିଲା ଯେ ମହାମାତ୍ୟ ଆଚାର୍ଯ୍ୟ ସୁକଣ୍ଠ ଏବଂ ମହାସେନାପତି ଭଦ୍ରକୀର୍ତ୍ତି ଆସୁଥିବା ଯୁଦ୍ଧରେ ତାଙ୍କର ସହାୟତାରେ ସନ୍ତୁଷ୍ଟ ନୁହନ୍ତି । କିଛି ରାଜପୁରୁଷ ଭିକ୍ଷା ପାଇଁ ପ୍ରାସାଦକୁ ଆସୁଥିବା ଶ୍ରମଣମାନଙ୍କ ଉପରେ ମଧ୍ୟ ଦୃଷ୍ଟି ରଖୁଥିଲେ, ଏଥିପାଇଁ ସୌମିତ୍ର ନିଜର ସଭାରେ ମହାସେନାପତିଙ୍କର ଯୁବକ ରସିକପୁତ୍ର ସୂର୍ଯ୍ୟକୀର୍ତ୍ତି ମହାମାତ୍ୟଙ୍କ ଯୁବକପୁତ୍ର ଆଚାର୍ଯ୍ୟ ମୟଙ୍କଙ୍କୁ ବିଶେଷ ଅନୁନୟରେ ଆମନ୍ତ୍ରିତ କରିବାକୁ ଭୁଲୁ ନ ଥିଲେ । ସେଇ ସନ୍ଧ୍ୟା ସଭାରେ ସୌମିତ୍ରଙ୍କ ମିତ୍ର ଶେଠ ବାସଲ ଏବଂ ପଦ୍ମଜ ମଧ୍ୟ ଆସିଥାଆନ୍ତି । ପ୍ରାସାଦରେ ଆମନ୍ତ୍ରିତ ବ୍ୟକ୍ତିଙ୍କ ପାଇଁ ବିଳାସର କୌଣସି ସାଧନର ନ୍ୟୂନତା ରହୁ ନ ଥିଲା । ଆମନ୍ତ୍ରିତ ବ୍ୟକ୍ତିବିଶେଷଙ୍କ ସଂଗତି ପାଇଁ ତାରା ସାଙ୍ଗରେ ଅନେକ ଅନ୍ୟ ନର୍ତ୍ତକୀ ଏବଂ ଗଣିକାମାନେ ମଧ୍ୟ ରହିଥିଲେ ।

ଆମନ୍ତ୍ରିତ ଅତିଥିମାନେ ଯଥେଷ୍ଟ ମଦ୍ୟପାନ ଏବଂ ଯୁଗ୍ମ-ନୃତ୍ୟମାନଙ୍କରେ ତୃପ୍ତ ହୋଇ ଗଣିକାମାନଙ୍କୁ ଏବଂ ନର୍ତ୍ତକୀମାନଙ୍କୁ ନିଜ ପାଲିଙ୍କିମାନଙ୍କରେ ଏବଂ ରଥମାନଙ୍କରେ ନେଇ ଚାଲିଯାଇଥିଲେ । କେବଳ ଶେଠ ବାସଲ, ପଦ୍ମଜ ଏବଂ ସୌମିତ୍ର ବଡ଼ବଡ଼

ତକିଆମାନଙ୍କରେ ଭରା ଦେଇ ବସି ରହିଥିଲେ । ଏବେ କେବଳ ଏକ ବୃଦ୍ଧ ବନ୍ଦୀ ନିଜ ଶିଷ୍ୟ ସାଙ୍ଗରେ ମୃଦଙ୍ଗ ଉପରେ ବିଳମ୍ବିତ ଦ୍ରୁତ୍‌ର ଆରୋହ ଅବରୋହ ଦେଖାଉଥିଲେ । ତିନି ଶେଠଙ୍କ ସମ୍ମୁଖରେ ମଦ୍ୟପାତ୍ର ଥିଲା, ମାତ୍ର ସେମାନେ ପାନ କରି ନ ଥିଲେ । ସଭାରେ ମଧ୍ୟ ସଙ୍ଗୀତ ଓ ନୃତ୍ୟର ସମୟ ସେମାନେ ପ୍ରତୀକ୍ଷାରେ ହିଁ ବିତାଇଥିଲେ । ଶେଠ ତିନିହେଁ ଗୁଣ ଓ ସ୍ୱଭାବରେ ପୂର୍ଣ୍ଣଭାବରେ ବୈଶ୍ୟ ଥିଲେ । ସେମାନଙ୍କୁ ପଦାର୍ଥର ବିଳାସ ନିମନ୍ତେ ଉପଯୋଗ କରିବାରେ ନୁହଁ ବରଂ ପଦାର୍ଥ ଉପରେ ସ୍ୱାମିତ୍ୱ ପାଇ ମନ ମଧ୍ୟରେ ଲକ୍ଷ୍ମୀଙ୍କର ବିଳାସରୁ ସନ୍ତୋଷ ମିଳୁଥିଲା ।

ବାସଲ ଏକାକୀ ଅନୁଭବ କରି ତକିଆର ଆଶ୍ରୟ ଛାଡ଼ି ତତ୍ପର ହୋଇ ବସିଗଲେ ଏବଂ ଖଣ୍ଡିକାଶ ମାରି ସୌମିତ୍ରଙ୍କୁ କଥା କହିବାକୁ ସଂକେତ ଦେଲେ । ସୌମିତ୍ର ପଛରେ ତକିଆ ଛାଡ଼ି ସାମନାକୁ ଝୁଙ୍କି ଆସିଲେ ଏବଂ ଧୀର ସ୍ୱରରେ କହିଲେ– ''ଉତ୍ତରର ଉଚ୍ଚଭୂମିର ଘଟଣା ପରଠାରୁ ମହାମାତ୍ୟଙ୍କୁ ଶାନ୍ତି ନାହିଁ । ସେ ଚିନ୍ତିତ ଯେ ତାଙ୍କ ଆଜ୍ଞାର କେମିତି ଉଲଂଘନ ହେଲା ? ଏଥିପାଇଁ ସେ ସବୁ ଜାଗାରେ ଅନୁସନ୍ଧାନ ଚଳେଇଥିଲେ । ବର୍ତ୍ତମାନ ସମୟରେ ଯେତେ ଶଙ୍କିତ ଏବଂ ସତର୍କ ରହିଲେ ମଧ୍ୟ ଭାବିନିଅ କମ୍ ହେବ ।'

ପଦ୍ମଜ ନିଜ ବିଚାର ପ୍ରକଟ କଲେ– ''ଗତ ଥର ଯୁଦ୍ଧରେ ସମସ୍ତ ଲୋକ କେତେ ଧନ ହରାଇଲେ, ମାତ୍ର ହେଲା କ'ଣ ? ଯୁଦ୍ଧ ତ ପୁଣି ମୁଣ୍ଡ ଉପରକୁ ଆସିଗଲା ।''

ବାସଲ ରହସ୍ୟଭରା ସ୍ୱରରେ ତାଙ୍କର ସମର୍ଥନ କଲା– ''ଏହା କ'ଣ ନିଶ୍ଚୟ ଯେ ଅଶୋକ ଏଥର ମଧ୍ୟ ପରାସ୍ତ ହୋଇ ପୁଣି ଆକ୍ରମଣ କରିବେ ନାହିଁ ? ମଗଧରାଜାଙ୍କ ନା ଜନ-ବଳର କମି ଅଛି ନା ଧନ-ବଳର । ଯେଉଁ ବୈଶ୍ୟର ସାମର୍ଥ୍ୟ ଅଛି, ସେ ବ୍ୟବସାୟର ଏବଂ ଯେଉଁ ରାଜାଙ୍କର ସାମର୍ଥ୍ୟ ଅଛି, ସେ ରାଜ୍ୟବିସ୍ତାର ହିଁ କରିବ । ନିର୍ବଳକୁ ସବଳର ସ୍ୱତ୍ୱ ସ୍ୱୀକାର କରିବାକୁ ହିଁ ହେବ । ମଦ୍ରରୁ ରାମେଶ୍ୱରମ ଯାଉଥିବା ଏକ ତୀର୍ଥଯାତ୍ରୀ ଠାରୁ ଶୁଣିଛି ଯେ ଉତ୍ତରରେ ସର୍ବତ୍ର ଏକ ରାଜସଭା ହୋଇଯାଇଥିବାରୁ ବହୁତ ଶାନ୍ତି ଅଛି ଏବଂ ବ୍ୟାପାର ବ୍ୟବସାୟ ବଢ଼ି ଚାଲିଛି .... ।''

ସୌମିତ୍ର ବାସଲର କଥାକୁ ପୂରା ହବାକୁ ନ ଦେଇ ପଚାରିଲା– ''ଗୋଟିଏ ନୂଆ ସଂକଟ ମୁଣ୍ଡ ଉପରକୁ ଆସିଯାଇଛି, ତା'ର କ'ଣ ଉପାୟ ହେବ ?''

ପଦ୍ମଜ ଏବଂ ବାସଲ ଆଶଙ୍କାରେ ସୌମିତ୍ର ଆଡ଼କୁ ଚାହିଁଲେ । ସୌମିତ୍ର ଧିମା ସ୍ୱରରେ କହିଲା– ''ଗତ ପୂର୍ଣ୍ଣିମାରେ ଯେତେବେଳେ ଆଚାର୍ଯ୍ୟ ହିଁ ରାଜାଜ୍ଞା

ଦେଇଥିଲେ ଯେ ରାଜକୋଷ ଯୁଦ୍ଧକାଳରେ ବଣିକଙ୍କର ଲାଭର ତିନିଚତୁର୍ଥାଂଶ ରାଜ-କର ପାଇଁ ନେବେ, ଆମେ ତେଣୁ ନିଜ ଦୂତ ଚୋଳଦେଶକୁ ପଠାଇ ଦେଇଥିଲୁ ଯେ ଆମର ସାମଗ୍ରୀ କଳିଙ୍ଗ ନ ଆସି ପୂର୍ବ ଦିଗକୁ ସ୍ୱର୍ଣ୍ଣଗିରି ଦେଇ ଅବନ୍ତିକା ଚାଲିଯାଉ ....''

ବାସଲ ସମର୍ଥନ କଲେ – ''ହଁ, ଏହା ଆପଣ ସେତେବେଳେ କହିଥିଲେ ।''

ସୌମିତ୍ର ଶୁଣିବା ଲାଗି ସଂକେତରେ ହାତ ଉଠାଇ କହିଲେ – ''ମୁଁ ଦୂତକୁ ଅବନ୍ତିକାର ନଗରଶେଠ ସୁଗତଙ୍କ ନାମରେ ପତ୍ର ମଧ୍ୟ ଦେଇଥିଲି ଯେ ଆମର ସାମଗ୍ରୀ ଦ୍ୱାରା ଅଣାଯାଇଥିବା ଚୋଳଦେଶର ବସ୍ତ୍ର ଅବନ୍ତିକାରେ ବିକ୍ରିକରି, ନିଜ ଦ୍ରବ୍ୟର ଉଚିତ ଅଂଶ ନେଇ ଆମ ସାମଗ୍ରୀକୁ ପୁଣି ଅବନ୍ତିକାରୁ ଚୋଳ ପଠାଇଦେବେ । ଆମ ଦୂତ ରାସ୍ତାରେ ରୋଗଗ୍ରସ୍ତ ହୋଇ ଆହୁରି ପନ୍ଦରଦିନ ରହିଗଲା । ସେତେବେଳପର୍ଯ୍ୟନ୍ତ ଆମ ସାମଗ୍ରୀ କଳିଙ୍ଗର ସୀମାରେ ପହଞ୍ଚିଗଲା ।''

''ହାୟ, ଏ କ'ଣ ? ପଦ୍ମଜଙ୍କ ମୁହଁରୁ ବାହାରିପଡ଼ିଲା, ''ଆପଣ ଏ କ'ଣ କଲେ ଜ୍ୟେଷ୍ଠ ? ଆପଣ କିପରି ଦୂତ ପଠେଇଲେ ? ମୁଁ ତ ମରିଗଲି । ମୁଁ ତିରିଶସହସ୍ର ମୁଦ୍ରା ଏଇ ସାମଗ୍ରୀରୁ ଋଣ ନେଇ ଲଗେଇଥିଲି !''

ସୌମିତ୍ର କହିଲେ, ''ପ୍ରଥମ କଥା ଶୁଣନ୍ତୁ'', ''ପୁଣି ଏକାସାଙ୍ଗରେ ହିଁ ହାଏ-ହାଏ କରିବେ । ସୀମାନ୍ତର କର ଆଦାୟକାରୀ ଆମ ଦ୍ରବ୍ୟର ଲେଖା ନେଇ ସାମଗ୍ରୀ ସହିତ ଦଶଜଣ ଅଶ୍ୱାରୋହୀ ରାଜପୁରୁଷଙ୍କ ନିଯୁକ୍ତି ସତର୍କ ଜଗୁଆଳି ପାଇଁ କର ଦେଇଛନ୍ତି, ଯେମିତି ଆମେ ଚୋର । କର ଆଦାୟକାରୀ ରାଜସ୍ଥାନକୁ ସୂଚନା ପଠାଇଛନ୍ତି ଯେ ସାମଗ୍ରୀ ସହିତ ଚାରିଲକ୍ଷ ମୂଲ୍ୟର ସ୍ୱର୍ଣ୍ଣ ଏବଂ ଦ୍ରବ୍ୟ ଅଛି ।''

ପଦ୍ମଜ ଆଁ ଫାଡ଼ି ରହିଗଲେ । ସୌମିତ୍ରଙ୍କ ଆଡ଼କୁ ଅପଲକ ଦେଖୁଥିବା ଆଖିରୁ ଲୁହ ବୋହିଆସିଲା ।

ବାସଲ ଦୀର୍ଘନିଶ୍ୱାସ ନେଇ କହିଲେ – ''ସବୁ ଗଲା । କେଉଁ କୁବେଳାରେ ସାମଗ୍ରୀ ପଠା ହୋଇଥିଲା । ଧୂର୍ତ୍ତ ଜ୍ୟୋତିଷ ତ୍ରୟଂବକ କହିଥିଲା – ଏହା ଅପୂର୍ବ ଲାଭର ଲଗ୍ନ ଅଟେ । ନକ୍ଷତ୍ର ମଧ୍ୟ ବିଶ୍ୱାସରେ ବିଷ ଦବ ଯଦି ତ୍ରାହି ମିଳିବ କୁଆଡୁ । ଏ ମହାମାତ୍ୟ ତ ପୂର୍ଣ୍ଣମାତ୍ରାରେ ସର୍ବସ୍ୱ ସ୍ୱାହା କରିଦେବେ । ମହାରାଜା ଥିଲେ ଯେ ନିଜ ରାଜ୍ୟର ରକ୍ଷା ପାଇଁ ଯୁଦ୍ଧ କରୁଥିଲେ । ଏ ଆଚାର୍ଯ୍ୟ ଆମକୁ ଧ୍ୱଂସ କରିବାକୁ; ବ୍ରାହ୍ମଣଙ୍କ ଅଧିକାର ପାଇଁ ଯୁଦ୍ଧ କରୁଛନ୍ତି । ରାଜ୍ୟ ତ ରାଜାଙ୍କର, ବ୍ରାହ୍ମଣଙ୍କର ନୁହଁ ।''

ସୌମିତ୍ର ବାସଲଙ୍କୁ ତୁନି ରହିବା ପାଇଁ ହାତ ଉଠାଇ ସଂକେତ ଦେଲେ । ଏବେ ପ୍ରଶ୍ନ ହେଲା, ଆଚାର୍ଯ୍ୟ ସୁକଣ୍ଠଙ୍କ ମୁଖରୁ ସାମଗ୍ରୀ ସବୁର, ଧନର ରକ୍ଷା କିପରି ହେବ ? ଏଥିରୁ ପାଖାପାଖି ଅର୍ଦ୍ଧେକ ଆପଣ ଦୁହିଁଙ୍କର । ଏଥିପାଇଁ ଆପଣମାନଙ୍କର ମଧ୍ୟ ଅନୁମତି ଆବଶ୍ୟକ । ଆମେ ସମସ୍ତେ ବଣିକ । ଜାଣୁଛେ ଏକ ନାବରେ ଥାଇ ଏକା ସାଙ୍ଗରେ ଭାସିବା, ଏକା ସାଙ୍ଗରେ ବୁଡ଼ିବା ଯଦି ବୁଡ଼ିବା ।

''ଜ୍ୟେଷ୍ଠ, ଆପଣ ହିଁ କିଛି କରିବେ !'' ପଦ୍ମଜ କରୁଣ ସ୍ୱରରେ କହିଲା; ''ଆପଣ ହିଁ ତ୍ରାଣ କରିପାରନ୍ତି । ରାଜଦ୍ୱାରରେ ଆପଣଙ୍କର ହିଁ ପ୍ରବେଶ ଅଛି । ଆପଣ ସମର୍ଥ । ସାମର୍ଥ୍ୟରେ ହିଁ ବୁଦ୍ଧି କୁଳାଏ । ଏଇ ସଂକଟରେ ଆମ୍ଭମାନଙ୍କର ବୁଦ୍ଧି କୋଉଥିରେ ଲାଗିବ ?''

ବାସଲ ମଧ୍ୟ ସମର୍ଥନ କଲେ– ''ଆମ୍ଭମାନଙ୍କର ଅନୁମତିର ପ୍ରଶ୍ନ ଉଠୁଛି ? ହାତୀର ପାଦରେ ସମସ୍ତିଙ୍କର ପାଦ ପଶିଯାଏ । ଆମେ କିଏ; ଆପଣଙ୍କ ପ୍ରଶ୍ରୟରେ କିଛି ବ୍ୟବସାୟ କରିନେଉଛୁ ।''

''ମୋର ପ୍ରଶ୍ରୟ କ'ଣ ଭାଇ ? ଆପଣଙ୍କ ଭଳି ମୁଁ ଜଣେ ବଣିକ ।'' ସୌମିତ୍ର ବିନୟ ଭାବ ଦେଖାଇଲେ, ''ମୋତେ ମଧ୍ୟ ବାଣିଜ୍ୟ କରିବାକୁ ଅବସର ଆବଶ୍ୟକ । ମୋତେ ମଧ୍ୟ ଆତତାୟୀଙ୍କର ଭୟ ଅଛି । ସାମଗ୍ରୀ ସହିତ ଏକାକୀ ବଣିଜ କେହି ହେଲେ କରିପାରିବେନି । ଏପରି କାମ ସହଯୋଗୀଙ୍କ ସହିତ ହିଁ ଚାଲିଥାଏ । ଆପଣ ଜାଣନ୍ତି, ମହାରାଣୀ ତଥାଗତଙ୍କ ଧର୍ମରେ ଶ୍ରଦ୍ଧା ଏବଂ ବୈରାଗ୍ୟ-ବୃତ୍ତିର କାରଣରୁ ରାଜକାର୍ଯ୍ୟର ଚିନ୍ତାରୁ ଓହରି ଆସିଛନ୍ତି । କିନ୍ତୁ ସେ ଯୁଦ୍ଧ ଏବଂ ହିଂସାରେ ମଧ୍ୟ ବିରକ୍ତ । ତାଙ୍କ କୃପାରୁ ହୁଏତ ଏ ଦ୍ରବ୍ୟର ରକ୍ଷା ସମ୍ଭବ ହେବ, ଯେପରି ଉତ୍ତରର ଉଚ୍ଚଭୂମି ।''

''ରାଜପ୍ରାସାଦରେ ପ୍ରବେଶର ସାମର୍ଥ୍ୟ ତ ଆପଣଙ୍କର ହିଁ ଅଛି...'' ପଦ୍ମଜ କହିଲେ କିନ୍ତୁ ବାସଲ ବାଧାଦେଲେ, ''ମହାରାଣୀ ତ ରାଜ୍ୟରୁ ମଧ୍ୟ ନିବୃତ୍ତି ନେଇଛନ୍ତି । ମହାମାତ୍ୟ ଆଚାର୍ଯ୍ୟ ହିଁ ରାଜ୍ୟ କରୁଛନ୍ତି ।''

ସୌମିତ୍ର ଉତ୍ତର ଦେଲେ– ''ମହାରାଣୀ ଧର୍ମରୁ ତ ବିରାମ ନେଇ ନାହାନ୍ତି । ଆପଣ ଉଭୟେ ଅନୁମତି ଦେବେ ଯଦି ତା'ହେଲେ ମହାରାଣୀଙ୍କ ସମ୍ମୁଖରେ ଆବେଦନ କରାଯାଇପାରିବ ଯେ ଆମେ ତିନିହେଁ ବଣିକ, ତଥାଗତଙ୍କ ଧର୍ମର ଅନୁଗତ ଅଟୁ । ଆମେ କଳିଙ୍ଗରେ ଅଭିଧର୍ମର ବୃଦ୍ଧି ପାଇଁ ମହାବିହାର ସ୍ଥାପନାର ପ୍ରୟୋଜନ ଅର୍ଥେ, ସହଯୋଗିତାରେ ଦଶ ଲକ୍ଷ ଧରଣ ଅର୍ଜନ କରି ମହାବିହାରକୁ ଅର୍ପଣ କରିବାକୁ ସଂକଳ୍ପବଦ୍ଧ । ଏଇ ଧର୍ମକାର୍ଯ୍ୟ ନିମନ୍ତେ ପ୍ରୟୋଜନରୁ ଏଇ ଦ୍ରବ୍ୟ ଦକ୍ଷିଣାପଥ ପଠାଯାଇଥିଲା । ଏହି ସାମଗ୍ରୀର ସଂପୂର୍ଣ୍ଣ ଧନ ଧର୍ମାର୍ଥ

ସଂକଳ୍ପିତ ଧନ ଅଟେ । ଏହି ଧନକୁ ଯୁଦ୍ଧକାର୍ଯ୍ୟରେ ବ୍ୟୟ କରିବାରେ ଧର୍ମର ହାନି ହେବ । ଆମର ନିବେଦନ, ଯୁଦ୍ଧକାଳରେ ଏ ଧନ ମହାବୋଧି ବିହାରରେ ରାଜ୍ୟର ମୁଦ୍ରାଠାରୁ ସୁରକ୍ଷିତ ରହୁ । ସଂକଳ୍ପିତ ରାଶି ପୂରା ହୋଇଗଲା ପରେ ମହାବିହାର ପାଇଁ ବ୍ୟୟ କରାଯାଉ ।''

''ଏହା କ'ଣ ରକ୍ଷା ହେଲା ?'' ପଦ୍ମଜଙ୍କର ସ୍ୱର ବାଷ୍ପାକୁଳ ହୋଇ ଉଠିଲା, ''ବାଘ ମୁହଁରୁ ଭୟରେ ପଳାଇ ମଗର ମୁହଁରେ ଜଳରେ କୁଦିବା କ'ଣ ରକ୍ଷା କି ? ଧନ ଆଚାର୍ଯ୍ୟ ସୁକେଷଙ୍କ ହାତକୁ ନ ଯାଇ ମୁଣ୍ଡିଙ୍କ ହାତକୁ ଚାଲିଗଲା ଯଦି ସେ କ'ଣ ଲାଭ ? ଆପଣଙ୍କ ପାଇଁ ଲକ୍ଷେ ଦୁଇଲକ୍ଷ ସଂଘ ଏବଂ ବିହାରକୁ ଦେଇଦେବା ପରଲୋକ ପାଇଁ ସନ୍ତୋଷର କଥା ମାତ୍ର ଆମେ ସବୁତ ଇହଲୋକରେ ଠିକ୍‌ରେ ନାହୁଁ ପରଲୋକ ପାଇଁ କ'ଣ ହାତ ବିସ୍ତାର କରି ପାରିବୁ ?''

''ମିତ୍ର ପଦ୍ମଜ, ତୁମର ଏ କଥା ବଣିକ ବୁଦ୍ଧିର ଅନୁକୂଳ ନୁହଁ । ''ସୌମିତ୍ର କ୍ଷୋଭ ପ୍ରକଟ କଲେ, ''ଏପରି ଛୋଟ କଥା ବ୍ରାହ୍ମଣ କିମ୍ବା କ୍ଷତ୍ରିୟ ହିଁ କରିପାରନ୍ତି, ଯେଉଁମାନେ ଦ୍ରବ୍ୟର ପ୍ରୟୋଜନ ଶାରୀରିକ ଆବଶ୍ୟକତାର ପୂର୍ତ୍ତି ମାତ୍ର ବୋଲି ଜାଣନ୍ତି; ତା' ଛଡ଼ା ଆଉ କିଛି ନୁହେଁ । ସାମଗ୍ରୀର ଏ ଧନ ହାତରୁ ଚାଲିଗଲେ କ'ଣ ତୁମକୁ ଖାଇବାକୁ ଭାତ ମୁଠିଏ, ପିନ୍ଧିବାକୁ ଲୁଗା ଖଣ୍ଡିଏର ସଂକଟ ପଡ଼ିଯିବ ? ଯଦି ଏପରି ହେବ, ତାହେଲେ ମୋତେ କହିବ ! ଦ୍ରବ୍ୟ ତ ଶକ୍ତି ଏବଂ ସାମର୍ଥ୍ୟର ସାଧନ । ବ୍ୟବସାୟର ପ୍ରୟୋଜନ ଦ୍ରବ୍ୟର ବୃଦ୍ଧି କରିବା । ସେ ଦ୍ରବ୍ୟ ଧର୍ମୋଦୟର ନାମରେ ମଧ୍ୟ ତୁମର । ଧର୍ମୋଦୟର ନାମରେ ତୁମ ଦ୍ରବ୍ୟ ସଂଘ ଏବଂ ବିହାର ଉପରେ ତୁମର ଅଧିକାର ରଖିବ । ମିତ୍ର, ଆଜି ଏ ସହସ୍ର ଭିକ୍ଷୁମ୍ପନଙ୍କର ଦଳ ନଗଣ୍ୟ ହୋଇ ଆଉ ନାହିଁ । ପ୍ରଜାଙ୍କର ତାଙ୍କ ଉପରେ ଶ୍ରଦ୍ଧା ଅଛି ! ଏବେତ ଦ୍ରବ୍ୟ ବିହାରରେ ରାଜମୁଦ୍ରା ଠାରୁ ମଧ୍ୟ ସୁରକ୍ଷିତ ରହିବ । ଯୁଦ୍ଧର ପରିଣାମ କେଜାଣି କ'ଣ ହେବ । ମାତ୍ର ଦ୍ରବ୍ୟ ଆଚାର୍ଯ୍ୟଙ୍କ ହାତକୁ ଯିବା ମାତ୍ରକେ ସେ ତାକୁ ତୁରନ୍ତ ଶସ୍ତ୍ର କରିବା ପାଇଁ ଗୌଡ଼ଦେଶ ଏବଂ ଦକ୍ଷିଣାପଥ ପଠାଇଦେବେ । ଆଚାର୍ଯ୍ୟ ଯେତେବେଳ ପର୍ଯ୍ୟନ୍ତ ଧନପାଇଁ ବ୍ୟାକୁଳ ନ ହେବେ, ତମ-ଆମ ସହାୟତା ବା ସମ୍ମତିର ମୂଲ୍ୟ ମଧ୍ୟ ତାଙ୍କ ଦୃଷ୍ଟିରେ କିଛି ରହିବନି ।''

ପଦ୍ମଜଙ୍କ ଆଖିରୁ ଲୁହ ଝରି ଆସିଲା ଏବଂ ବାସଲ ଦୀର୍ଘନିଶ୍ୱାସ ନେଇ ନୀରବ ରହିଗଲେ । ସୌମିତ୍ର ଆହୁରି ଅନେକ ସମୟ ପର୍ଯ୍ୟନ୍ତ ଉଭୟ ଶ୍ରେଷ୍ଠୀଙ୍କୁ ବୁଝେଇ ଚାଲିଲେ । ଶେଷକୁ ସେ ଦୁଇଜଣ ସ୍ୱୀକାର କଲେ– ଆଗକୁ ଯାହା

ବି ହେବ, ବର୍ତ୍ତମାନ ସୌମିତ୍ର ବ୍ୟାପାରର ଦ୍ରବ୍ୟ ମହାମାତ୍ୟଙ୍କ ହାତରେ ଯେପରି ନ ପଡୁ ତହିଁର ବ୍ୟବସ୍ଥା କରନ୍ତୁ ।

ମୃଦଙ୍ଗ ଉପରେ ଲୟ ବଜାଉଥିବା ବନ୍ଦୀ ମଧ୍ୟ ଥକି ଯାଇଥିଲା । ସୌମିତ୍ର ସେମାନଙ୍କୁ ମଧ୍ୟ ଅବକାଶ ଦେଲେ । ଜଣେ ଢୁଳଉଥିବା କାଳ ସେବକକୁ ସୌମିତ୍ର ସଙ୍କେତରେ ଆଦେଶ ଦେଲେ ଯେ ଭିତର କୋଠରିରୁ ମଞ୍ଜୁଷା ନେଇଆସ । ମଞ୍ଜୁଷାରୁ ତାଳପତ୍ର, ଲେଖନୀ ବାହାର କଲେ । ତାଳପତ୍ରରେ ତିନିବର୍ଷ ପୂର୍ବର, ସାମଗ୍ରୀର ଦକ୍ଷିଣାପଥକୁ ଯିବାଠାରୁ ମଧ୍ୟ ଆହୁରି ଆଗର ତିଥିରେ ଏକ ସଂକଳ୍ପ-ପତ୍ର ଶ୍ରେଷ୍ଠୀ ତିନିଜଣ ନିଜ ହସ୍ତାକ୍ଷରରେ ଲେଖିଲେ ! ସୌମିତ୍ର ତାଳପତ୍ରକୁ ଦୀପ ଆଲୋକର ଶିଖାରେ ସାମାନ୍ୟ ସେକିଦେଇ ତାକୁ ପୁରୁଣା ଏବଂ କୁହୁଡ଼ିଆ କରିଦେଲେ ।

× × × × ×

କଳିଙ୍ଗର ମହାରାଣୀ ନନ୍ଦା ରାଜପ୍ରାସାଦରେ ରହି ମଧ୍ୟ ଭିକ୍ଷୁମାନଙ୍କ ପାଇଁ ସଂଘଦ୍ୱାରା ନିଶ୍ଚିତ ବିନୟ ଏବଂ ଶୀଳ ଭାବର ନିୟମସବୁ ପାଳନ କରୁଥିଲେ । ସେ କେବଳ ମଧ୍ୟାହ୍ନପୂର୍ବରୁ ଥରେ ମାତ୍ର, ଗୋଟିଏ ମାତ୍ର ପାତ୍ରରେ ଭୋଜନ କରୁଥିଲେ । ସେ ସମ୍ଭ୍ରାନ୍ତ କୁଳର ଲୋକଙ୍କ ପରି ଦ୍ୱିପ୍ରହର ବେଳେ ନିଦ୍ରା ନ ଯାଇ କୁଶ କିମ୍ବା କମ୍ବଳ ଆସନ ଉପରେ ବସି ଧର୍ମଗ୍ରନ୍ଥ ପାଠ କରୁଥିଲେ ।

ମହାରାଣୀ ପାଠ କରୁଥିଲେ । ରାଜପ୍ରାସାଦର ଦ୍ୱାରଦେଶରୁ କଂସାର ଘଣ୍ଟାରେ ଦିନର ଚତୁର୍ଥ ପ୍ରହର ଆରମ୍ଭ ହେବାର ଶବ୍ଦ ଶୁଣାଗଲା । ମହାରାଣୀ ବୁଦ୍ଧ ବଚନର ଏକ ପ୍ରକରଣ ସମାପ୍ତ କଲା ପରେ ହାତଯୋଡ଼ି ଗ୍ରନ୍ଥ ଉଦ୍ଦେଶ୍ୟରେ ମଥାନତ ହେଲେ ।

ମହାରାଣୀଙ୍କର ଦ୍ୱାର ସମ୍ମୁଖରେ ଯବନୀ ଅବସର ଦେଖି ମହାରାଣୀଙ୍କ ଅଙ୍ଗଦାସୀକୁ ସୂଚନା ଦେଲା । ଦାସୀ ମୁଣ୍ଡ ନୁଆଁଇ ମହାରାଣୀଙ୍କ ଆଗରେ ନିବେଦନ କଲା – "ଅଭୟ ଦାନ ହେଉ ପରମ ଭଗବତୀ, ରାଜସଖା ନଗରଶେଠ୍‌, ଜ୍ୟେଷ୍ଠ ସୌମିତ୍ର ରାଜଦର୍ଶନର ଇଚ୍ଛାରେ ଘଣ୍ଟାଏ ହେବ ରାଜଦ୍ୱାରରେ ଉପସ୍ଥିତ ଅଛନ୍ତି ।"

ଦାସୀ ମହାରାଣୀଙ୍କର ମୌନ ଅନୁମତି ପାଇ ଯବନୀକୁ ଉତ୍ତର ଦେଲା – "ପରମ ଭଗବତୀ ମହାରାଣୀ ଅନୁମତି ଦେଉଛନ୍ତି, ନଗର ଶେଠ୍‌ ରାଜଦର୍ଶନ ପାଇଁ ମନ୍ତ୍ରଣାଗୃହରେ ଉପସ୍ଥିତ ହୁଅନ୍ତୁ ।"

ମହାରାଣୀ ଶ୍ୱେତ କଷାୟ ବସ୍ତ୍ରରେ ଶରୀର ଢାଙ୍କି ଅଳିନ୍ଦରେ ଧୀରେ-ଧୀରେ ପାଦ ପକାଇ ମନ୍ତ୍ରଣାକକ୍ଷ ଆଡ଼କୁ ଯାଉଥିଲେ । ଏତିକିବେଳେ ଯୁବରାଜ୍ଞୀ ଅମିତା ପ୍ରାତଃକାଳ ଖେଳପରର ଥକାପଣ ତୃତୀୟ ପ୍ରହରର ନିଦରୁ ମେଣ୍ଟାଇ ପୁଣି ଉତ୍‌ଫୁଲ୍ଲ ହୋଇ ଯାଇଥିଲେ । ସେ ଏକ ଦୀର୍ଘିକାରେ ଆଉ ଦୁଇଜଣ ବାଳିକାଙ୍କ

ସହିତ ମହାରାଣୀଙ୍କ ସାମନାକୁ ଆସିଗଲେ । ଅମିତାଙ୍କ ଗଳାରେ ଏକ ଛୋଟିଆ ଭେରୀ ଲାଗି ରହିଥିଲା ଏବଂ ବାଳିକାମାନଙ୍କ ହାତରେ ଗୋଟିଏ ଗୋଟିଏ ତୂର୍ଯ୍ୟ ଥିଲା ।

ଅମିତା କଲ୍ଲୋଳିତ ସ୍ୱରରେ ମାତାଙ୍କୁ ସମ୍ବୋଧନ କଲେ– "ମା, ମା ଦେଖନ୍ତୁ, ଏକ ନୂଆ ଖେଳ ଦେଖାଇବି ।"

ଅମିତା ଗଳାରେ ଥିବା ଭେରୀକୁ ପେଁ-ପେଁ ବଜାଇବାରେ ଲାଗିଲେ । ତାଙ୍କ ସଙ୍ଗୀଗଣ ମଧ୍ୟ ତୂର୍ଯ୍ୟସବୁକୁ ବଜେଇ ବସିଲେ ।

ମହାରାଣୀ ଅଟକିଗଲେ ଏବଂ ସ୍ନେହରେ ହସିଦେଇ ବାଳିକାମାନଙ୍କର ଖେଳ ଦେଖିବାରେ ଲାଗିଲେ ।

ଅମିତା ଭେରୀ ବଜାଇ ଘୋଷଣା କଲା ଭଳି ଉଚ୍ଚୈସ୍ୱରରେ ଡାକିଲେ– "ଧର୍ମରାଜ୍ୟ କଳିଙ୍ଗର ସମସ୍ତ ପ୍ରଜାଗଣ ଏବଂ ପୌରଜନ ଶୁଣନ୍ତୁ ! ମହାମୟୀ ପରମଭଗବନ୍ତୀ ବଚ୍ଛଳ..."

ଅମିତାଙ୍କର ବଡ଼ ସାଙ୍ଗଜଣକ ବାଧା ଦେଲେ– "ନା-ନା, ଏପରି ନୁହେଁ ମହାମହିମାମୟୀ, ପରମଭଗବତୀ, ପ୍ରଜାବତ୍ସଳା କଳିଙ୍ଗର ରାଜେଶ୍ୱରୀ ...."

"ନା, ନା, ମୁଁ କହିବି !" ଅମିତା ପୁଣି ଉଚ୍ଚୈସ୍ୱରରେ ଘୋଷଣା କରିବାରେ ଲାଗିଲେ, "ରାଜେଶ୍ୱରୀଙ୍କର ଆଜ୍ଞା ଶୁଣନ୍ତୁ !"

ତୃତୀୟ ବାଳିକା ପୁଣି ଡାକିଲା– "କଳିଙ୍ଗର ଧର୍ମରାଜ୍ୟ ଉପରେ ଅତ୍ୟାଚାରୀ, ସ୍ୱଜନଘାତକ ଚଣ୍ଡ ଅଶୋକଙ୍କର ଆକ୍ରମଣର ପ୍ରତିରୋଧରେ ...."

ମୁଁ କହିବି, ମୁଁ ! ଅମିତା ଆଗ୍ରହ ପ୍ରକାଶ କଲେ ଏବଂ କହିଲେ, ଦେବତାମାନଙ୍କର କୃପା ପାଇଁକି ମହାବଳି ଯଜ୍ଞର ଆୟୋଜନ ହେଉ ।"

ପ୍ରଥମ ବାଳିକାଜଣକ ପୁଣି ପାଟିକଲା– "ସମସ୍ତ ଦ୍ୱିଜ ଏବଂ ଶୂଦ୍ର ମହାବଳି ଯଜ୍ଞରେ ଯୋଗ ଦେବେ" !

"ମୁଁ, ମୁଁ !" ଅମିତା ଆଗ୍ରହ କଲେ, ପ୍ରତ୍ୟେକ ପ୍ରଜା ଶସ୍ତ୍ର ଧାରଣ କରି ପ୍ରସ୍ତୁତ ହୁଅନ୍ତୁ !

ପ୍ରଥମ ବାଳିକା ଉଚ୍ଛୁଳିପଡ଼ି କହିଲା– ମୁଁ...ମୁଁ ରାଜ୍ୟରକ୍ଷା ପାଇଁ ଶସ୍ତ୍ର ଧରିବି । ମୁଁ ଧନୁଶର ଧରିବି ।

ଅମିତା କହିଲେ– "ମୁଁ ମଧ୍ୟ ଧନୁର୍ବାଣ ନେବି । ଖଡ୍‌ଗ ଏବଂ ଭାଲା ମଧ୍ୟ ଧରିବି !"

ମହାରାଣୀ ତିନୋଟିଯାକ ବାଳିକାଙ୍କ ମସ୍ତକରେ ହାତ ଦେଇ ସ୍ନେହଭରା ଆଶୀର୍ବାଦ ଦେଇ କହିଲେ– ''ବତ୍ସେ ରକ୍ଷା ଧନୁର୍ବାଣ, ଖଡ୍‌ଗ, ଭାଲା ଦେଇ ହୁଏନି । ରକ୍ଷା ଧର୍ମର ପାଳନରେ ହୋଇଥାଏ । ବତ୍ସେ, ଧର୍ମର ମୂଳମନ୍ତ୍ର ହେଲା କାହାଠାରୁ ବଳାତ୍ ଅଧିକାର କରି ନିଅ ନାହିଁ; କାହାରିକୁ ଡରାଅ ନାହିଁ; କାହାକୁ ମାର ନାହିଁ; ନିଜ ଭୟକୁ ହତ୍ୟା କର ।'' ମହାରାଣୀ ମନକୁ ମନ ମନ୍ତ୍ର ପାଠ କରି ବାଳିକାମାନଙ୍କୁ ପୁଣି ଥରେ ଆଶୀର୍ବାଦ ଦେଲେ ଏବଂ ଆଗକୁ ବଢ଼ିବାକୁ ଦେବାପାଇଁ କହିଲେ, ଆଚ୍ଛା ଏବେ ଖେଳ ।''

ଦାସୀ ହିତା ବାଳିକାମାନଙ୍କୁ ନେଇ ତୁରନ୍ତ ଆଉ ଏକ ଦୀର୍ଘିକାକୁ ଚାଲିଗଲା ।

ମହାରାଣୀଙ୍କ ମନ୍ତ୍ରଣାକକ୍ଷରେ ପ୍ରବେଶ କଲାପରେ ନଗରଶ୍ରେଷ୍ଠୀ ଭୂମିସ୍ପର୍ଶ କରି ପ୍ରଣାମ କଲେ– ''ମହାମହିମାମୟୀ, ପରମ ଭଗବତୀ, ଧର୍ମନିଷ୍ଠ, ଦେବତାମାନଙ୍କର ପ୍ରିୟ କଳିଙ୍ଗର ରାଜେଶ୍ୱରୀଙ୍କର ଜୟ ହେଉ !'' ଏବଂ ମୁଣ୍ଡ ନଇଁ ଛିଡ଼ାହୋଇ ରହିଲେ ।

ମହାରାଣୀ ରାଜଆସନର ଗୋଟିଏ କୋଣକୁ ଆଉଜେଇ ହୋଇ କହିଲେ– ''ରାଜକୁଳର ସଖା ନଗରଶ୍ରେଷ୍ଠଙ୍କର କଲ୍ୟାଣ ହେଉ । ଶ୍ରେଷ୍ଠୀ ମନର ଚିନ୍ତା ବା କାମନା କୁହନ୍ତୁ !''

ସୌମିତ୍ର ପୁଣିଥରେ ଭୂମିସ୍ପର୍ଶ କରି ନିବେଦନ କଲେ– ''ଧର୍ମନିଷ୍ଠ ପରମଭଗବତୀ, ଧର୍ମ ଏବଂ ନ୍ୟାୟ ଅଖଣ୍ଡ ରହୁ । ଭଗବାନ୍ ସୁଲକ୍ଷଣୀ ଯୁବରାଜ୍ଞୀଙ୍କୁ ଶତାୟୁ କରନ୍ତୁ । ସେବକ ଯୁବରାଜ୍ଞୀଙ୍କର କଲ୍ୟାଣ ସମାଚାରର ଜିଜ୍ଞାସାରେ ଦର୍ଶନାର୍ଥେ ଆସିଛି ।''

ମହାରାଣୀ ଭୂମି ଆଡ଼କୁ ଦୃଷ୍ଟି ନିକ୍ଷେପ କରି ଉତ୍ତର ଦେଲେ– ''ତଥାଗତଙ୍କର କୃପାରୁ, ପ୍ରଜାଙ୍କର ଆଶୀର୍ବାଦ ଏବଂ ରାଜକୁଳର ହିତୈଷୀମାନଙ୍କର କଲ୍ୟାଣ କାମନାରୁ ଯୁବରାଜ୍ଞୀ ସକୁଶଳ ଅଛନ୍ତି । ନଗରଶ୍ରେଷ୍ଠୀ ଆଉ କିଛି କୁହନ୍ତୁ !''

ସୌମିତ୍ର ପୁଣି ମୁଣ୍ଡ ନୁଆଁଇ ନିବେଦନ କଲେ– ''ପରମଭଗବତୀ ରାଜେଶ୍ୱରୀଙ୍କର ଧର୍ମରେ ଆସ୍ଥାର ଜଗତରେ ପ୍ରସିଦ୍ଧି ଅଛି । ସେବକ ଉତ୍ତରଦେଶରୁ ପାଇଥିବା ଏକ ଉପହାର ରାଜସେବାରେ ଉପସ୍ଥିତ କରିବାକୁ ଆଦେଶ ଚାହୁଁଛି ।''

''ମୁଁ ନଗରଶ୍ରେଷ୍ଠୀଙ୍କର ରାଜଭକ୍ତିର ଆଦର କରୁଛି, ମହାରାଣୀ ଉତ୍ତର ଦେଲେ, ଶ୍ରେଷ୍ଠୀ ରାଜଭକ୍ତିରେ ଯେ ଅର୍ପଣ କରିବାକୁ ଚାହେଁ, ରାଜକୋଷରେ ଦେବେ, ସେଇ ଉପହାର ପ୍ରଜାଙ୍କ ହେବ ।''

ସୌମିତ୍ର ପୁନର୍ବାର ଭୂମିସ୍ପର୍ଶ କରି ଅଭୟ ଦାନର କାମନା କଲେ– "ପରମଭଗବତୀଙ୍କ ଆଦେଶ ଶିରୋଧାର୍ଯ୍ୟ । ପରମଭଗବତୀଙ୍କ ଧନପ୍ରତି ଅନାସକ୍ତି ସହିତ ସେବକ ପରିଚିତ । ସେବକର ଧନ ରାଜକୋଷ ପାଇଁ ଉପଯୁକ୍ତ ନୁହେଁ । ସେବକ ମାୟାର ବନ୍ଧନ ନୁହଁ, ଧର୍ମରେ ଶ୍ରଦ୍ଧାର ଉପହାର ପ୍ରସ୍ତୁତ କରିବାକୁ ଚାହୁଁଛି ।"

ମହାରାଣୀ କିଛିକ୍ଷଣ ଶୁଣି କହିଲେ– "ନଗରଶ୍ରେଷ୍ଠୀଙ୍କର ଏପରି ଭାବନା ଅଛି ଯଦି ଦେଖିବା ।"

ସୌମିତ୍ର ଭୂମି ସ୍ପର୍ଶକରି କୃପାପାଇଁ କୃତଜ୍ଞ ହେଲେ ଏବଂ ପାଖରେ ଥିବା ରୁପାତାରରେ ଚିତ୍ରିତ ଗୋଟିଏ ଡବାରୁ ଢାଙ୍କୁଣୀ ଉଠାଇନେଲେ । ଡବାଟିର ଚତୁଷ୍ପାର୍ଶ୍ୱର ଫଳକ ଖୋଲିଯାଇ ଫୁଲର ପାଖୁଡ଼ା ସବୁ ପରି ଫିଟିଗଲା । ଡବାର ତଳକୁ ରେଶମ ଆସନ ଉପରେ ରତ୍ନଖଚିତ ପାତ୍ର ରଖାହୋଇ ଥାଏ । ଶ୍ରେଷ୍ଠୀ ନତମସ୍ତକ ହୋଇ ଭକ୍ତିଭାବରେ ପାତ୍ରକୁ ପ୍ରଣାମ କଲେ । ମହାରାଣୀ ଅପଲକ ଦୃଷ୍ଟିରେ ସେହି ପାତ୍ରଆଡ଼କୁ ଦେଖି ରହିଲେ । ତାଙ୍କ ହାତ ପ୍ରଣାମ କରିବା ଉଦ୍ଦେଶ୍ୟରେ ଉଠିଗଲା ।

ସୌମିତ୍ର ହାତଯୋଡ଼ି ନିବେଦନ କଲେ– "ପରମଭଗବତୀ, ଧର୍ମଜ୍ଞ ମହାରାଣୀ ଧର୍ମଧର, ବିନୟଧର ଏବଂ ସୂତ୍ରଧର ସ୍ଥବିରଙ୍କର ମତ ଜାଣନ୍ତି ଯେ ତଥାଗତଙ୍କ ଧାତୁ ଦର୍ଶନ ଏବଂ ପୂଜନର ମୋହ, ହିଂସା, ଅଜ୍ଞାନ ଏବଂ ପରିଗ୍ରହ ପ୍ରବୃତ୍ତିର ଯମ ଅଟେ । ଏଇ ପାତ୍ରରେ କୁଶୀନଗରରୁ ପାଇଥିବା ଭଗବାନ୍‌ଙ୍କ ଅସ୍ଥିଧାତୁର ଚାରିରତି ପ୍ରମାଣ ଅଂଶ ଅଛି । ତାକୁ ଉତ୍ତର କୁରିର ଶ୍ରଦ୍ଧାବାନ୍ ଶ୍ରେଷ୍ଠୀ ନିମିତ୍ତ ଦଶବର୍ଷର ପ୍ରଯତ୍ନରୁ ଅନେକ ଧନରାଶି ବ୍ୟୟକରି ପାଇଥିଲେ । ସେବକ ଶ୍ରେଷ୍ଠୀଙ୍କ ପାଇଁ ଉଦ୍ଦେଶ୍ୟର ଏହି ପାତ୍ର ଦୁଇଲକ୍ଷ ଧରଣ ମୁଦ୍ରା ଦେଇ କଳିଙ୍ଗରେ ବୌଦ୍ଧ ବିହାରର ସ୍ଥାପନା କରିବା ପାଇଁ ପାଇଅଛି ।"

ମହାରାଣୀ ନିଜ ଆସନରୁ ଉଠିଲେ । ସେ ଧାତୁପାତ୍ର ନିକଟରେ ଭୂମିଷ୍ଠ ପ୍ରଣାମ କଲେ ଏବଂ ପାତ୍ର ସମ୍ମୁଖ ଭୂମି ଉପରେ ବସିଗଲେ ।

ମହାରାଣୀ ସୌମିତ୍ରଙ୍କୁ ଦେଖି କହିଲେ– "ଶ୍ରେଷ୍ଠୀଙ୍କ ବିଚାର ଶୁଭ ଅଟେ । ଧାତୁପାତ୍ରର ସମ୍ମାନ ପାଇଁ ଏକ ବିହାରର ସ୍ଥାପନା ଉଚିତ ଅଟେ । ଶୁଭ ବିଚାର ପୂର୍ଣ୍ଣ ହେଉ ।"

ଶ୍ରେଷ୍ଠୀ ଦୁଇହାତ ଯୋଡ଼ି କହିଲେ— "ପରମଭଗବତୀ ଅଭୟଦାନ ଦେବେ ଯଦି ସେବକ ନିବେଦନ କରିବ ।"

ମହାରାଣୀଙ୍କଠାରୁ ଅନୁମତି ପାଇ ଶ୍ରେଷ୍ଠୀ କହିଲେ— "ପରମଭଗବତୀ, ସେବକର ସାଧନ ସୀମିତ ଏବଂ ପରମଭଗବତୀଙ୍କ ସାଧନ ଅସୀମ । ବିହାର ସ୍ଥାପନା ଏବେ ସେବକର ସାମର୍ଥ୍ୟ ବାହାରେ । ସେବକ ତିନିବର୍ଷ ପୂର୍ବେ ଶ୍ରେଷ୍ଠୀ ବାସଲ ଏବଂ ପଦ୍ମଜଙ୍କ ସହିତ ମିଶି ମଠ ସ୍ଥାପନା ପାଇଁ ଧନ ଅର୍ଜନ କରିବାକୁ ସଂକଳ୍ପ କରିଥିଲା । ପରମଭଗବତୀ ଏ ସଂକଳ୍ପପତ୍ର ଦେଖନ୍ତୁ ।"

ଶ୍ରେଷ୍ଠୀ ମୁଣ୍ଡ ନୁଆଁଇ ସଂକଳ୍ପର ତାଳପତ୍ର ମହାରାଣୀଙ୍କ ସମ୍ମୁଖରେ ଭୂମିଉପରେ ରଖିଦେଲେ ଏବଂ କହିଲେ— "ପରମଭଗବତୀଙ୍କ ଧର୍ମ ପ୍ରତାପରୁ ବାଣିଜ୍ୟରେ ଲାଭ ହେଲା ମାତ୍ର ସେ ସଂପୂର୍ଣ୍ଣ ଧନ ମହାମାତ୍ୟଙ୍କ ଆଦେଶରେ ଯୁଦ୍ଧକୋଷରେ ରାଜ୍ୟାଧୀନ କରି ନିଆଗଲା ।"

ମହାରାଣୀ ତାଳପତ୍ର ଉପରେ ଦୃଷ୍ଟି ରଖି ଚୁପ୍ ଥିଲେ ।

ସୌମିତ୍ର କହିଲେ— "ପରମଭଗବତୀ ଅଭୟଦାନ ଦେବେ ଯଦି ସେବକ ମନର ଚିନ୍ତା ପ୍ରକାଶ କରିବ । ସେବକକୁ ସ୍ୱର୍ଣ୍ଣର ଲୋଭ ନାହିଁ କିନ୍ତୁ ଏଇ ଦୁଃଖ ନିଶ୍ଚିତ ଭାବରେ ଅଛି ଯେ ବିହାରର ସେବା, ମୈତ୍ରୀ ଏବଂ ଅହିଂସା ଧର୍ମ ନିମିତ୍ତ ସଂକଳ୍ପିତ ଏ ଧନ ଯୁଦ୍ଧର ହିଂସା ଏବଂ ବଳିର ପାପରେ ବ୍ୟୟ ହେବ । ସେବକକୁ ଧନର ଲୋଭ ନାହିଁ । ତାଙ୍କର ସର୍ବସ୍ୱତ୍ୱ ବୁଦ୍ଧ, ଧର୍ମ ଏବଂ ସଂଘ ପାଇଁ ସଂକଳ୍ପିତ ଅଟେ । ଯଦି ବାଣିଜ୍ୟରୁ ବିହାରର ସେବା ନିମିତ୍ତ ସମଗ୍ର ଧନ ରାଜାଜ୍ଞା ଏବଂ ରାଜମୁଦ୍ରାରୁ ରକ୍ଷିତ ହୋଇ ବିହାରରେ ରୁହେ ତା'ହେଲେ ସେବକର ଧର୍ମଭାବନାକୁ ସନ୍ତୋଷ ମିଳିବ । ଶେଷରେ ପରମଭଗବତୀଙ୍କର ଯେମିତି ଆଜ୍ଞା ହେବ ।"

"ତଥାସ୍ତୁ ।" ମହାରାଣୀଙ୍କ ମୁହଁରୁ ବାହାରିପଡ଼ିଲା ଏବଂ ସେ ଚାମର ଢାଳୁଥିବା ଦାସୀ ଆଡ଼କୁ ଦେଖିଲେ, "ଲେଖକ ପ୍ରସ୍ତୁତ ହୁଅନ୍ତୁ ।"

ଲେଖକ ତୁରନ୍ତ ପ୍ରସ୍ତୁତ ହେଲେ । ସେ ତାଙ୍କ ଡବାଟି ଖୋଲି ଭୋଜପତ୍ର ନେଇ ଲେଖନୀ ଧରିଲେ ।

ମହାରାଣୀ ଆଦେଶ ପତ୍ର ଲେଖାଇଲେ   ଆଦେଶ ଅଛି ଯେ ରାଜକୁଳ ସଖା ଶ୍ରୀମାନ ନଗରଶ୍ରେଷ୍ଠୀ ସୌମିତ୍ର ଏବଂ ତାଙ୍କର ସହକାରୀ ଶ୍ରେଷ୍ଠୀ ବାସଲ ଏବଂ ପଦ୍ମଜଙ୍କର ବାଣିଜ୍ୟ ଧନ ବିହାର ନିର୍ମାଣର ଧର୍ମକାର୍ଯ୍ୟ ପାଇଁକି ସଂକଳ୍ପିତ ଅଟେ । ବାଣିଜ୍ୟର ଲାଭରୁ ଚାରିଭାଗରୁ ତିନିଭାଗ ଯୁଦ୍ଧକାର୍ଯ୍ୟ ହେତୁ ରାଜ୍ୟାଧୀନ

କରା ନ ଯାଉ । ବାଣିଜ୍ୟର ସଂପୂର୍ଣ୍ଣ ଧନ ଯୁଦ୍ଧ କାଳରେ ମହାବୋଧି ବିହାରରେ ଗଚ୍ଛିତ ହୋଇ ରାଜମୁଦ୍ରାରୁ ସୁରକ୍ଷିତ ରହିବ ।

ଆଦେଶ ଲେଖାଗଲା ପରେ ମହାରାଣୀ ନିଜ ଅଙ୍ଗୁଳିରେ ପିନ୍ଧିଥିବା ରାଜମୁଦ୍ରାରୁ ତା ଉପରେ ଚିହ୍ନ ଅଙ୍କିତ କରିଥିଲେ ।

## ହିତା ଏବଂ ମୋଦ

ମଧ୍ୟାହ୍ନ ପରେ ବାଳିକା ଯୁବରାଜ୍ଞୀ ଅମିତା ଯେତେବେଳେ ବିଶ୍ରାମ ପାଇଁ ପଲଙ୍କରେ ଶୋଇଗଲେ ନିହାତି ପାଖକୁ ନେଇଯାଇ ହିତା ତାର ମା ବାପୀକୁ ଧୀର ସ୍ୱରରେ କହିଲା –

"ମା, ଯୁବରାଜ୍ଞୀ ବର୍ତ୍ତମାନ ଶୋଇଛନ୍ତି । ଉଠିଲେ କଣ୍ଢେଇ ବାହାଘର ଖେଳ ଖେଳିବେ । ଆଚାର୍ଯ୍ୟ ଓ ଆର୍ଯ୍ୟଙ୍କର କୋଠାସବୁରୁ ବାଳିକାମାନଙ୍କୁ ଡକେଇ ନେବାକୁ ମୁଁ କଞ୍ଚୁକୀ ମାମୁଙ୍କୁ କହିଦେବି କି ? ମୁଁ ଯାଇ ଜ୍ୟେଷ୍ଠକ ବିଟ୍ଠଳଙ୍କ ଠାରୁ ନୂଆ କଣ୍ଢେଇ ନେଇଆସିଚି । ମା ତୁ ଧ୍ୟାନ ରଖିବୁ; ମୋତେ ଦୁଇ ମିନିଟ ବିଳମ୍ବ ଯଦି ହୋଇଯିବ ତା'ହେଲେ ତୁ ରାଜକୁମାରୀଙ୍କୁ ବାହୁଲେଇ ଦେବୁ ।"

ହିତା ଯେତେବେଳେ ବି ଶ୍ରେଷ୍ଠୀ ବିଟ୍ଠଳଙ୍କ ଠାରୁ ନୂଆ କଣ୍ଢେଇ ଆଣିବା କଥା କୁହେ, ବୃଦ୍ଧା ବାପୀର ମନ ଝିଅପାଇଁ ଚିନ୍ତାରେ ଭାରି ହୋଇ ଯାଉଥିଲା । ସେ ଝିଅକୁ ବୁଝାଉଥିଲା –

"ଝିଅ, ତୁ ଏ କ'ଣ ମୂର୍ଖତା କରୁଛୁ । ତୁ କାହିଁକି ନିଜ ଓ ମୋ ପ୍ରାଣକୁ ସଂକଟରେ ପକାଇବାକୁ ଚାହୁଁଛୁ । ତୁ ଏ କ'ଣ ରୋଗ ପାଳୁଛୁ । ରାଜକୁଳର ତୁ ଦାସୀ, ସ୍ୱତନ୍ତ୍ର ନାରୀଟିଏ ତୁ ନୁହଁ । ଏ ପ୍ରେମ ଏବଂ ପ୍ରଣୟର ଉଚ୍ଛୃଙ୍ଖଳତା ଦାସୀକୁ ଶୋଭା ପାଏନି । କୁଳ-କନ୍ୟାମାନଙ୍କୁ ବିବାହରେ ଯାହା ସହିତ ସମର୍ପଣ କରି ନିଆଯାଏ, ତାଙ୍କ ସହିତ ପ୍ରେମ କରିବାକୁ ହୋଇଥାଏ । ଯିଏ ଦାସୀକୁ କିଣିନିଏ, ତାଙ୍କରି ସେବା ଦାସୀର ଧର୍ମ । ଦାସୀର ଝିଅର କାମ ଆଜ୍ଞା-ପାଳନ ଏବଂ ସେବା, ପ୍ରେମ ନୁହଁ । ଝିଅ ! ଇଏ ମଧ୍ୟ ଏକ ପ୍ରକାରର ଚୋରି ଅଟେ । ତୋର ତନ-ମନ ସେବା ପାଇଁକି, ପ୍ରେମ ପାଇଁ ନୁହେଁ । ତୁ ରାଜପ୍ରାସାଦର ଦାସମାନଙ୍କର ନିୟାମକ ଦଣ୍ଡକର ଅଭିମାନ କରୁଛୁ । ଝିଅ ! ଜଳରେ ରହି ମଗର ସହିତ ବଇରି କଲେ ଚଳେ ନାହିଁ । କୌଣସି ଦିନ ତୋର ଏ ଚୋରି ଧରା ପଡ଼ିବ । ତାହେଲେ କ'ଣ ହେବ ? ଜ୍ୟେଷ୍ଠକ ଶ୍ରେଷ୍ଠୀ ବିଟ୍ଠଳ ଯଦି

ମୋଦକୁ କୌଣସି ଅନ୍ୟ ଶ୍ରେଷ୍ଠୀ ହାତରେ ବିକିଦିଏ ତାହେଲେ କ'ଣ ହେବ ? ତୁ ତ ରାଜପ୍ରାସାଦର ସେବାଛାଡ଼ି ଆଉ କୁଆଡ଼େ ଯାଇପାରିବୁନି । ଦାସୀର ଇଚ୍ଛା କ'ଣ, ତାର ପ୍ରେମ କ'ଣ ? କାହିଁକି ଭୁଲିଯାଉଛୁ ଯେ ତୁ ଦାସୀଠାରୁ ଜନ୍ମ ପାଇଛୁ । ଝିଅ ! ତୁ ତୋର ମନକୁ ବୁଝା । ଶୁଆ ମନୁଷ୍ୟଙ୍କ ପରି କଥା କହିପାରେ କିନ୍ତୁ ମନୁଷ୍ୟ ହୋଇଯାଇପାରେନା । ଦାସ-ଦାସୀ ନାଗରିକ ନରନାରୀମାନଙ୍କ ପରି ଇଚ୍ଛା କରିଥାଆନ୍ତି କିନ୍ତୁ ତାଙ୍କର ଇଚ୍ଛା କ'ଣ ପୂରଣ ହୁଏ ? ତୋର କୌଣସି ବଡ଼ ପୁଣ୍ୟକର୍ମର ପ୍ରଭାବ ଅଛି ଯେ ତୁ ଯୁବରାଜ୍ଞୀଙ୍କର ବିଶେଷ ପରିଚର୍ଯ୍ୟା ଦାସୀ ଅଟୁ : ତୋର ଯୌବନ ପ୍ରାପ୍ତି ପରେ ମଧ୍ୟ ତୋ ଦେଇ ଅପ୍ରିୟ ଏବଂ କଠିନ ସେବା ସବୁ ନିଆ ଯାଉନି । ଦାସୀର ଯାଠାରୁ ବଳି ବଡ଼ ସୌଭାଗ୍ୟ ଆଉ କ'ଣ ହୋଇପାରେ .... ।''

ହିତା ମା'ର କଥା ଶୁଣି ମଧ୍ୟ ରହିପାରୁ ନ ଥିଲା । ତା ମନ ତାର ଆୟତ୍ତରେ ହିଁ ନ ଥିଲା । ତାକୁ ଭୟ ମଧ୍ୟ ଅଟକାଇ ପାରୁ ନ ଥିଲା । ତା'ର ଅବସ୍ଥା ମନମୁଗ୍ଧ ଭୁଜଙ୍ଗିନୀ ପରି ଥିଲା । ସେ ମାସ ଭିତରେ ତିନିବାର ଅନ୍ତପୁର କଞ୍ଚୁକୀକୁ ସୁରକ୍ଷା ନିମନ୍ତେ ସାଙ୍ଗରେ ନେଇ ଜେଷ୍ଠକ ବିଟ୍‌ଠଲଙ୍କ କାରଖାନା ଆଡ଼କୁ ଯାଇସାରିଥିଲା । ସେଦିନ ମଧ୍ୟ ଚାଲିଗଲା ।

× × × × ×

ହିତା ପାଖାପାଖି ଦେଢ଼ ବର୍ଷ ବୟସରେ କଳିଙ୍ଗ ରାଜପ୍ରାସାଦକୁ ଆସିଥିଲା । କଳିଙ୍ଗ ଧର୍ମରାଜ୍ୟ ରାଜବଂଶର ପ୍ରତାପ ଏବଂ ଶକ୍ତି ହେତୁ ଅନେକ ରାଜାଙ୍କର ଭୟ ଓ ଈର୍ଷା ଥିଲା । କଳିଙ୍ଗର ମହାମାତ୍ୟ ଆଚାର୍ଯ୍ୟ ସୁକଣ୍ଠ ଯେଉଁପ୍ରକାର ପଡ଼ୋଶୀ ରାଜାମାନଙ୍କର ସୈନ୍ୟବଳ ଓ ସନ୍ଧିବିଗ୍ରହର ନୀତି ପ୍ରତି ସତର୍କ ରହୁଥିଲେ, ସେହିପରି ସେ କଳିଙ୍ଗ ରାଜ୍ୟ ଏବଂ କଳିଙ୍ଗର ରାଜବଂଶ ପ୍ରତି ସମ୍ଭବ କୂଟନୀତି ଏବଂ ପ୍ରତି ଛଳ ମଧ୍ୟ ସତର୍କ ଓ ସଶଙ୍କ ରହୁଥିଲେ । କଳିଙ୍ଗର ସ୍ୱର୍ଗୀୟ ମହାରାଜ ଏବଂ ତାଙ୍କ ପିତା ମହାରାଜ ମୟୂଖଙ୍କର ଭୋଗ-ବିଳାସ ଅପେକ୍ଷା ମୃଗୟାରେ ଅଧିକ ଆଗ୍ରହ ଥିଲା । ମହାମାତ୍ୟ ତଥାପି ସତର୍କ ଥିଲେ ଯେ ବିଳାସର ମାଧ୍ୟମରେ କୌଣସି ରକମର ଛଳ ନ ହେଉ । ମଗଧର ପ୍ରଥମ ଶୂଦ୍ରରାଜା ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ସକାଶେ କୌଟିଲ୍ୟ ଚାଣକ୍ୟ ଶତ୍ରୁର ବିନାଶ ପାଇଁ ଏକ ଉପାୟ ଭାବରେ ବିଷକନ୍ୟାର ଉପଯୋଗ କରାଇଥିଲେ । ମହାମାତ୍ୟ ରାଜବଂଶକୁ ବିଷକନ୍ୟାର ଛଳର ଆଶଙ୍କାରୁ ବଞ୍ଚେଇବା ପାଇଁ କଳିଙ୍ଗ ରାଜପ୍ରାସାଦରେ ପରିପାଟୀ ନିଶ୍ଚିତ କରିଥିଲେ ଯେ ମହାରାଜଙ୍କ ବିଳାସ ପାଇଁ ସୁନ୍ଦରୀ, ଯୁବାଦାସୀମାନଙ୍କର ଭେଟି ସ୍ୱୀକାର କରାଯିବ ନାହିଁ । ରାଜପ୍ରାସାଦରେ ସେବା

ଓ ଉପଯୋଗ ନିମନ୍ତେ ସୁନ୍ଦରୀ ଦାସୀମାନଙ୍କର ପୋଷଣ ସମ୍ବର୍ଦ୍ଧନ ରାଜପ୍ରାସାଦରେ ହିଁ କରାଯାଉଥିଲା । ମା କ୍ଷୀର ଖାଉଥିବା ସୁଲକ୍ଷଣା, ସୁନ୍ଦରୀ କନ୍ୟାମାନଙ୍କୁ ତାଙ୍କ ମା'ଙ୍କ ସହିତ କିଣି ରାଜପ୍ରାସାଦର ଏକ ପାର୍ଶ୍ୱରେ ରଖାଯାଉଥିଲା । ଏଇ ଦାସୀ କନ୍ୟାମାନଙ୍କୁ ପ୍ରାସାଦରେ ହିଁ ପାଳୁଥିଲେ ।

ପ୍ରାସାଦ ପାଇଁ ଅନ୍ତରଙ୍ଗ ଦାସୀମାନଙ୍କର ପୋଷଣ ଏବଂ ଶିକ୍ଷଣର କାର୍ଯ୍ୟ ଚତୁର ଅନୁଭବୀ ଦାସୀମାନେ ବିଶେଷ ବିଧିରେ କରୁଥିଲେ । ଏହି ବାଳିକାମାନଙ୍କର ରୂପ-ରଙ୍ଗ ଏବଂ ଅବୟବକୁ ଉଜ୍ଜ୍ୱଳ ବିକଶିତ କରିବା ଉଦ୍ଦେଶ୍ୟରେ ପୁଷ୍ଟିକର ଖାଦ୍ୟ ଦିଆଯାଉଥିଲା । ତାଙ୍କ ଶରୀରକୁ ପିଲାକାଳରୁ ସୁଗନ୍ଧିତ ଦ୍ରବ୍ୟମାନଙ୍କର ମର୍ଦ୍ଦନ ଓ ଲେପ ଦ୍ୱାରା ସୁକୋମଳ, ସୁନ୍ଦର ଓ ସୁବାସିତ କରି ରଖା ଯାଉଥିଲା । ପିଲାଦିନରୁ ସେମାନଙ୍କୁ ସଙ୍ଗୀତ, ନୃତ୍ୟ, ଲୋଳ, ଲାସ୍ୟ, ଚପଳ-ଶୃଙ୍ଗାରାଦି ମୃଦୁହାସ ଏବଂ ଆକର୍ଷକ ଆଚାର ବ୍ୟବହାରର ଶିକ୍ଷା ଦିଆଯାଉଥିଲା । ଏହି କନ୍ୟାସବୁ ଷୋହଳ ବର୍ଷ ପର୍ଯ୍ୟନ୍ତ ନିଜ ସ୍ଥାନରୁ ବାହାରକୁ ଆସି ପାରୁ ନ ଥିଲେ । ଷୋହଳବର୍ଷ ପୂର୍ଣ୍ଣ ହେଲା ପରେ ସେମାନଙ୍କୁ ମହାରାଜାଙ୍କର ବିଶେଷ ସେବା ପାଇଁ ପ୍ରସ୍ତୁତ କରା ଯାଉଥିଲା । ହିତାର ମଧ ପାଳନ ପୋଷଣ ଏଇ ପ୍ରୟୋଜନ ନିମନ୍ତେ ସମାନ ବିଧିରେ ହୋଇଥିଲା ।

ହିତାର ମା କୁରୁଦେଶର କନ୍ୟା ଥିଲା । ତାର ମାର ପିତା ଭୟଙ୍କର ଦୁର୍ଭିକ୍ଷ ସମୟରେ ନିଜ ଝିଅକୁ ମୃତ୍ୟୁମୁଖରୁ ବଞ୍ଚାଇବା ପାଇଁ ଏକ ଦାସ ବ୍ୟାପାରୀ ହାତରେ ବିକି ଦେଇଥିଲା । ଦାସ ବଣିକଟି ବାଳିକାଟିକୁ ମଗଧର ଏକ ବେପାରୀ ହାତରେ ବିକିଦେଲା । ଯୌବନ ଆସିଲା ପରେ ବାପୀର ରୂପ-ଲାବଣ୍ୟ ଝଟକି ଉଠିଲା । ସେ କଠିନ ପରିଶ୍ରମର ଯୋଗ୍ୟ ନ ଥିଲା, କିନ୍ତୁ ନିଜର ଶୀଳ ଏବଂ ଚାତୁର୍ଯ୍ୟ କାରଣରୁ ସେ ମଗଧର ବଣିକମାନଙ୍କର କୃପାପାତ୍ରୀ ହୋଇ ଯାଇଥିଲା । ଯୌବନର ସେବାକାର୍ଯ୍ୟ କରିବାରେ ତାର ଦୁଇଟି ପୁତ୍ରସନ୍ତାନ ଜନ୍ମିଥିଲେ ଏବଂ ଛବିଶ ବର୍ଷ ବୟସ ବେଳେ ତା କୋଳରେ ହିତାର ଜନ୍ମ । ସେହି ସମୟରେ କୌଣସି ଆକସ୍ମିକ ରୋଗରେ ବାପୀର ସ୍ୱାମୀର ମୃତ୍ୟୁ ଘଟିଥିଲା । ମଗଧର ବେପାରୀର ଯୁବାପୁତ୍ରଙ୍କ ପାଇଁ ଛବିଶ ବର୍ଷ ବୟସ୍କା ନିର୍ବଳ କୋମଳାଙ୍ଗୀ ଦାସୀ ଅନୁପଯୋଗୀ ଥିଲା । ଯୁବା ପୁତ୍ରଦ୍ୱୟ ପିତାଙ୍କ ଋଣ ପରିଶୋଧ କରିବାକୁ ଏବଂ ବୃଥାରେ ଦାସଙ୍କର ଖର୍ଚ୍ଚରୁ ବଞ୍ଚିବାକୁ ବାପୀକୁ ତାର କନ୍ୟା ସହିତ ବିକ୍ରି କରିଦେଲେ । ଏଇଥର ବାପୀ ଯେଉଁ ବେପାରୀ ବାଣିଜ୍ୟକାରୀ ହାତରେ ବିକ୍ରି ହେଲା, ସେ ତାକୁ କଳିଙ୍ଗ ନେଇଗଲା ।

କଳିଙ୍ଗରେ କୁରୁ ଦେଶୀୟ ଗୌରବର୍ଣ୍ଣ ଦାସୀମାନଙ୍କର ମୂଲ୍ୟ ଅଧିକ ମିଳୁଥିଲା । ରାଜପ୍ରାସାଦରେ ଅନେକ ଦାସୀଙ୍କୁ ପାଳନ କରୁଥିବା ଅନୁଭବୀ ଶିକ୍ଷିକା ବାପୀର ବର୍ଣ୍ଣ, ନଖରୁ ଶିଖ ପର୍ଯ୍ୟନ୍ତ ଏବଂ ଝିଅଟିର ଅଙ୍ଗମାନଙ୍କର ଲକ୍ଷଣ ଦେଖି ତାକୁ କିଣିନେଲା ।

କଳିଙ୍ଗ ରାଜପ୍ରାସାଦରେ ବାପୀର ଦିନ ଫେରିଆସିଥିଲା । ନିଜ ଝିଅକୁ ରାଜସେବିକା ଭାବରେ ପ୍ରସ୍ତୁତ କରିବାକୁ ଯତ୍ନ ନେବା ତାର ମୁଖ୍ୟ ସେବା ଥିଲା । ରାଜବୈଦ୍ୟଙ୍କ ଶିଷ୍ୟ ମଝିରେ ମଝିରେ ଏଇ କନ୍ୟାମାନଙ୍କର ଶରୀର ପରୀକ୍ଷା କରୁଥିଲେ । ସେମାନଙ୍କୁ ପୌଷ୍ଟିକ ଭୋଜନ ଦିଆ ଯାଉଥିଲା । ହିତାକୁ ଶୈଶବ କାଳରୁହିଁ ଏପରି ଔଷଧ ସବୁ ଦିଆଗଲା, ଯଦ୍ୱାରା ତାର ଶରୀର ସୁଗୋଲ, କ୍ଷୀଣ, କୋମଳ ହୋଇ କଣ୍ଠ ମଧୁର ଏବଂ ସ୍ୱେଦ ଓ ଶ୍ୱାସ ପର୍ଯ୍ୟନ୍ତ ସୁବାସିତ ହୋଇଉଠିଲା । କେବଳ ତାକୁ ଭର୍ତ୍ସନା କରାଯାଉଥିଲା ଖଟା-ମରିଚ ନ ଖାଇବା ପାଇଁ, ନିୟମିତ ଅଙ୍ଗପ୍ରଲେପନ ନ କରିବା ଅଥବା ଅଙ୍ଗ ଓ ବାଣୀର ଅସଂଯମ କରିବାରେ । ତାଡ଼ନା କେବଳ ସଂଗୀତ ଓ ନୃତ୍ୟର ତାଳଭଙ୍ଗ କରିବାରେ ଦିଆ ଯାଉଥିଲା । ଏଇ ତାଡ଼ନାରେ ମଧ ଧ୍ୟାନ ରଖା ଯାଉଥିଲା ଯେ ଯତ୍ନରେ ପାଳିଥିବା ଦାସୀର ଶରୀର କୁରୂପ ହୋଇ ବିକୃତ ନ ହେବ ଯେମିତି । ହିତା ସାଧାରଣ ଦାସୀମାନଙ୍କ ତୁଳନାରେ ନିଜେ ନିଜକୁ ବୁଝିବା ବିନା ରହି ନ ଥିଲା ।

ଯେତେବେଳେ ହିତା ଷୋହଳ ବର୍ଷ ପୂରି ସତର ବର୍ଷରେ ପାଦ ରଖିଲା, ପରମଭଗବନ୍ତ ମହାରାଜାଧିରାଜ ମଗଧର ରାଜା ଚଣ୍ଡ ଅଶୋକଙ୍କ ଆକ୍ରମଣର କାରଣ ହେତୁ ରାଜଧାନୀଠାରୁ ଦୂରରେ ଯୁଦ୍ଧରେ ବ୍ୟସ୍ତ ଥିଲେ । ମହାରାଜା ବିଜୟୀ ହୋଇ କଳିଙ୍ଗ ଫେରିଲେ ମାତ୍ର ତାଙ୍କ ଶରୀର କ୍ଷତବିକ୍ଷତ ହୋଇଥିଲା । ମହାରାଜାଙ୍କ ବିନୋଦ ପାଇଁ ବିଶେଷ ଶିକ୍ଷିତ ହିତାକୁ ତାଙ୍କର ସେବା ପାଇଁ ପ୍ରସ୍ତୁତ କରାଗଲା । ମହାରାଜା ନିଜ ପୀଡ଼ା ଭୁଲିବା ପାଇଁ ବିନୋଦ ପ୍ରସଙ୍ଗକୁ ଇଚ୍ଛାକଲେ ମାତ୍ର ଶରୀର ହଲିଲେ କ୍ଷତସବୁର ପୀଡ଼ା ପାଇଁ ଅସମର୍ଥ ହୋଇ ଯାଉଥିଲେ । ମହାରାଜ ହିତାର ସାମିପ୍ୟରେ କୌଣସିରକମର ସନ୍ତୋଷ ଅଥବା ବିନୋଦ ପାଇ ପାରୁ ନ ଥିଲେ । ହିତା ସେବାରେ ପ୍ରସ୍ତୁତ ହୋଇ ସଂଭ୍ରମରେ ମହାରାଜାଙ୍କ ସଂକେତ ଏବଂ ଆଦେଶର ପ୍ରତୀକ୍ଷାରେ ଛିଡ଼ା ରହି ରହି ଥକି ଯାଉଥିଲା ।

ମହାରାଜ ବିଳାସରେ ନିଜ ପୀଡ଼ାକୁ ଭୁଲି ନ ପାରିଲେ ଅଥବା ବିନୋଦରେ ସମର୍ଥ ହେଲେ ପୀଡ଼ାରୁ ଧ୍ୟାନ ଅଲଗା କରିବା ପାଇଁ ଯୁଦ୍ଧରେ ବିଜୟଶ୍ରୀ ଦେଇଥିବା ନିଜ ଶିଶୁକନ୍ୟାକୁ ଶ୍ରଦ୍ଧାରେ ଶଯ୍ୟା ସମୀପକୁ ଡକାଇ ଅଣାଉଥିଲେ । ହିତା

ଅମିତାକୁ କାଖେଇ ଆଣି ରାଜାଙ୍କ ବିଛଣା ନିକଟରେ ଛିଡ଼ାହୁଏ । ବାଳିକାକୁ ହିତାର ଅଙ୍ଗର ସ୍ପର୍ଶ ଏବଂ ହିତାର ରୂପ ଏତେ ସୁଖଦ ଅନୁଭବ ହୁଏ ଯେ ବାଳିକା ତା କୋଳକୁ ଯାଇ ପ୍ରସନ୍ନ ହୋଇ କୁରୁଳି ଉଠେ ଓ ତା' କୋଳ ଛାଡ଼ିବାକୁ ଚାହେଁନି । ବିଳାସରେ ଅସମର୍ଥ ମହାରାଜ ଲାବଣ୍ୟମୟୀ ଦାସୀ ହିତା କୋଳରେ ନିଜ ସନ୍ତାନକୁ ସନ୍ତୁଷ୍ଟ ଦେଖି ସନ୍ତୋଷ ପାଆନ୍ତି । ହିତା ମହାରାଜାଙ୍କୁ ଅନ୍ୟ କୌଣସି ପ୍ରକାର ପ୍ରସନ୍ନ କରିବାର ଅବସର ନ ପାଇବା ହେତୁ ବାଳିକାକୁ ସନ୍ତୁଷ୍ଟ କରି ନିଜ କର୍ତ୍ତବ୍ୟ ନିର୍ବାହ କରୁଥିଲା ।

ମହାରାଜାଙ୍କ ସ୍ୱର୍ଗାରୋହଣ ପରେ ମହାରାଣୀ ନନ୍ଦାଙ୍କ ଆଦେଶ ହେତୁ ମହାରାଜାଙ୍କର ବିଶେଷ ସେବା ପାଇଁ ସୁରକ୍ଷିତ ଦାସୀମାନଙ୍କୁ ରାଜବଂଶର ନିକଟ ସମ୍ବନ୍ଧି ସାମନ୍ତମାନଙ୍କୁ ଭେଟି ଦିଆଯାଇଥିଲା । ହିତା ଏବଂ ତାର ପ୍ରୌଢ଼ା ମା'କୁ ମହାରାଣୀ ଆଦେଶ ଅନୁସାରେ ଯୁବରାଜ୍ଞୀ ଅମିତାଙ୍କର ବିଶେଷ ପରିଚର୍ଯ୍ୟା ପାଇଁ ନିଯୁକ୍ତ କରାଯାଇଥିଲା ।

ରାଜପ୍ରାସାଦର ଅଗଣାମାନଙ୍କରେ ରହୁଥିବା ଅନେକ ରାଜବଂଶଜ ପୁରୁଷମାନଙ୍କର ହିତା ପରି ସୁସ୍ଥ, ସୁନ୍ଦର, ସୁଶିକ୍ଷିତା ଦାସୀର ସେବା ପାଇବାକୁ ପ୍ରବଳ ଲୋଭ ଥିଲା । ସେମାନେ ହିତାକୁ ନିଜ ସେବା ପାଇଁ ନେବାକୁ ଅନେକ ଅଭିସନ୍ଧି ସବୁ କଲେ, ମାତ୍ର ମହାରାଣୀଙ୍କ ଆଦେଶ ଏବଂ ରାଜପ୍ରାସାଦର ପ୍ରବନ୍ଧ, କର୍ମାନ୍ତାଧିଷ୍ଠାୟକ ପ୍ରୌଢ଼ ସାମନ୍ତ ପ୍ରତାପଙ୍କ ସତର୍କତାର କାରଣ ହେତୁ ସେମାନେ ସଫଳ ହୋଇ ପାରି ନ ଥିଲେ ।

ହିତା କୌଣସି କାର୍ଯ୍ୟ କାରଣବଶତଃ ପ୍ରାସାଦ ବାହାର ଅଗଣାକୁ ଯାଇଥିଲା । ସେ କାହାରିକୁ ଲକ୍ଷ୍ୟ ନ କରି ମୁଣ୍ଡ ନଇଁ ଚୁପ୍‌ଚାପ୍ ଚାଲିଯାଉଥିଲା । ମହାରାଜାଙ୍କ ପିତୃବ୍ୟ ରାଜବଂଶୀ ସାମନ୍ତଙ୍କର ଯୁବକ ପୁତ୍ର ହିତାକୁ ଅଭିମାନର ଦଣ୍ଡ ଦେବାପାଇଁ ଡାକିଲା । ହିତା ଅସହାୟ ହୋଇ ପାଟିକଲା । ଭାଗ୍ୟକୁ ପ୍ରାସାଦର ପ୍ରାବନ୍ଧିକ ଯୂଥପ ପ୍ରତାପ ନିକଟରେ ଥିଲେ । ଯୂଥପ ଘଟଣାସ୍ଥଳରେ ପହଞ୍ଚି ହିତାର ରକ୍ଷାକଲେ ଏବଂ ଭବିଷ୍ୟତ ପାଇଁ ବିଶେଷ ଆଦେଶ ଦେଲେ ଯେ ହିତା ମହାରାଣୀଙ୍କର ଅନ୍ତରଙ୍ଗ ଦାସୀ ହୋଇଥିବା କାରଣରୁ ରାଜ୍ୟାଦେଶ ହେତୁ ସୁରକ୍ଷିତା ଏବଂ ବିଳାସନୀୟା ନୁହେଁ । ଯେତେବେଳେ ବି ସେ ରାଜକାର୍ଯ୍ୟ ପାଇଁ ଅନ୍ତଃପୁରର ଦ୍ୱାରରୁ ବାହାରକୁ ଯିବ, ଅନ୍ତଃପୁରର ଜଣେ ସଶସ୍ତ୍ର ପ୍ରହରୀ ତାର ରକ୍ଷାପାଇଁ ତା ସାଙ୍ଗରେ ରହିବେ । ହିତା ତାର ଯୌବନ ଏବଂ ରୂପର କମନୀୟତା ନେଇ ହୃଦୟରେ ଗର୍ବ କରୁଥିଲା, କିନ୍ତୁ ଆଶଙ୍କାରେ ମଧ୍ୟ ତା ହୃଦୟ ଧଡ଼କୁଥିଲା ।

ନିଜ ଅନୁଭବରେ ତା ମନଭିତରେ ପୁରୁଷଙ୍କ ପ୍ରତି ବିରକ୍ତି ଓ ଭୟ ଭରି ଯାଉଥିଲା ।

ହିତା ପିଲାବେଳରୁ ହିଁ ଜାଣିଥିଲା ଯେ ସେ ରାଜାଙ୍କର ବିଶେଷ ଦାସୀ ଥିଲା । ପ୍ରାସାଦରେ ଅନ୍ୟ ଅନେକ ଏପରି ଦାସୀ ଥିଲେ, ଯେଉଁମାନଙ୍କର ପାଳନ ପ୍ରାସାଦରେ ମହାରାଜାଙ୍କ ବିନୋଦ-ବିଳାସ ପାଇଁ ହୋଇଥିଲା ମାତ୍ର ତାଙ୍କ ଆୟୁ ଅଧିକ ହୋଇଯାଇଥିବାରୁ କିମ୍ବା ଅନ୍ୟ ବିଳାସ ଦାସୀମାନଙ୍କର ଯୌବନ ପ୍ରାପ୍ତି ହେତୁ ସେମାନଙ୍କୁ ରାଜବଂଶୀ ଲୋକଙ୍କୁ ସମର୍ପି ଦିଆ ଯାଇଥିଲା ବା ଅନ୍ୟ ସେବାରେ ଲଗାଇ ଦିଆଯାଇଥିଲା । ହିତା ଜାଣୁଥିଲା ଯେ ସେହି କଥା ତା ପାଇଁକି ମଧ୍ୟ ଲାଗୁ ହେବ । ଯେମିତି ଅନ୍ୟ ସେବା ସବୁ ପାଇଁ ଅନ୍ୟ ଦାସ-ଦାସୀ ଥିଲେ, ମହାରାଜାଙ୍କ ବିଶେଷ ରଥ, ହାତୀ, ଘୋଡ଼ା ଏବଂ ଶିକାର ପାଇଁ କୁକୁର ଥିଲେ, ସେହିପରି ବିନୋଦ ସେବା ପାଇଁ ଅନ୍ୟ ଦାସୀଗଣଙ୍କ ସହିତ ସେ ମଧ୍ୟ ଥିଲା । ତାକୁ ବିଳାସ-ବିନୋଦର ମର୍ମବିଷୟକ ଶିକ୍ଷା ଦିଆଯାଇଥିଲା, କିନ୍ତୁ ଅନ୍ୟ ଦାସୀଙ୍କ ଠାରୁ ସେ ସେଇ ଧରଣର ରହସ୍ୟ ପ୍ରସଙ୍ଗ ଶୁଣିଲେ ମଧ୍ୟ ତାକୁ ସେମାନଙ୍କ ପରି ଇଚ୍ଛା ହେଉ ନ ଥିଲା; କାହିଁକି ନା ବିନୋଦ-ବିହାର ତ ତା ପାଇଁ ନିର୍ଦ୍ଦିଷ୍ଟ ଶ୍ରମର ଭାର ମାତ୍ର ଥିଲା ।

ମହାରାଜାଙ୍କ ସ୍ୱର୍ଗାରୋହଣ ପରେ ହିତାକୁ ଆତଙ୍କ ଅନୁଭବ ହେଲା ଯେ ଏବେ ତାକୁ ଅନ୍ୟମାନଙ୍କର ବିନୋଦ-ବିହାରର ପୀଡ଼ାଜନକ ଭାର ଉଠାଇବାକୁ ପଡ଼ିବ । ମହାରାଜାଙ୍କ ଜୀବନକାଳରେ ତ ହିତା ତାଙ୍କ ପ୍ରତି ଭୟ ଏବଂ ଆଦର ହିଁ ଅନୁଭବ କରୁଥିଲା, ମାତ୍ର ବର୍ତ୍ତମାନ ନୂଆ ସଂକଟର ଆଶଙ୍କାରେ ତାଙ୍କୁ ସେ ଭକ୍ତିରେ ସ୍ମରଣ କରେ । ମହାରାଣୀ ଯୁବରାଜ୍ଞୀଙ୍କର ହିତା ସହିତ ଭାବ ଦେଖି ତାକୁ ଆପଣାର କରି ନେଇଥିଲେ ଏବଂ ଅନ୍ୟ ଲୋକମାନଙ୍କ ଅପ୍ରୀତିକର ସେବାର ଭୟରୁ ତାକୁ ମୁକ୍ତି ଦେଇଥିଲେ । ଅଭୟ ହୋଇ ହିତା ସନ୍ତୁଷ୍ଟ ଥିଲା, ମାତ୍ର ଅନ୍ୟ ଦାସୀମାନଙ୍କ ସହିତ ପୁରୁଷ ସଙ୍ଗ ବିଶେଷ ବ୍ୟବହାରର କଥା ଶୁଣି କିଛିଟା ଅଭାବ ଅନୁଭବ ହେଉଥିଲା, କ'ଣ ସେ ଜୀବନଟା ସାରା ତ୍ରସ୍ତ ଓ ବଞ୍ଚିତା ରହିବ ! କିନ୍ତୁ ଏଇ ଅଭାବ ଅପେକ୍ଷା କ୍ରୂର ଲୋକଙ୍କ ସେବାରେ ତିଷ୍ଠି ରହିବା ପୀଡ଼ାର ଆଶଙ୍କା ଅଧିକ ଥିଲା, ତେଣୁ ହିତା ଯୁବରାଜ୍ଞୀଙ୍କର ବିଶେଷ ପରିଚର୍ଯ୍ୟା ଦାସୀ ଭାବରେ ରହିବାର ଗୌରବ ପାଇ ବେଶ୍ ସନ୍ତୁଷ୍ଟ ଥିଲା ।

ମହାରାଜାଙ୍କର ସ୍ୱର୍ଗବାସ ହେବା ପରେ ପରମଭଗବତୀ କଳିଙ୍ଗର ରାଜେଶ୍ୱରୀ ତଥାଗତଙ୍କ ଧର୍ମର ଶରଣ ନେଇ ଉପାସିକା ହୋଇଯାଇଥିଲେ । ସେ ତଥାଗତଙ୍କ ଧାତୁପାତ୍ରର ପ୍ରତିଷ୍ଠା ପାଇଁ ଅନ୍ତଃପୁରର ଉଦ୍ୟାନରେ ଏକ ମନ୍ଦିର ତିଆରି ପାଇଁ

ଆଦେଶ ଦେଇ ସାରିଥିଲେ । ଏହି ମନ୍ଦିରରେ ବେଦୀର ନିର୍ମାଣ ଏବଂ ଭିତ୍ତିର ସଜ୍ଜୀକରଣ ପାଇଁ ବ୍ୟାପାରୀ ଜେଟ୍ଟକ ବିଟ୍‌ଠଲଙ୍କୁ ଦାୟିତ୍ୱ ଦିଆ ଯାଇଥିଲା । ବିଟ୍‌ଠଲ ମନ୍ଦିରରେ ଚିତ୍ର ଏବଂ ଶୃଙ୍ଗାର ପାଇଁ ଯୁବକ କଳାକାର ଦାସ ମୋଦକୁ ପ୍ରାସାଦକୁ ପଠେଇଥିଲେ । ଯେତେବେଳେ କଳାକାର ମନ୍ଦିରର ବେଦୀ ଏବଂ ତୋରଣରେ ମୂର୍ତ୍ତିସବୁ ଓ ଲତାଗୁଡ଼ିକକୁ ଉତ୍କୀର୍ଣ୍ଣ କରିବା ଉଦ୍ଦେଶ୍ୟରେ ତାର ଉପକରଣ ସବୁ ନେଇ ବ୍ୟସ୍ତ ରୁହନ୍ତି, ଯୁବରାଜ୍ଞୀ ତାର ଖନ୍-ଖନ୍ ଶବ୍ଦରେ ଆକର୍ଷିତ ହୋଇ ଚାଲିଆସନ୍ତି । ହିତା ତାଙ୍କ ନିକଟରେ ଥାଏ ।

ଚିତ୍ରକର ଏବଂ ତକ୍ଷକ ମୋଦ ଦଳା ହୋଇଥିବା ମାଟି ନେଇ କୁକୁର, ଘୋଡ଼ା, ସିଂହ ଅଥବା ମନୁଷ୍ୟର ମୁହଁ ତିଆରିଦିଏ । ବାଳିକା ଅମିତା ବିସ୍ମୟ-ବିସ୍ଫାରିତ ନେତ୍ରରେ ଏହି ଚମତ୍କାରିତାକୁ ଦେଖନ୍ତି, ଯୁବରାଜ୍ଞୀଙ୍କର ଆନନ୍ଦ ଓ ବିନୋଦର ସୀମା ରହେ ନାହିଁ । ସେ ଉତ୍ସାହରେ ପ୍ରାୟ ସବୁଦିନ ସେ ମୂର୍ତ୍ତିକାର ମୋଦ ନିକଟରେ ପହଞ୍ଚିଯାଆନ୍ତି ଏବଂ ତାଙ୍କ ସାଙ୍ଗରେ ହିତା ମଧ୍ୟ । ହିତାକୁ ମଧ୍ୟ ଏ ଖେଳରେ ରୁଚି ଥିଲା । ହିତାକୁ ସୁନ୍ଦର ବସ୍ତୁଗୁଡ଼ିକର ଶ୍ରଦ୍ଧା ଥିଲା । ତାର କୋମଳ ଅଙ୍ଗୁଳିସବୁରେ ଲଘୁତା ମଧ୍ୟ ଥିଲା । ତାର ପ୍ରାସାଦରେ ଚିତ୍ରାଙ୍କନ ଏବଂ ଭୂମିରେ ସବୁଠୁଁ ସୁନ୍ଦର ଆଲପନା ଓ ଚିତ୍ରାଙ୍କନ ପାଇଁ ମଧ୍ୟ ସେ ମହାରାଣୀଙ୍କର ପ୍ରିୟ ଥିଲା ।

ମନ୍ଦିରରେ ଖେଳନା ତିଆରି କରି ମୋଦ ଅମିତାକୁ ବାହୁଲେଇ ରହିଥିଲେ, ପ୍ରୌଢ଼ା ବାପୀ ଏବଂ ବୃଦ୍ଧା କଞ୍ଚୁକୀ ଉଦ୍ଦାଳ, ମନ୍ଦିର ବାହାର ବେଢ଼ା ଦ୍ୱାରରେ କିମ୍ବା ପାଖରେ ଗଛ ମୂଳରେ ଭରା ଦେଇ ବିଶ୍ରାମ କରନ୍ତି । ହିତା ଯୁବରାଜ୍ଞୀଙ୍କ ପାଖରେ ଛିଡ଼ାହୋଇ ମୋଦର କଳା କୌଶଳ ଦେଖୁଥାଏ ।

ମୋଦ ପୂର୍ଣ୍ଣ ଯୌବନରେ ପାଦ ଦେଇଥିଲା । ଆରମ୍ଭରେ ହିତାକୁ ତା ପ୍ରତି ସଂକୋଚ ଓ ଶଙ୍କା ଅନୁଭବ ହୋଇଥିଲା । ଆସ୍ତେ ଆସ୍ତେ ଆଶଙ୍କା ଦୂର ହେବାକୁ ବସିଲା ଏବଂ ସଂକୋଚରେ ମାଧୁର୍ଯ୍ୟର ଭାବ ଆସିବାକୁ ଲାଗିଲା । କେବେ କେବେ ଅମିତା ଅନ୍ୟ ଖେଳରେ ଲାଗିଯାଇ ମୋଦ ପାଖରେ ନୂଆ ଖେଳନା ତିଆରିବା ଯଦି ଭୁଲିଯାଏ, ତେବେ ହିତା ତାକୁ ନିଜେ ମନେପକାଇ ଦେଇ ମନ୍ଦିରକୁ ତାହା ନିକଟକୁ ନେଇଯାଏ ।

କାରିଗର ଖେଳନା ତିଆରିଲାବେଳେ ଆଖି ନୁଆଁଇ ନେଲେ ହିତାର ଦୃଷ୍ଟି ତା ଉପରେ ଲାଖି ରହେ କିନ୍ତୁ ଚାରିଆଖି ହୋଇଗଲେ ହଠାତ୍ ହିତାର ଆଖି ନଇଁଯାଏ । କିଛି ସମୟ ପରେ ହିତା ଓ କାରିଗର ପରସ୍ପର ଚାରିଚକ୍ଷୁର ମିଳନ ହୋଇଗଲେ ଆଉ ଆଖି ଫେରାଇ ନେବା ଭୁଲିଗଲେଣି । ରାଜକୁମାରୀ

ଉଭୟଙ୍କ ମଧ୍ୟରେ ଖେଳିବାରେ ମଗ୍ନ ଥିବାବେଳେ ସେମାନେ ଦୁହେଁ ଜଣେ ଜଣକ ଆଖିରେ ହଜିଯାଆନ୍ତି । ହିତା କାରିଗର ପାଇଁ ଏତେ ଅଧୀର ହୋଇଯାଏ ଯେ ଯୁବରାଜ୍ଞୀଙ୍କ ମଧ୍ୟାହ୍ନ ଆହାର ପରେ ଶୋଇବା ବେଳେ ଚୁପ୍‌ଚାପ୍ ସମସ୍ତଙ୍କ ଆଖିରୁ ବଞ୍ଚି ଯୁବରାଜ୍ଞୀଙ୍କ ପାଇଁ କାରିଗର ଠାରୁ ଖେଳନା ତିଆରି କରେଇ ନବାକୁ ମିଛରେ ପହଞ୍ଚିଯାଏ । ଦାସୀ ଓ ଯବନୀ ସବୁଙ୍କ ଭିତରେ ଏଇ କାଣ୍ଡର ଚର୍ଚ୍ଚା ହେବାକୁ ଲାଗିଲା କିନ୍ତୁ ହିତା ରହି ପାରୁ ନ ଥିଲା । ବାପୀ ଏ ସବୁ ଦେଖି ଝିଅପାଇଁ ପ୍ରମାଦ ଗଣୁଥାଏ ।

କାରିଗରର ଶରୀର ଓ ବର୍ଣ୍ଣ କଳିଙ୍ଗର ସାମାନ୍ୟ ଲୋକଙ୍କଠାରୁ ଭିନ୍ନ ଥିଲା । ତାର ଶରୀର ଉଚ୍ଚ ଏବଂ କାନ୍ଧ ପ୍ରଶସ୍ତ ଥିଲା । ବର୍ଣ୍ଣ ଶ୍ୟାମଳ ନ ଥିଲା । ଜନ୍ମ ଶୁରସେନ ଦେଶରେ ହୋଇଥିଲା । ସେଠାରେ ସେ ଶିଳ୍ପ ଓ କଳା ଶିକ୍ଷା କରିଥିଲା । ଶିଳ୍ପୀର କଳାକାର ପିତା ନିଜ ଋଣ ପରିଶୋଧ କରିବାପାଇଁ ପୁତ୍ରକୁ ଶୁରସେନର ମୂର୍ତ୍ତି ବେପାରୀ ଜେଠକ୍ ଚିତ୍ରରଥଙ୍କ ପାଖରେ ବନ୍ଧକ ରଖି ଦେଇଥିଲେ ।

କଳିଙ୍ଗ କଳାବସ୍ତୁର ବେପାରୀ ବିଟ୍‌ଠଳ ଶୁରସେନ ଯାଇଥିଲେ । .... ସେତେବେଳେ ଚିତ୍ରରଥ ଆର୍ଥିକ ଅଭାବରେ ପଡ଼ିଥିଲେ । ବିଟ୍‌ଠଳ ଧନରେ ଚିତ୍ରରଥଙ୍କ ସହାୟତା କରିଥିଲେ ଏବଂ କାରିଗରଙ୍କ ହସ୍ତକୌଶଳ ଏବଂ ପ୍ରତିଭା ଦେଖି ଋଣ ପାଇଁ ବନ୍ଧକି ରଖିନେଲେ । କାରିଗର ଦଶବର୍ଷ ପାଇଁ ବିଟ୍‌ଠଳଙ୍କର ସଂପତ୍ତି ଭାବରେ ରହି ମଧ୍ୟ ଦୁଃଖୀ ଅବସ୍ଥାରେ ନ ଥିଲା ।

ବିଟ୍‌ଠଳ କାରିଗର ଠାରୁ ଅଧିକ ଶ୍ରମ କରେଇ ଲାଭ ଉଠେଇ ପାରୁ ନ ଥିଲେ । କାରିଗରଙ୍କ କଳାତ୍ମକ ଗୁଣ ଶକ୍ତିର ପ୍ରୟୋଗ ଦ୍ୱାରା କାଢ଼ି ନିଆଯାଇ ପାରୁ ନ ଥିଲା । ସେଥିରେ ମୋଦର ସହଯୋଗ ଏବଂ ରୁଚି ମଧ୍ୟ ଆବଶ୍ୟକ ଥିଲା । ପ୍ରାସାଦରେ ନୂଆ ମନ୍ଦିରର ଶୃଙ୍ଗାରରେ କାରିଗର ବିଶେଷ ରୁଚି ଏବଂ ଉତ୍ସାହ ସହିତ କାମ କରୁଥିଲେ ମାତ୍ର ଏତେ ମନ୍ଥର ଗତିରେ, ଭାବିନିଅ ଯେପରି ସେ ସେକାର୍ଯ୍ୟକୁ ସମାପ୍ତ କରିବାକୁ ଚାହୁଁ ନ ଥିଲେ ।

ଯୁବରାଜ୍ଞୀ ଅମିତା ଯେତେବେଳେ ଚାରି ବର୍ଷର ଥିଲେ, ଦୈବ ଯୋଗକୁ ତାଙ୍କ ଶୀତଳାଙ୍କର ପ୍ରକୋପ ଦେଖା ଦେଇଥିଲା । ରୋଗରେ ବ୍ୟାକୁଳ ଅମିତା ହିତାର କୋଳ କୌଣସି ସମୟରେ ଛାଡ଼ିବାକୁ ଚାହୁ ନ ଥିଲେ । ଯୁବରାଜ୍ଞୀ ଜ୍ୱରରେ ମୂର୍ଚ୍ଛିତ ହୋଇଗଲାବେଳେ ମଧ୍ୟ ହିତା ତାଙ୍କୁ କୋଳରୁ ଅଲଗା କରୁ ନ ଥିଲା ।

ଯୁବରାଜ୍ଞୀ ସ୍ୱାସ୍ଥ୍ୟଲାଭ କଲା ପରେ ମହାରାଣୀ ଦେବକୃପା ପାଇଁ ଅପରିମିତ ଦାନ ଦେଲେ । ସହସ୍ର-ସହସ୍ର ବ୍ରାହ୍ମଣ ଓ ଶ୍ରମଣଙ୍କୁ ଭୋଜନ-ବସ୍ତ୍ରରେ ସନ୍ତୁଷ୍ଟ

କରିଥିଲେ । ସେ ରାଜପ୍ରାସାଦର ଏକାବନ ଦାସଙ୍କୁ ମୁକ୍ତକରି ନାଗରିକ କରିଦେଲେ ଏବଂ ଅନ୍ୟ ଏକାବନ ଦାସଙ୍କୁ କିଣି ସେମାନଙ୍କୁ ମୁକ୍ତିଦାନ କରି ପୁଣ୍ୟ ନେଲେ ।

ମହାରାଣୀ ହିତାକୁ ସମ୍ବୋଧନ କଲେ– "ତୋତେ କ'ଣ ଦେବି ? ମୁଁ ତୋର ଋଣୀ । ତୁ ଦାସୀ ଅଟୁ । ତୋତେ ସ୍ୱର୍ଣ୍ଣ ଦେବି ଯଦି ତୁ ଲଗେଇ ପାରିବୁନି । ମୁଁ ସର୍ବପ୍ରଥମ ତୋତେ ହିଁ ମୁକ୍ତି ଦେଇଥାନ୍ତି କିନ୍ତୁ ତୁ ସ୍ତ୍ରୀ (ଅବଳା) । ସ୍ତ୍ରୀର ସ୍ୱତନ୍ତ୍ର ହେବା ଦୋଷ । ସେ ପତ୍ନୀ କିମ୍ବା ଦାସୀ ହୋଇଥାଏ । କୌଣସି ନାଗରିକ ତୋତେ ବରଣ କରିବାକୁ ଚାହାନ୍ତି ବା ସ୍ୱତନ୍ତ୍ର ନାରୀ ହେବାକୁ ଚାହୁଁ ଯଦି ମୁଁ ତୋତେ ମୁକ୍ତ କରିଦେବି । ତୁ ଯେତେବେଳେ ଚାହିଁବୁ ମୋତେ ବରଦାନ ମାଗିବୁ ।"

ହିତା ମହାରାଣୀଙ୍କ ସମ୍ମୁଖରେ ନତମସ୍ତକ ହୋଇ କୃପା ପାଇଁ କୃତଜ୍ଞତାର ଅଶ୍ରୁ ବୁହାଇ ଦେଇଥିଲା । ହିତା ଏକାନ୍ତରେ ଭାବେ– ଯଦି କାରିଗର ଦାସ ହୋଇ ନ ଥାଆନ୍ତା ତାହେଲେ ସେ ମହାରାଣୀଙ୍କ ଠାରୁ ମୁକ୍ତିର ବରଦାନ ମାଗି ନିଅନ୍ତା କିନ୍ତୁ କାରିଗର ତ ଅନ୍ୟର ଦାସ ଥିଲା । ସେ ହିତାର ସ୍ୱାମୀ କିପରି ହୋଇ ପାରିଥାଆନ୍ତା । ଏବେ ଆହୁରି ତିନି ବର୍ଷ କାରିଗରର ଶରୀର ତ ତାର ସ୍ୱାମୀଙ୍କର ।

ହିତା କଳ୍ପନା କରେ– ଯୁବରାଜ୍ଞୀଙ୍କର ରାଜ୍ୟାଭିଷେକ ସମୟରେ ମହାରାଣୀ ତାକୁ କିଛି ମାଗିବାକୁ କହିବେ ଯଦି ସେ ତାଙ୍କ ଚରଣରେ ମୁଣ୍ଡନୋଇଁ ଦୁଇଟି ବର ମାଗିବ– ଅନ୍ନଦାତା, ମୂର୍ତ୍ତିତକ୍ଷକ କାରିଗରକୁ କ୍ରୟକରି ମୁକ୍ତି ଦେବାକୁ କୃପା କରନ୍ତୁ ଏବଂ ଦାସୀକୁ ମଧ୍ୟ । ଏବେ ତ ଯୁବରାଜ୍ଞୀଙ୍କ ଅଭିଷେକରେ ଅନେକ ବର୍ଷ ଅଛି । ହୃଦୟରେ ଏତେ ଦୀର୍ଘ ଦିନର ପ୍ରତୀକ୍ଷାର ବୋଝ ନେଇ ହିତା ଦୀର୍ଘନିଶ୍ୱାସ ନେଇ ରହିଯାଏ ।

ମୋଦ ଚାରିଦିନ ହେବ ଅନ୍ତଃପୁର ମନ୍ଦିରକୁ ଆସି ନ ଥିଲା । ହିତା ମନକୁ କୌଣସି ପ୍ରକାରେ ବଶ କରି ନ ପାରିବାରୁ ଶାନ୍ତି ପାଇବା ପାଇଁ କଞ୍ଚୁକୀକୁ ନେଇ ଜେଟ୍‌ଠକ ବିଟ୍‌ଠଲଙ୍କର କାରଖାନାରେ ଯୁବରାଜ୍ଞୀଙ୍କ ପାଇଁ କଣ୍ଢେଇ ଆଣିବା ଉଦ୍ଦେଶ୍ୟରେ ପହଞ୍ଚିଲା ।

ନଗରରେ ମହାବଳି ଯଜ୍ଞର ସମାରୋହର ଆୟୋଜନ ଚାଲିଥାଏ । ଜେଟ୍‌ଠକ ବିଟ୍‌ଠଲଙ୍କର ଅନ୍ୟ କଳାକାର କର୍ମୀସବୁ ଯଜ୍ଞର ବଳିବେଦୀ ଅଥବା ଅନ୍ୟସ୍ଥାନମାନଙ୍କରେ ଯେଉଁ ତୋରଣ ନିର୍ମିତ ହେବାର ଥିଲା, ନଗରପାଳ ସେମାନଙ୍କ ଉପରେ ସନ୍ତୁଷ୍ଟ ନ ଥିଲେ । ବିଟ୍‌ଠଲ ମୋଦକୁ ତୋରଣ ତିଆରି ପାଇଁ ରଖିନେଇଥିଲେ । ହିତା ପାଇଁ କାରିଗରକୁ କେଇଦିନ ନ ଦେଖି ରହିବାଟା ଅସହ୍ୟ ପୀଡ଼ାପ୍ରଦ ଥିଲା ।

# ମହାବଳି ଯଜ୍ଞ

ଭାରତର ଅନ୍ୟ ରାଜ୍ୟମାନଙ୍କ ପରି କଳିଙ୍ଗରେ ମଧ୍ୟ ଯଜ୍ଞ ପ୍ରଥା ପ୍ରାୟ ଲୋପ ପାଇଯାଇଥିଲା । ଯଜ୍ଞସବୁର ବାସ୍ତବିକ ପ୍ରୟୋଜନ କୁଳମାନଙ୍କ ଦ୍ୱାରା ସାମୂହିକ କୃଷି ଅଥବା ଅନ୍ୟ ବ୍ୟବସାୟ କରିବାର ପ୍ରଣାଳୀ, କେତେ ଶତାବ୍ଦୀ ପୂର୍ବରୁ ହିଁ ସମାପ୍ତ ହୋଇ ସାରିଥିଲା । ଯଜ୍ଞ ବା ବଳିପ୍ରଥା ଦେବତାମାନଙ୍କର କୃପା ଅଥବା ପରଲୋକ କାମନା ପାଇଁ ହିଁ ଚାଲିଥିଲା । ତୀର୍ଥଙ୍କରମାନଙ୍କ ଜୀବଦୟା-ଧର୍ମର ଉପଦେଶରୁ ସଂପନ୍ନ ବୈଶ୍ୟବର୍ଗଙ୍କ ବଳି ପ୍ରଥାରେ ବିରକ୍ତି ମଧ୍ୟ ଆସୁଥିଲା । ପରିଣାମରେ ଯଜ୍ଞର ସମାରୋହମାନଙ୍କ ପାଇଁ ଅବସର ମଧ୍ୟ ରହୁ ନ ଥିଲା । ଦେବୀ-ଦେବତାଙ୍କ ପ୍ରତି ଆସ୍ଥା ରଖୁଥିବା ଲୋକେ ଦେବୀ-ଦେବତାଙ୍କ କୃପା ପାଇବା ଅଥବା ପରଲୋକର କାମନାରୁ ଯଦି ଯଜ୍ଞ ଏବଂ ବଳିର ଅନୁଷ୍ଠାନ କରୁଥିଲେ ତାହେଲେ ସେସବୁ ସାମାଜିକ ସମାରୋହ ନ ହୋଇ ବ୍ୟକ୍ତିଗତ ଏବଂ ପାରିବାରିକ ଅନୁଷ୍ଠାନ ମାତ୍ର ହେଉଥିଲା ।

ମଗଧସମ୍ରାଟ ଚଣ୍ଡ ଅଶୋକ ଅପରିମିତ ସୈନ୍ୟଦଳ ନେଇ କଳିଙ୍ଗ ଦିଗକୁ ବଢ଼ି ଆସୁଥିଲେ । କଳିଙ୍ଗର ମହାମାତ୍ୟ ଆଚାର୍ଯ୍ୟ ସୁକଣ୍ଠ ଏଇସବୁ ସମାଚାରରେ ବଡ଼ ଚିନ୍ତିତ ଥିଲେ । ସେ ଜାଣୁଥିଲେ ଯେ ଅଶୋକ ନିଜ ସାମ୍ରାଜ୍ୟର ରକ୍ଷା ଏବଂ ବିସ୍ତାର ପାଇଁ କଳିଙ୍ଗର ବିଜୟକୁ ଅନିବାର୍ଯ୍ୟ ମନେକରୁଥିଲେ । ଅଶୋକଙ୍କର ଆଶଙ୍କା ଥିଲା, କଳିଙ୍ଗ ଯଦି ମଗଧ ସମ୍ରାଟର ଅଧୀନତା ସ୍ୱୀକାର ନ କରିବ ତା'ହେଲେ ସାମ୍ରାଜ୍ୟର ଅଧୀନ ଅନ୍ୟ ରାଜ୍ୟ ମଧ୍ୟ ମଗଧରୁ ସ୍ୱତନ୍ତ୍ର ହେବାକୁ ଇଚ୍ଛା କରିବେ । ଏହି ଉଭୟ ମଧ୍ୟରୁ ଗୋଟିକର ନଷ୍ଟ ହେବାର ପ୍ରଶ୍ନ ଥିଲା । ଏଥିପାଇଁ ଏଥର ଅଶୋକ ଏତେ ବଡ଼ ସୈନ୍ୟଦଳ ନେଇ କଳିଙ୍ଗକୁ ଆକ୍ରମଣ ପାଇଁ ଆସୁଥିଲେ ଯେ କଳିଙ୍ଗର ଜଣେ-ଜଣେ ସୈନିକ ଯଦି ମଗଧର କୋଡ଼ିଏ କୋଡ଼ିଏ ସୈନିକମାନଙ୍କୁ ମାରି ମରନ୍ତି ତେବେ ମଧ୍ୟ ମଗଧର ସେନା ସଂଖ୍ୟା ଅଧିକ ହେବ ।

ମହାମାତ୍ୟ କଳିଙ୍ଗ ରକ୍ଷା ନିମନ୍ତେ ଆମରଣ ଯୁଦ୍ଧର ନିଶ୍ଚୟ କରିଥିଲେ । ତାଙ୍କ ନିର୍ଣ୍ଣୟ କେବଳ ଯୁଦ୍ଧରେ ଧରାଶାୟୀ ହୋଇ ଯିବାରେ ନୁହଁ, ବରଂ କଳିଙ୍ଗର ସ୍ୱତ୍ୱର ରକ୍ଷା କରିବା । ଏଥିପାଇଁ ସେ କେବଳ ରାଜ୍ୟର ସେନା ଉପରେ ହିଁ ନିର୍ଭର ନ କରି କଳିଙ୍ଗର ପ୍ରଜାମାନଙ୍କୁ ନିଜ ସ୍ୱତ୍ୱର ରକ୍ଷା ନିମନ୍ତେ ଆମରଣ

ଯୁଦ୍ଧର ଭାବନାରେ ଅନୁପ୍ରାଣିତ କରିଦେବାକୁ ଚାହୁଁଥିଲେ କିନ୍ତୁ ମହାମନ୍ତ୍ରୀ ନିଜ ପ୍ରଯତ୍ନରେ ବିଶେଷ ସଫଳତା ପାଇ ନ ଥିଲେ ।

ଚାରିବର୍ଷ ପୂର୍ବେ ଅଶୋକଙ୍କୁ ପରାଜିତ କରିବାପାଇଁ କଳିଙ୍ଗର ପ୍ରଜାବର୍ଗ ଯାହା ବଳି ଦେଇଥିଲେ, ସେହି ତ୍ରାସ ଏବେ ମଧ୍ୟ ପୂର୍ଣ୍ଣତଃ ମେଣ୍ଟିଯାଇ ନ ଥିଲା । ସେଇ ଯୁଦ୍ଧରେ ବିନାଶପ୍ରାପ୍ତ ଲୋକଙ୍କର ସ୍ମୃତିବିଶେଷ ଥିଲା ଏବଂ ଯୁଦ୍ଧରେ ପଙ୍ଗୁ ହୋଇଯାଇଥିବା ଲୋକସବୁ ନଗରର ରାସ୍ତା ଗଳିରେ ଦେଖିବାକୁ ମିଳୁଥିଲେ । କଳିଙ୍ଗ ବିସ୍ତୃତ ରାଜ୍ୟ ମଧ୍ୟରୁ ଉତ୍ତରଭାଗର ପ୍ରଜାସବୁ ଅଶୋକଙ୍କ ପ୍ରଥମ ଆକ୍ରମଣରେ ଅନେକ କ୍ଷତି ସହିଛନ୍ତି । ଅଶୋକଙ୍କ ପ୍ରଥମ ଆକ୍ରମଣରେ ବିସ୍ତୃତ କଳିଙ୍ଗ ରାଜ୍ୟର ଉତ୍ତରଭାଗରେ ଥିବା ପ୍ରଜାସବୁ ଅନେକ କ୍ଷତିଗ୍ରସ୍ତ ହୋଇଥିଲେ । ପୁନର୍ବାର ଆକ୍ରମଣର ସମାଚାର ପାଇ ସେମାନେ ସବୁ ଶରଣ ନେବା ଉଦ୍ଦେଶ୍ୟରେ ରାଜଧାନୀକୁ ଚାଲିଆସିଥିଲେ । ଏଇ ଭୟତ୍ରସ୍ତ ଲୋକଙ୍କ ପାଇଁ ରାଜଧାନୀରେ ଆତଙ୍କ ବଢ଼ି ଚାଲିଥିଲା । ସଂପ୍ରତି ଯୁଦ୍ଧରେ ଅଶୋକଙ୍କୁ ପରାସ୍ତ କରିବା ପାଇଁ ମହାରାଜଙ୍କର ଅଭାବ ହେତୁ ପ୍ରଜାବର୍ଗ ନିଜକୁ ଅନାଥ ମନେ କରୁଥିଲେ । ମହାରାଣୀଙ୍କ ଠାରୁ ପ୍ରଜା ଦୟାର ଆଶା କରି ପାରିଥିଲେ, ଶତ୍ରୁକୁ ପରାଜିତ କରିବା ପାଇଁ ପରାକ୍ରମ ଆବଶ୍ୟକ ଭିକ୍ଷା ନୁହଁ । ଯୁଦ୍ଧର ଆତଙ୍କ ଏବଂ ଆବଶ୍ୟକ ଦ୍ରବ୍ୟମାନଙ୍କର ଦରଦାମ ବୃଦ୍ଧି ନେଇ ନଗର ବିରୂପ ଓ ଶ୍ରୀହୀନ ହେବାରେ ଲାଗିଥାଏ । ସୁନାରୁପା, ବସ୍ତ୍ର ଅଳଙ୍କାର ବିକ୍ରୟ କରୁଥିବା ବଜାରରେ ଦୋକାନୀ ବସି ବସି ହାଇ ମାରି ମାରି ଯୁଦ୍ଧର ଆଶଙ୍କା ବିଷୟ ନେଇ କଥାବାର୍ତ୍ତା ଚଳେଇଥାଆନ୍ତି । ସଞ୍ଜବେଳେ ମଧ୍ୟ ବଜାରରେ ଫୁଲବାଲୀ ସ୍ତ୍ରୀମାନେ ଏବଂ କାପାଳିକସବୁ ଦେଖା ଯାଉଥିଲେ । ଏବେ କୋଳାହଳ କହିଲେ କେବଳ ଲୌହକାର ବଜାରରେ, ଯେଉଁଠି ବିଭିନ୍ନ ରକମର ଶସ୍ତ୍ର ତିଆରି ଏବଂ ଲୁହା ପିଟା ଚାଲିଥିଲା, ଧାତୁସବୁ ବାଜିବାର କର୍କଶ କୋଳାହଳ ଅଧରାତି ପର୍ଯ୍ୟନ୍ତ ରହୁଥିଲା ।

ତଥାଗତ ଧର୍ମ ସ୍ୱୀକାର କଲା ପରେ କଳିଙ୍ଗର ମହାରାଣୀ ଭିକ୍ଷୁମାନଙ୍କ ତଥା ସଂଘ ପ୍ରତି ଭକ୍ତିଭାବ ଆସି ଯାଇଥିବା ପ୍ରଭାବ ପ୍ରଜାଙ୍କ ମଧ୍ୟରେ ସ୍ପଷ୍ଟ ଥିଲା । ଭିକ୍ଷୁଙ୍କର ସଂଖ୍ୟା ନଗରରେ ବେଶ୍ ବଢ଼ି ଯାଇଥିଲା । ପ୍ରାତଃ, ଦ୍ୱିପ୍ରହର ଅଥବା କୌଣସି ସମୟରେ ପୀତବସ୍ତ୍ରଧାରୀ ଭିକ୍ଷୁ ନଗରରେ ଯହିଁତହିଁ ବୁଲି ବୁଲି ଭିକ୍ଷା ମାଗିବା ଅଥବା ଜୀବନ ମୁକ୍ତି ପାଇଁ ମାର୍ଗ ଦର୍ଶାଇ ଉପଦେଶ ଦେବାରେ ଲାଗିଥିଲେ । ଏବେ ନଗରବାସୀ ଆଗଭଳି ଭିକ୍ଷୁମାନଙ୍କୁ ଉପେକ୍ଷା କରୁ ନ ଥିଲେ, ତାଙ୍କୁ ମୁଣ୍ଡି କହି ପରିହାସରେ ହସୁଥିଲେ । ମହାରାଣୀଙ୍କର ପ୍ରଭାବ ହେତୁ ବର୍ତ୍ତମାନ ନାଗରିକ ଭିକ୍ଷୁଗଣଙ୍କର ଆଦର ସମ୍ମାନ ରାଜପୁରୁଷଙ୍କ

ସଦୃଶ କରୁଥିଲେ । ଜନସାଧାରଣ ଏବଂ ସୈନିକ ମଧ୍ୟ ଭିକ୍ଷୁଗଣଙ୍କୁ ଦେଖି ରାସ୍ତା ଦେଉଥିଲେ, ଆଦରରେ ହାତଯୋଡ଼ି ଛିଡ଼ା ରହି ମଥାନତ କରି ଦଣ୍ଡବତ କରୁଥିଲେ । ହାତରେ ମାଂସ, ମଦ୍ୟ କିମ୍ବା କୌଣସି ଅଶୋଭନ ପଦାର୍ଥ ଥିଲେ ଭିକ୍ଷୁଙ୍କର ଦୃଷ୍ଟିରୁ ଲୁଚାଇ ରଖୁଥିଲେ ।

ଭିକ୍ଷୁମାନଙ୍କର ଅସନ୍ତୋଷ ଭାଜନ୍ ନ ହେବା ଭୟରେ ପିପ୍ପଳ ବୃକ୍ଷମୂଳରେ କିମ୍ବା ଛକଜାଗାରେ ଆଉ ପଶୁ-ବଳି ଦିଆଯାଉ ନ ଥିଲା । ବଡ଼ ବଡ଼ ବ୍ରାହ୍ମଣ ଅଥବା କ୍ଷତ୍ରିୟ ସାମନ୍ତଙ୍କ ଛଡ଼ା ବଳିଦେବା ସାହସ ସାଧାରଣ ଜନସାଧାରଣଙ୍କ ନିଜ ନିଜ ଘରେ ମଧ୍ୟ ହେଉ ନ ଥିଲା । ଜନସାଧାରଣଙ୍କ ଜୀବନ ସଙ୍କଟମୟ ଜଣା ପଡୁଥିଲା ଏବଂ ଜୀବନ ସଂକଟ ବେଳେ ମୁକ୍ତିର ଉପାୟ ସ୍ୱରୂପ ସଂସାରରୁ ବୈରାଗ୍ୟ ଭାବ ଦେଖା ଦେଉଥିଲା । ଭିକ୍ଷୁମାନେ ହିଁ ସେମାନଙ୍କୁ ସର୍ବୋତ୍ତମ ସୁଖୀ ଏବଂ ଆଦରଣୀୟ ଜଣାପଡୁଥିଲେ । ଏଭଳି ଅବସ୍ଥାରେ ପ୍ରଜାଙ୍କ ଭିତରେ ଯୁଦ୍ଧ ପାଇଁ କ'ଣ ଉତ୍ସାହ ବା ସୈନିକ କର୍ତ୍ତବ୍ୟ ପ୍ରତି କ'ଣ ପ୍ରବୃତ୍ତି ହେବ ? ସେମାନେ ଯୁଦ୍ଧକୁ ଦୈବୀ ଆପତ୍ତି ଭାବିନେଇ ସେଥିରୁ ମୁକ୍ତି ପାଇଁ ଆଦିଦୈବିକ ଶକ୍ତି ଏବଂ ସିଦ୍ଧଜନଙ୍କର ଚମତ୍କାର ଆଉ ଆଶୀର୍ବାଦର ହିଁ ଭରସା କରି ବସିଥିଲେ ।

ମହାମାତ୍ୟ ପ୍ରଜାଙ୍କର ଏତାଦୃଶ ଚିନ୍ତା ଏବଂ ବ୍ୟବହାର ନେଇ ବଡ଼ ଚିନ୍ତିତ ଥିଲେ । ପ୍ରଜାଙ୍କୁ ଖଡ୍‌ଗ ଭୟ ଦେଖାଇ ଯୁଦ୍ଧପାଇଁ ଡାକରା ଦେବାରେ ଉଭୟ ଦିଗରୁ ଭୟଭୀତ ପ୍ରଜା ଆତ୍ମରକ୍ଷା ନିମନ୍ତେ କ'ଣ ଲଢ଼ିବେ ? ପ୍ରଜାଙ୍କ ଭିତରେ ଆତ୍ମବିଶ୍ୱାସ, ସାହସ ଏବଂ କଳିଙ୍ଗର ରାଜଶକ୍ତି ପ୍ରତି ଆସ୍ଥା ଉତ୍ପନ୍ନ କରିବାକୁ ଚାହୁଁଥିଲେ । ଏ ସବୁ ପ୍ରୟୋଜନରୁ ମହାମାତ୍ୟ ମହାସେନାପତି ଭଦ୍ରକୀର୍ତ୍ତିଙ୍କର ପରାମର୍ଶରେ କଳିଙ୍ଗକୁ ପ୍ରାଚୀନ ପରଂପରା ଅନୁସାରେ ଯୁଦ୍ଧରେ ଦେବତାଙ୍କର ସହାୟତା ପାଇବା ପାଇଁ ଦେବରାଜ ଇନ୍ଦ୍ର ଏବଂ ଦେବତାମାନଙ୍କର ସେନାପତି କାର୍ତ୍ତିକେୟଙ୍କ ପୂଜାପାଇଁ ଏହି ମହାନ 'ସଂଗ୍ରାମ-ବଳି-ଯଜ୍ଞ' ସମାରୋହ ଅନୁଷ୍ଠାନ ନିମନ୍ତେ ଘୋଷଣା କଲେ ।

ମହାବଳି ଯଜ୍ଞ କାର୍ତ୍ତିକ ମାସର ଶୁକ୍ଳା ଅଷ୍ଟମୀରୁ ନେଇ ପନ୍ଦର ଦିନ, ସେହି ମାସର କୃଷ୍ଣା ଅଷ୍ଟମୀ ପର୍ଯ୍ୟନ୍ତ ହେବାର ବ୍ୟବସ୍ଥା ଥିଲା । ସଂପୂର୍ଣ୍ଣ ସଂପନ୍ନ ପ୍ରଜାଙ୍କର ଏହି ବଳି ଯଜ୍ଞରେ ସହଯୋଗ ଦେବାର ଅନୁଶାସନ ଥିଲା । ପ୍ରତ୍ୟହ ଯଜ୍ଞର ଅନେକ ବେଦୀମାନଙ୍କରେ ସହସ୍ର ପଶୁବଳି ଦିଆଯାଇ ସମସ୍ତଙ୍କୁ ପ୍ରସାଦ ବାଣ୍ଟିବାର ଆଜ୍ଞା ଥିଲା ଏବଂ ସୂର୍ଯ୍ୟାସ୍ତରୁ ଅଧରାତ୍ରି ପର୍ଯ୍ୟନ୍ତ ଯଜ୍ଞର ବେଦୀମାନଙ୍କରେ ଢେର୍ ମଦ୍ୟପ୍ରସାଦ ମଧ୍ୟ ବାଣ୍ଟିବାର ବ୍ୟବସ୍ଥା ଥିଲା । ରାଜ୍ୟର ସମସ୍ତ ବାରାଙ୍ଗନା, ନର୍ତ୍ତକୀଗଣ, ବନ୍ଦୀଗଣ, ଚାରଣ ଏବଂ କାପାଳିକମାନଙ୍କୁ ଆଦେଶ ଥିଲା ଯେ

ଚାରିଛକଠାରେ ସେମାନେ ପ୍ରଜାଙ୍କୁ ସଙ୍ଗୀତ, ନୃତ୍ୟ ଏବଂ ବିନୋଦରେ ତୃପ୍ତ କରିବେ । ଏହି କାର୍ଯ୍ୟ ନିମନ୍ତେ ରାଜ୍ୟ ସେମାନଙ୍କୁ ଉଚିତ ଦକ୍ଷିଣା ଏବଂ ପୁରସ୍କାର ଦେବ । ପ୍ରଜା ଯଜ୍ଞପ୍ରଥାକୁ ଭୁଲି ସାରିଥିଲେ । ସେମାନଙ୍କ ପାଇଁ ଏସବୁ ଅପୂର୍ବ ଓ ଅଦ୍‌ଭୁତ ଯୋଜନା ଥିଲା । ସେମାନେ ଏସବୁକୁ କଳିଙ୍ଗର ପ୍ରଜାବତ୍ସଳ ମହାରାଣୀଙ୍କର କୃପା ମନେକରି ମହାରାଣୀଙ୍କ ପ୍ରତି ଶ୍ରଦ୍ଧା ଓ କୃତଜ୍ଞତାରେ ଅଭିଭୂତ ହେଉଥିଲେ । ଯଜ୍ଞର ଆୟୋଜନରେ ହିଁ ରାଜ୍ୟ ଏବଂ ନଗରରେ ଉତ୍ସାହ ଉଚ୍ଛୁଳି ପଡୁଥିଲା । ଜନସମୂହ ଅଶୋକଙ୍କର ଆକ୍ରମଣର ଆତଙ୍କ ଭୁଲି ଉତ୍ସାହରେ ବାଉଳା ହୋଇ ଯାଇଥିଲେ ।

ମହାମାତ୍ୟ ଏବଂ ମହାସେନାପତିଙ୍କ ଦ୍ୱାରା ଆୟୋଜିତ ଏହି ଯଜ୍ଞ ପାଇଁକି କଳିଙ୍ଗବାସୀ ସମସ୍ତ ଜନସାଧାରଣଙ୍କର ସମାନ ମତ ବା ଭାବନା ନ ଥିଲା । ରାଜ୍ୟ ଏବଂ ନଗରର ଶ୍ରେଷ୍ଠୀମାନଙ୍କ ମଧ୍ୟରୁ ଅନେକେ ଜୈନ ତୀର୍ଥଙ୍କର ଏବଂ ଶ୍ରମଣଙ୍କ ଭଳି ହୋଇ ଯାଇଥିଲେ । ସେମାନେ ଜୀବମାତ୍ରରେ ଆତ୍ମବତ୍ ଭାବ ଏବଂ ଜୀବ ଅହିଂସାର ଧର୍ମରେ ବିଶ୍ୱାସ କରୁଥିଲେ । ଯଜ୍ଞରେ ପଶୁବଳି ସେମାନଙ୍କ ମନରେ ଭୟ ଓ ବିରକ୍ତିର ସଞ୍ଚାର କରିଥିଲା । ସେମାନେ ଯଜ୍ଞର ଅଧିଷ୍ଠାତା ବ୍ରାହ୍ମଣଙ୍କୁ ପରଲୋକ ଏବଂ ଦେବତାଙ୍କର ପ୍ରତିନିଧି ମାନିବାକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନ ଥିଲେ । ଯଜ୍ଞ ଉଦ୍ଦେଶ୍ୟରେ ପଶୁ ଏବଂ ଧନ ଦେବାର ଅନୁଶାସନ ସେମାନଙ୍କୁ ଧର୍ମହାନି ଏବଂ ନିଜ ଉପରେ ଅନ୍ୟାୟ ମନେହେଉଥିଲା, ମାତ୍ର ରାଜାଜ୍ଞା ସ୍ୱରୂପ ମହାମାତ୍ୟଙ୍କର ଆଜ୍ଞାର ଉପେକ୍ଷା କରିବା ମଧ୍ୟ ସମ୍ଭବ ନ ଥିଲା ।

ମୂର୍ତ୍ତି ଏବଂ କଳା ବ୍ୟବସାୟୀ ବିଟ୍‌ଠଳ ମଧ୍ୟ ମହାବଳି ଯଜ୍ଞର ଯୋଜନାରେ ଉତ୍ସାହିତ ନ ଥିଲେ । କିଛି ବର୍ଷ ହେଲା ପ୍ରାୟ ବିହାରଗୁଡ଼ିକ ଏବଂ ଦୁର୍ଗ ସବୁର ସାଜସଜ୍ଜାର କାମ ସବୁ ମିଳୁଥିଲା । ତେଣୁ ସେହି ଧର୍ମ ପ୍ରତି ତାଙ୍କର ଶ୍ରଦ୍ଧା ଆସିଥିଲା । ବିଟଠଳଙ୍କୁ ଏସବୁ ବିଷୟ ନେଇ ମଧ୍ୟ ବିରକ୍ତି ଥିଲା ଯେ ନଗରର ଇତର ଜନ ଏବଂ ନିମ୍ନବର୍ଗଙ୍କ ଉନ୍ମାଦ-ସୁଖ ପାଇଁ ତାଙ୍କୁ ମଧ୍ୟ ଯଜ୍ଞବଳି ଭାଗର ଧନ ଦେବାକୁ ପଡ଼ିଲା । ନଗରପାଳ ଚିତ୍ରରଥ ତାଙ୍କୁ ଡକେଇ ଯଜ୍ଞପାଇଁ ବେଦୀସବୁ ଏବଂ ନଗରର ସ୍ଥାନେ ସ୍ଥାନେ ତୋରଣ ତିଆରି ପାଇଁ ଆଦେଶ ଦେଇ ସାରିଥିଲେ । ସେ ଏ କାର୍ଯ୍ୟପାଇଁ କ'ଣ ଦେବେ ଏହା ମଧ୍ୟ ଏକ ସନ୍ଦେହ ଥିଲା । କିଛି ହେଲେ ଦେବେ ନା ନାହିଁ ! ପ୍ରାୟ ଛ ମାସ ଆଗରୁ ବିଟ୍‌ଠଳଙ୍କ ସର୍ବଶ୍ରେଷ୍ଠ କଳାକାର 'ମୋଦ' ରାଜପ୍ରାସାଦର ମନ୍ଦିରର ଶୃଙ୍ଗାର କାର୍ଯ୍ୟ ନିମନ୍ତେ ମହାରାଣୀଙ୍କର ଆଜ୍ଞାରେ ନିଯୁକ୍ତ ହୋଇ ସାରିଥିଲା, ମାତ୍ର ତାହା କେଜାଣି କେମିତି କାମ ଥିଲା ଯାହା ମୋଦ ଏତେ କାଳ ଲାଗିବା

ପରେ ବି ପୂର୍ଣ୍ଣ କରି ପାରି ନ ଥିଲା । ମୋଦର ତିଆରି କରିଥିବା ବୈଶାଳୀ ନର୍ତ୍ତକୀର ଚିତ୍ରଣ କାର୍ଯ୍ୟ ମଧ୍ୟ ଅସଂପୂର୍ଣ୍ଣ ରହି ଯାଇଥିଲା । ବିଟ୍‌ଠଳ ନିଜର ଦୁଇଜଣ ଅନ୍ୟ କଳାକାର କର୍ମୀଙ୍କୁ ନଗରରେ ତୋରଣ ତିଆରି ନିମନ୍ତେ ପଠେଇଥିଲେ, ମାତ୍ର ନଗରପାଳ ସେହି ତୋରଣ ଦେଖି ଅସନ୍ତୋଷ ପ୍ରକାଶ କଲେ । ନଗରପାଳ ଚାହୁଁଥିଲେ ଯେ ଗତବର୍ଷ ବସନ୍ତ ଉତ୍ସବ ବେଳେ ଯେଉଁ ଧରଣର ତୋରଣ ତିଆରି ହୋଇଥିଲା, ତା'ଠାରୁ କିଛି ଉତ୍ତମ ତୋରଣ ହେଉ । ନଗରପାଳ ମହାବଳି ଯଜ୍ଞ ସମୟରେ ଖୁବ୍ ସଜାସଜି କରି ମହାମାତ୍ୟ ଏବଂ ମହାସେନାପତିଙ୍କୁ ସନ୍ତୁଷ୍ଟ କରିବା ଚିନ୍ତାରେ ଥିଲେ । ବିଟ୍‌ଠଳ ଏ ସୁଅବସରର ଲାଭ ଉଠାଇବା ଉଦ୍ଦେଶ୍ୟରେ ମୋଦକୁ ରାଜପ୍ରାସାଦରୁ ଡକେଇ ଆଣିଦେବା ପାଇଁ ଅନୁରୋଧ କରିଥିଲେ । ନଗରପାଳ ପ୍ରାସାଦର କର୍ମାନ୍ତାଧିଷ୍ଠାୟୀଙ୍କୁ ଅନୁରୋଧ କଲେ ଏବଂ ମୋଦକୁ ମହାବଳି ଯଜ୍ଞର ତୋରଣ ତିଆରି ପାଇଁ ରାଜପ୍ରାସାଦରୁ ଡକାହେଲା ।

ବିଟ୍‌ଠଳ ମୋଦକୁ ସ୍ନେହରେ ବୁଝେଇଲେ– ଏ ସବୁ ତୋରଣ କେତେଦିନ ପାଇଁ ? ଏ ସବୁତ ଦୁଇଦିନର ହିଁ କୌତୁକ । ଯଜ୍ଞ ସମାପ୍ତ ହେଲା ପରେ ତ ଲୋକ ଏସବୁ ତୋରଣକୁ ଟାଣିଓଟାରି ନଷ୍ଟ ହିଁ କରିବେ, ତେଣୁ ତୁମେ ଖଞ୍ଜାଖଞ୍ଜି ଯେମିତି ସେମିତି କରି କିଛିଟା ପ୍ରସ୍ତୁତ କରିଦିଅ ଏବଂ ଖୁସିରେ ବୈଶାଳୀ ନର୍ତ୍ତକୀର ପାଲିଙ୍କି କାମ ପୂରା କର । ମୁଁ ରାଜପ୍ରାସାଦକୁ ଅନ୍ୟ କାହାକୁ ପଠେଇଦେବି । ଯେତେବେଳେ ଲୋକେ ତୋରଣ ତିଆରି ପାଇଁ ମୋଦକୁ ମଞ୍ଚକୁ ଉଠିବା ଦେଖିଲେ ଗତ ବର୍ଷର ତୋରଣ ତିଆରି ସ୍ମରଣ କରି ମଞ୍ଚ ତଳେ ଗହଳି ବଢ଼ିବାକୁ ଲାଗିଲା । ଯା ଆସ କରୁଥିବା ଲୋକେ ତୋରଣ ତଳକୁ ପହଞ୍ଚିଲେ ଆଖିଉଠାଇ କିଛି କ୍ଷଣ ପାଇଁ ରହି ଯାଉଥିଲେ । ଅଳସୁଆ ଲୋକ ତ ଦିନ ତମାମ୍ ସେଠାରେ ରହିଯାଉଥିଲେ ।

ଏତେ ଲୋକଙ୍କ କୌତୂହଳ ଏବଂ ଉତ୍ସୁକ ଦୃଷ୍ଟି ନିଜଆଡ଼କୁ ଟାଣି ହୋଇଥିବା ଦେଖି ମୋଦ ପାଇଁ ଏହା ସମ୍ଭବ ହେଲାନି ଯେ ସେହି ତୋରଣସବୁକୁ ଯେମିତି ସେମିତି କରିଦେଇ ନଗରପାଳଙ୍କୁ ବାହୁଲେଇ ଦେବ । ସେ ମନ ଦେଇ ତୋରଣ ଉପରେ ଚିତ୍ରକାରୀ କରିବାକୁ ଲାଗିଲେ । ସେହି ତୋରଣର ମୁଖ୍ୟ ଫଳକ ଉପରେ ମୟୂରାରୂଢ଼ ଦେବତାଙ୍କର ସେନାପତି କାର୍ତ୍ତିକେୟଙ୍କର ଚିତ୍ର ଅଙ୍କନ କଲା ।

ସୁନ୍ଦର ଏବଂ ବିଶାଳ ତୋରଣ ତିଆରି ହେବା ଦେଖି ଲୋକେ ଆଶ୍ୱାସନା ପାଇଲେ ଯେ ମହାବଳି ଯଜ୍ଞର ଆୟୋଜନ ବଡ଼ ବିରାଟ ରୂପେ ଅନୁଷ୍ଠିତ ହେବ । ନିତ୍ୟ ସହସ୍ର-ସହସ୍ର ପଶୁଙ୍କ ବଳି ପ୍ରସାଦର ମାଂସ ବଣ୍ଟା ହେବ

ଏବଂ ଯଜ୍ଞର ବେଦୀସବୁରେ ସୂର୍ଯ୍ୟାସ୍ତରୁ ଅଧରାତି ପର୍ଯ୍ୟନ୍ତ ରାଜ୍ୟ ତରଫରୁ ମଦ୍ୟର ଛତ୍ର ଲାଗିବ । ବୁଢ଼ାସବୁ କୁହାକୁହି ହେଲେ— ଆମେ ଆମ ସମୟରେ ପ୍ରତିଦିନ ପାଞ୍ଚସହସ୍ର ପଶୁବଳିର ଯଜ୍ଞ ମଧ ଦେଖିଛୁ । ସେତେବେଳେ ସଂପୂର୍ଣ୍ଣ ରାତ୍ରି । ରାଜ୍ୟ ଏବଂ ମହାଜନଗଣ, ଜ୍ୟେଷ୍ଠଗଣ ଏବଂ ଶ୍ରେଷ୍ଠୀଙ୍କ ଦ୍ୱାରା ମଦ୍ୟ ଛତ୍ର ଆରମ୍ଭ ହେଉଥିଲା । ସମସ୍ତ ଚତୁଷ୍ପଥମାନଙ୍କରେ ନର୍ତ୍ତକୀମାନେ ସଂପୂର୍ଣ୍ଣ ରାତ୍ରି ନୃତ୍ୟ କରୁଥିଲେ । ମଦ୍ୟରେ ଉନ୍ମତ୍ତ ସ୍ୱର୍ଣ୍ଣ ଆଭୂଷଣ ଯୁକ୍ତ ବାରାଙ୍ଗନାସବୁ ଆମକୁ ବାହୁଧରି ଝିଙ୍କି ନେଉଥିଲେ । ସେ ସମୟ ଆଉ କେବେ ଆସିବନି ।

ଅନେକ ଲୋକ ଏଇ ଆଶାରେ ଶୀଘ୍ର ବିନା ପଇସାରେ ପିଇବାକୁ ମଦ୍ୟ ମିଳିବ ସେଇ ଆଶାର ଉନ୍ମାଦନାରେ, ଅଣ୍ଟିରେ ଲୁଚେଇ ଥିବା କାର୍ଷାପଣ କାଢ଼ି ନିକଟରେ ଥିବା ମଦ୍ୟ ଦୋକାନରୁ ମଦ ଆଣି ପିଇବା-ପିଆଇବାରେ ଲାଗୁଥିଲେ ଏବଂ ବଳିଯଜ୍ଞର ବିରୋଧ କରି ନିଷେଧ କରେଇ ଦେଉଥିବା ଜୈନ ତୀର୍ଥଙ୍କରମାନଙ୍କୁ ଏବଂ ବୌଦ୍ଧ ଶ୍ରମଣଙ୍କ ପ୍ରତି କୁବଚନ ପ୍ରୟୋଗ କରି କ୍ରୋଧ ପ୍ରକଟ କରୁଥିଲେ— ସାଧାରଣ ଆନନ୍ଦରେ ଈର୍ଷାନ୍ୱିତ ସ୍ୱାର୍ଥୀମାନେ ସଂପନ୍ନ ଲୋକଙ୍କୁ ଶିଖାଇ ଦେଇଥିଲେ ଯେ ବଳିଯଜ୍ଞ ପାପ ଅଟେ । ପ୍ରଜାସମୂହ ଏକତ୍ରିତ ମିଶି ସୁଖଭୋଗ କରିବା ପାପ ଅଟେ ଏବଂ କର୍ମକୁଣ୍ଠ ମୁଣ୍ଡିସବୁରିଙ୍କ ପାଇଁ ବିହାର ତିଆରି କରି ସେମାନଙ୍କୁ ନିତ୍ୟ ଭୋଜନରେ ଆପ୍ୟାୟିତ କରି ରଖିବା ପୁଣ୍ୟ । ଶ୍ରେଷ୍ଠୀ ଏବଂ ବଣିକମାନଙ୍କୁ ତ ତୀର୍ଥଙ୍କର ଏବଂ ଶ୍ରମଣମାନଙ୍କ ଧର୍ମ ଉତ୍ତମ ଲାଗିବ ହିଁ ଲାଗିବ ! ଆସ୍ଥାନ ଗାଦିରେ ବସି ବସି ତାଙ୍କର ମାଂସ ଭୋଜନ କେମିତି ପଚିବ ? ବଳିରେ ଧନ ଲାଗିବ ଏଥିପାଇଁ କୃପଣ ମହାଜନମାନଙ୍କୁ ବଳି ପାପ ଜଣାପଡ଼େ । ମୂର୍ଖମାନେ ଜାଣନ୍ତି ନାହିଁ ଯେ ଦେବତା ବଳି ପାଇ ସନ୍ତୁଷ୍ଟ ହେବ ବା ତୁମେମାନେ ମଧ କିଛି ନ ଖାଇ ନ ପିଇ ପ୍ରସନ୍ନ ରହିବ ? ଦେବତା ନୃତ୍ୟ-ସଙ୍ଗୀତରେ ପ୍ରସନ୍ନ ହେବେ ନା ଆଖିବୁଜି ତାଙ୍କ ସାମନାରେ ବସିଗଲେ ପ୍ରସନ୍ନ ହେବେ ? ସେମାନେ କଳିଙ୍ଗର ରାଜେଶ୍ୱରୀ, ମହାମାତ୍ୟ ଏବଂ ମହାସେନାପତିଙ୍କର ଜୟଗାନ କରିବାରେ ଲାଗନ୍ତେ, ଯେଉଁମାନଙ୍କ କୃପାରୁ ଯଜ୍ଞର ପୁନରୁଦ୍ଧାର ହେଲା ।

ମୋଦ ମଞ୍ଚ ଉପରେ ବସି ତୋରଣ କାମ କଲାବେଳେ ବେଳେବେଳେ ବୃଦ୍ଧ ଗାୟକ ଲୋହିତ ମଧ ତଳେ ଜମିଥିବା ଭିଡ଼ ଭିତରକୁ ଆସି ଯାଉଥିଲା । ସେ ମୋଦର ଚିତ୍ରକଳା ଦେଖି ଦେଖି ଗାଏ ମଧ; ଫଳରେ ଆହୁରି ଅଧିକ ଲୋକ ଜମା ହୋଇପଡ଼ନ୍ତି । ଲୋହିତର ପିତା ମଦ ବିକ୍ରି କରୁଥିଲା । ପିତାଙ୍କ ପରେ ଲୋହିତଙ୍କୁ ଦୋକାନରେ ବସି ବସି ମଦ୍ୟ ପିପାସୁଙ୍କୁ ଅପେକ୍ଷା କରିବା ଠିକ୍ ଲାଗି ନ ଥିଲା । ପିପାସୁଙ୍କ ପାଖରେ ମୂଲ୍ୟ ନ ଥିଲେ ନିରାଶ କରି

ତାଙ୍କୁ ଫେରାଇଦେବା ତାକୁ ଆହୁରି ଖରାପ ଲାଗୁଥିଲା । ସେ ତାର ଗୀତର ପ୍ରଶଂସା କଲା । ଲୋକଙ୍କୁ ବିନା ମୂଲ୍ୟରେ ପିଆଇ ମଧ ସନ୍ତୋଷ ଲାଭ କରୁଥିଲା । ଲୋହିତର ଗୀତର ତ ପ୍ରଶଂସା ବଢ଼ିଚାଲିଲା, ମାତ୍ର ତା'ର ଦୋକାନର ଆୟ ଘଟିବାରେ ଲାଗିଲା । ମଦ୍ୟ ଦୋକାନର ରାଜକର ଦେବାକୁ ତାକୁ ଋଣ ନେବାକୁ ପଡୁଥିଲା । ଶେଷରେ ଋଣ ପରିଶୋଧ ପାଇଁ ଦୋକାନ ହିଁ ବିକ୍ରି ହେଲା । ସେ ନିରାଶ୍ରୟ ହେଲା । ସଂପନ୍ନ ଲୋକେ ତାର ଗୀତ ଶୁଣିବାକୁ ତାକୁ ଘରକୁ ଡାକୁଥିଲେ । ସର୍ବସାଧାରଣ ତାକୁ ରାସ୍ତାରେ ଏବଂ ବିପଣୀରେ ଘେରି ତା'ଠାରୁ ଗୀତ ଶୁଣୁଥିଲେ ।

ଲୋହିତର କଣ୍ଠ ମଧୁର ଏବଂ ତାର ଗୀତ ସବୁ ମର୍ମସ୍ପର୍ଶୀ ଥିଲା । ତାର ଗୀତ ଶୁଣି ଗବାକ୍ଷରେ ବସି କିମ୍ବା କବାଟ କୋଣରେ ଛିଡ଼ାରହି କୁଳବଧୂଗଣଙ୍କର ନେତ୍ର ସଜଳ ଏବଂ ହୃଦୟ ବିହ୍ୱଳ ହେଉଥିଲା । ତା ଆଖି ସାଙ୍ଗରେ ଆଖି ମିଶିଗଲେ ମଧ ସେମାନେ ଆଖି ନୁଆଁଇନେବା ଭୁଲି ଯାଇଥିଲେ । ଲୋହିତ ଏହି ମୁଗ୍ଧ ନେତ୍ରସ୍ମୃତିକୁ ଗୀତରେ ସ୍ମରଣ କରେ । ସେ 'କାଲି'ର ଚିନ୍ତାରେ ମଉଳି ଯାଇ 'ଆଜି' କ୍ରୀଡ଼ା କୌତୁକର କଥା କୁହେ ନିଶ୍ଚୟ । ସେ ପଥିକ ଏବଂ ନଗରବଧୂଙ୍କ ପ୍ରେମ ଓ ବିରହର ଗୀତ ଗାଏ ଏବଂ ଗତ ଯୁଦ୍ଧରେ ଅଶୋକଙ୍କ ମାନମର୍ଦ୍ଦନ କରୁଥିବା କଳିଙ୍ଗ ବୀରମାନଙ୍କର ଗୀତ ଗାଇଥିଲା । ଲୋହିତ ନାଗରିକମାନଙ୍କୁ ଯେଉଁ ସନ୍ତୋଷ ଦେଉଥିଲା, ତା'ର ମୂଲ୍ୟ ମାପ ତଉଲ କରି ଦିଆ-ନିଆ କରାଯାଇପାରେନା । ଲୋହିତକୁ ଧନ ଅପେକ୍ଷା ଆଦର ସ୍ନେହ ଅଧିକ ମିଳୁଥିଲା ।

ଲୋହିତ ମଞ୍ଚତଳେ ଛିଡ଼ାରହି ଆଖି ଉଠାଇ ମୋଦର ଚିତ୍ରକାରୀ ଦେଖୁଥିଲା । ଭିଡ଼ର ଲୋକେ ତାକୁ ଘେରି ଅନୁରୋଧ କରିବାକୁ ଲାଗିଲେ— ମୋଦ ନିଜ କଳାରେ ଆମ ଆଖିକୁ ତୃପ୍ତ କରୁଛି, ତୁମେ କାନରେ ଅମୃତ ବର୍ଷା କର ।

ନିଜ ପ୍ରତି ଭିଡ଼ର ଆଦର ଦେଖି ଲୋହିତର ଆଖି ପତା ନଇଁ ଆସୁଥିଲା, ନାସା ପ୍ରସନ୍ନତାର ନିଶ୍ୱାସରେ ଫୁଲି ଉଠିଲା । ସେ କଳିଙ୍ଗ ମହାରାଣୀଙ୍କର ଉପମା ମୟୂର ଉପରେ ଥିବା କାର୍ତ୍ତିକେୟଙ୍କଠାରେ ଦେଇ କଳିଙ୍ଗ ପ୍ରଜାଙ୍କର ଉପମା ଦେବତାମାନଙ୍କ ଦଳରେ ଦେଇ ରଣକ୍ଷେତ୍ରରୁ ପଳାୟନକାରୀ ଅଶୋକଙ୍କର ସେନାଙ୍କ ଉପମା ପରାଜିତ ରାକ୍ଷସଦଳଙ୍କ ଉପରେ ରଖୁଥିଲା । ସେ କଳିଙ୍ଗ ସେନାଙ୍କୁ ଉତ୍ସାହବାଣୀ ଶୁଣାଇ କହୁଥାଏ— ପରାଜୟ ମୃତ୍ୟୁ ଅଟେ । .... ଦେବଗଣ ମୃତ୍ୟୁ ସହିତ ଲଢ଼ ! ନିଜର ପେଟ ଭରୁଥିବା ଧରିତ୍ରୀ ରକ୍ଷା ପାଇଁ, ଜନ୍ମଦାତ୍ରୀ ବୃଦ୍ଧାମାର କୋଳକୁ ଶତ୍ରୁ-ଚୋଟରୁ ରକ୍ଷା କରିବାପାଇଁ, ଆପଣା ସନ୍ତାନଙ୍କୁ

ସ୍ତନ୍ୟ ଦେଉଥିବା ନିଜ ପତ୍ନୀପାଇଁ, ଶତ୍ରୁର ବାଣକୁ ଆପଣାର ଚଉଡ଼ା ଛାତିରେ ପ୍ରତିରୋଧ କର । ଆରେ କଳିଙ୍ଗର ସିଂହ, ଆତତାୟୀକୁ ଚିରିଦେବାକୁ ନିଜ ପଞ୍ଝା ଉଠାଅ ! ସମସ୍ତେ ସାଧୁ ସାଧୁ କହି ଆନନ୍ଦ ପ୍ରମତ୍ତ ହୋଇଉଠିଲେ । ମୋଦ ହାତରେ ଥିବା ତୂଳି ଅଟକିଗଲା । ସେ ଲୋହିତର ଉପମାକୁ ଧ୍ୟାନ ଦେଇ ଶୁଣିଲା । ପୁଣି ତା ହାତ ତୋରଣର ଫଳକରେ ବ୍ୟସ୍ତ ରହିଲା । ସେ ମୟୂରବାହନ ଦେବତାଙ୍କ ସେନାପତି କାର୍ତ୍ତିକେୟଙ୍କ ମୁଖକୁ ମହାରାଣୀଙ୍କ ଭଙ୍ଗୀ ଏବଂ ଦେବତାଙ୍କ ସେନାଙ୍କ ଠାରେ, ଭିଡ଼ ଭିତରେ ମଞ୍ଚ ତଳେ ଠିଆ ହୋଇଥିବା ଲୋହିତ, ଅମ୍ବ, ଗୁଂଫ, କିମ୍ବୁଳ ଆଦିଙ୍କ ମୁଖର ସମଭାବ ଦେଇ ଚିତ୍ରିତ କରିଦେଲା ।

ସବୁରି ଭିତରେ ଅଦ୍‌ଭୁତ ଉନ୍ମାଦନା ଖେଳିଗଲା । ଲୋକ ଉଚ୍ଚୈସ୍ୱରରେ ମଗଧର ରାଜା ଅଶୋକଙ୍କୁ ଯୁଦ୍ଧ ପାଇଁ ଆହ୍ୱାନ କଲେ । କିଛିଲୋକ ନିକଟବର୍ତ୍ତୀ ମଦ୍ୟ ଦୋକାନରୁ ମଦ ଆଣି ଲୋହିତ ଏବଂ ମୋଦକୁ ପିଆଇ, ଜାନୁ ପିଟି, ବାହ୍ୱାସ୍ଫୋଟ ମାରି ଜଣେ ଜଣଙ୍କ ପିଠି ଥାପୁଡ଼େଇ ଡାକିବାକୁ ଲାଗିଲେ– ନିତ୍ୟ ମାଂସ ଖାଇ ମଦ୍ୟପାନ କରି ଏ ଭୁଜରେ ମତ୍ତହସ୍ତୀ ଭଳି ଶକ୍ତି ଆସିଲେ ମଗଧର ସେଇ ଜଙ୍ଗଲୀ ମହିଷମାନଙ୍କୁ ଶିଙ୍ଗ ଧରି ପଛକୁ ଠେଲି ଦେଲେ କେମିତି ଲାଗିବ !

ଅନ୍ୟମାନେ କହିଲେ– ଏଥର ସେ ମହିଷମାନଙ୍କୁ ପଛକୁ ହଟେଇଦେଲେ ହେବନି ସେହି ମହିଷମାନଙ୍କୁ ଦେବତା ଆଗରେ ବଳି ଚଢ଼େଇ ଦେବତାଙ୍କୁ ତୃପ୍ତ କରିବାକୁ ହେବ ।

ମନରେ ଯୁଦ୍ଧ ପାଇଁ ଉତ୍ସାହର ରଙ୍ଗ ଖେଳିଗଲା ପରେ ଭିଡ଼ର ଲୋକ ସମୂହ ଭିତରୁ ଜଣେ ଜଣକୁ ମଲ୍ଲଯୁଦ୍ଧର କୌଶଳ, ପଇନ୍ତରା ବଖାଣି ବସନ୍ତି । ପଥ ଏବଂ ମାର୍ଗ ସବୁରେ ବେଳେବେଳେ ମଲ୍ଲଯୁଦ୍ଧର ଆଖଡ଼ା ବସିଯାଏ । କିଛି ଲୋକ ବାଡ଼ି, ଖଣ୍ଡା ସବୁ କାଢ଼ି ପକାନ୍ତି ଏବଂ ଆତ୍ମରକ୍ଷା ଏବଂ ଶତ୍ରୁ ଉପରକୁ ଆକ୍ରମଣ ନିମନ୍ତେ କୌଶଳ ଶିଖିବା-ଶିଖାଇବାରେ ଲାଗନ୍ତି । ଏପରି ଧୀରେ ଧୀରେ ଜନସାଧାରଣ ଯୁଦ୍ଧ ତତ୍‌ପର ହେବାକୁ ଲାଗିଲେ ।

ବିଟ୍‌ଠଳ ନଗରପାଳଙ୍କ ସହାୟତାରେ ମୋଦକୁ ରାଜପ୍ରାସାଦର ମନ୍ଦିରର ସଜ୍ଜୀକରଣ ଅଳଂକରଣ କାମରୁ ଡକେଇ ଆଣି ତୋରଣ ତିଆରି କାମରେ ଲଗେଇ ଦେଇଥିଲେ । ଏ ପରିବର୍ତ୍ତନ ମୋଦଙ୍କୁ ଅନେକ ପୀଡ଼ା ଦେଇଥିଲା । ହିତା ସହିତ ମିଳନର ଅବସର-କ୍ଷଣ ଚାଲିଯିବା ତା ପାଇଁ ବଡ଼ ଦୁଃଖଦ ଥିଲା, କିନ୍ତୁ ଦାସତ୍ୱ ହେତୁ ଭାଗ୍ୟ ସାମନାରେ ମୁଣ୍ଡ ନୁଆଁଇ ସହିଯିବା ଛଡ଼ା ଆଉ ଉପାୟ ନ ଥିଲା ।

ତୋରଣ ତିଆରି ସମୟରେ ମୋଦ ମନରେ ହିତାର ରୂପ ଓ କାନରେ ହିତାର ସ୍ୱର ଗୁଞ୍ଜରିତ ହେଉଥିଲା । ଭାବୁଥିଲା, ହିତା ମଧ୍ୟ ସେମିତି ବ୍ୟାକୁଳ ହେଉଥିବ, ମାତ୍ର ତୋରଣର ତଳେ ଥିବା ଜନସମୂହର ସମ୍ମୁଖରେ ନିଜ କଳାର ପ୍ରଦର୍ଶନ କରିବାରେ ଏତେ ପ୍ରେରଣା ଆସେ ଯାହାଫଳରେ ସେ ଏତେ ବୁଡ଼ି ଯାଉଥିଲା ଯେ ହିତାର ସ୍ମୃତିର ଅବସର ହିଁ ରହୁ ନ ଥିଲା । ଲୋହିତ ଆସିଯିବା ପରେ ତୋରଣ ତଳେ ଯୁଦ୍ଧର ଉତ୍ତେଜନାର ବାତାବରଣ ସରଗରମ ହୋଇଉଠେ, ଯାହାଫଳରେ ମୋଦ ମଧ୍ୟ ସେଇଥିରେ ବୁଡ଼ିରହେ କିନ୍ତୁ ରାତିରେ ହିତାର ସ୍ମୃତି ତାକୁ ନିଶ୍ଚିତ ଭାବରେ ବ୍ୟାକୁଳ କରୁଥାଏ । ଏଥିପାଇଁ ମୋଦକୁ ଅଶୋକଙ୍କ ଉପରେ କ୍ରୋଧ ଆସୁଥିଲା ।

× × × × ×

ହିତା ଅନେକଦିନ ପର୍ଯ୍ୟନ୍ତ ମୋଦକୁ ଦେଖିବାର ଅବସର ନ ପାଇ ବିରସ ହୋଇ ପଡ଼ିଥିଲା । ଅସମ୍ଭାଳ ହେବା ପରେ ମାମୁ କଞ୍ଚୁକୀ ସାମନାରେ ଯୁବରାଜ୍ଞୀଙ୍କ ପାଇଁ ବିଟ୍ଠଳ ଜେଠକଙ୍କ ଠାରୁ ଖେଳନା ନେଇ ଆସିବାର ବାହାନା କରି ଦାସୀଜଣକୁ ସାଙ୍ଗରେ ସୁରକ୍ଷା ପାଇଁ ନେଇ ସେ ନଗରକୁ ଚାଲିଆସିଲା ।

ମୋଦ ବିଟଠଳର କର୍ମଶାଳାରେ ନ ଥିଲା । ପଚାରି ବୁଝି ହିତା ରାଜପଥ ପଟକୁ ଗଲା । ସେ ମୋଦକୁ ଉଚ୍ଚମଞ୍ଚ ଉପରେ ତୋରଣ ତିଆରି କରୁଥିବାର ଦେଖିଲା ଏବଂ ତଳେ ଛିଡ଼ା ଥିବା ସମସ୍ତଙ୍କୁ ମଧ୍ୟ ଦେଖିଲା । ଏପରି ଅବସ୍ଥାରେ ସେ କ'ଣ କରିପାରିବ ! ହିତା ବିବଶ ହୋଇ ଫେରିଗଲା ।

ଆଉ ଏକ ସପ୍ତାହ ବିତିଗଲା ପରେ ମୋଦ ସହିତ ସାକ୍ଷାତ କରି ନ ପାରି ହିତା ଅଧିକ ବ୍ୟାକୁଳ ହୋଇଉଠିଲା । ଯୁବରାଜ୍ଞୀ ଦ୍ୱିପ୍ରହରରେ ଶୋଇ ପଡ଼ିଲା ପରେ ହିତା ତାର ମା'କୁ କହିଲା – ''ମା, ଯୁବରାଜ୍ଞୀ ଏବେ ଶୋଇଛନ୍ତି । ଉଠିଲା ପରେ କଣ୍ଢେଇ ବିବାହ ଖେଳ ଖେଳିବେ... ।''

ଝିଅପ୍ରତି ଆଶଙ୍କାରୁ ଏବଂ ତାକୁ ନିଷେଧ କରିବା ପାଇଁ ବାପୀ ଆଖିରେ ଲୁହ ଭରି ଆସିଲା ମାତ୍ର ହିତା ମା'ର ଲୁହ ଦେଖି ମଧ୍ୟ ଅଟକି ଯାଇ ପାରିଲାନି । ସୁରକ୍ଷା ପାଇଁ ଦାସୀକୁ ନେଇ ବିଟ୍ଠଳଙ୍କ କର୍ମଶାଳାରେ ପହଞ୍ଚିଲା । ସେଠାରେ ମୋଦକୁ ନ ପାଇ ମଧ୍ୟ ସେ ନୂଆ କଣ୍ଢେଇ ସବୁ ନେଲା ଏବଂ ପୁଣି କମ୍ପିତ ପାଦରେ ରାଜପଥ ଆଡ଼କୁ ଚାଲିଗଲା । ଏଥର ମଧ୍ୟ ମୋଦକୁ ଏକ ଚତୁଷ୍ପଥରେ ମଞ୍ଚଉପରେ ବସିଥିବାର ଦେଖିଲା । ତଳେ ଭିଡ଼ ଆଗ ଅପେକ୍ଷା ଅଧିକ ଥିଲା ।

ହିତା ଚତୁଷ୍ପଥରେ ଅଟକିଯାଇ ଭାବିଲା, କ'ଣ ମୋଦ ମୋତେ ସତରେ ଭୁଲିଗଲା । ମନ ଆହୁରି ଉଦ୍‌ବିଗ୍ନ ହୋଇଉଠିଲା । ନିଶ୍ଚୟ କଲା– ଥରେ ତା' ସାଙ୍ଗରେ କଥା ତ ହେଉ, ସେ ରାଜପ୍ରାସାଦକୁ କାହିଁକି ଆସୁ ନାହିଁ ? ହିତା ତୋରଣ ତଳେ ପହଞ୍ଚିଗଲା । ତୋରଣ ଆଡ଼କୁ ମୁହଁ ଉଠେଇଥିବା ବେସୁମାର ଭିଡ଼ ତାକୁ ରାସ୍ତା ଦେଉ ନ ଥିଲେ ।

ବୃଦ୍ଧ ଦାସକୁ ପାଟି କରିବାକୁ ପଡ଼ିଲା– "ଉତ୍ତମ ଲୋକସବୁ, ରାଜଦାସୀଙ୍କୁ ରାସ୍ତା ଦିଅନ୍ତୁ !"

ମୋଦ ଡାକ ଶୁଣି ତଳକୁ ଅନେଇଲା । ହିତାର କ୍ଷୁବ୍ଧ ଉଦାସ ନେତ୍ରରେ ତାର ନେତ୍ର ମିଶିଲା । ହିତାର ମଳିନ ମୁଖମଣ୍ଡଳ ଦେଖି ହୃଦୟ ତାର ବିଦ୍ଧ ହେଲା । ସେ ହିତାର ପୀଡ଼ାଭରା ଦୃଷ୍ଟିକୁ ଉପେକ୍ଷା କରିପାରିଲା ନାହିଁ, ତୁରନ୍ତ ମଞ୍ଚ ଉପରୁ ଓହ୍ଲେଇ ଆସିଲା ।

ମୋଦ ମଞ୍ଚତଳେ ଠିଆହୋଇଥିବା ଲୋକଙ୍କୁ କହିଲା– "ନୂଆ ତୂଳି ନେଇ ଅଧଘଣ୍ଟା ଭିତରେ ଆସୁଛି ।" ସେ ହିତା ଓ ଦାସ ପଛରେ ଲମ୍ବା ଲମ୍ବା ପାହୁଣ୍ଡ ପକେଇ ଚାଲିଲା ।

ମୋଦ ପାଖରେ କିଛି ନା କିଛି କାର୍ଷାପଣ ପ୍ରାୟ ରହିଥିଲା । ବିଟ୍ଠଳ ତା ପ୍ରତି କୃପା ପ୍ରଦର୍ଶନ କରିବା ପାଇଁ ତାଙ୍କୁ ମଝିରେ ମଝିରେ କିଛି ଧନ ଦେଉଥିଲେ କିନ୍ତୁ ଏମିତି କେବେ ହୋଇ ନ ଥିଲା ଯେ ମୋଦ କାମ ଛାଡ଼ି କେବେ ଚାଲିଯିବାର ସାହସ କରିବ । ହିତାକୁ ଦେଖେଇବା ପାଇଁ ମୋଦ କଞ୍ଚୁକୀ ମଦ ପିଇବ ବୋଲି କିଛି ପଇସା ଦେଲା । କଞ୍ଚୁକୀ ପ୍ରସନ୍ନ ହୋଇ ନିକଟରେ ଥିବା ଦୋକାନ ଆଡ଼କୁ ଦ୍ରୁତ ଗତିରେ ଚାଲିଲା । ମୋଦ ହିତାକୁ ଏକ ଶୂନ୍ୟ ଗଳିକୁ ନେଇଯାଇ କଥା ହେଲା ।

ମୋଦ ରାଜପ୍ରାସାଦ କାର୍ଯ୍ୟରୁ ଡକାଯାଇ ତୋରଣ କାମରେ ଲଗାଇବା ପ୍ରସଙ୍ଗରେ କହିଲା– ନଗରର ସମାଚାର ହେଲା ଅଶୋକ ଖୁବ୍ ବଡ଼ ସେନା ନେଇ ଆସୁଛନ୍ତି । ବଡ଼ ଭାଇଙ୍କର ଯୁଦ୍ଧ ହେବ । ଏବେ ଯୁବରାଜ୍ଞୀଙ୍କ ଅଭିଷେକ ସମୟରେ ମୁକ୍ତ ହେବାର ପ୍ରତୀକ୍ଷାର ଅବସର ନୁହେଁ । ଶୁଣିଛି– ଚଣ୍ଡ ଅଶୋକ ପୂରା ନଗରଟିକୁ ଭସ୍ମ କରିଦେବେ ଏବଂ ସମ୍ପୂର୍ଣ୍ଣ ପ୍ରଜାଙ୍କୁ ମଗଧର ଦାସ କରିବେ । ତୁମର ଯଦି ସାହସ ଅଛି ତାହେଲେ ପ୍ରାସାଦରୁ ଚାଲିଆସ । ଆମେ ଦୁହେଁ ପ୍ରାଣକୁ ବାଜି ଲଗେଇ କୁଆଡ଼େ ଚାଲିଯିବା । ତୁ ଯଦି ନ ଆସୁ ତାହାହେଲେ ମୁଁ ତୋରଣ ତିଆରି କାର୍ଯ୍ୟ ପୂରାକରି ରାଜ୍ୟରୁ ଶସ୍ତ୍ରନେଇ ସୈନିକ ହୋଇଯିବି । କେତେ ଏମିତି ବି କହୁଛନ୍ତି ଯେ ମହାବଳି ଯଜ୍ଞ ପରେ ମହାମାତ୍ୟ ସୈନିକ

ହୋଇ ଯାଇଥିବା ଦାସମାନଙ୍କୁ ଯୁଦ୍ଧ ସମାପ୍ତି ପରେ ମୁକ୍ତ କରିଦେବା ପାଇଁ ଆଦେଶ ଦେବେ ।

ମୋଦର କଥାଶୁଣି ହିତା ବିହ୍ୱଳ ହୋଇଗଲା । ମୋଦ ଶସ୍ତ୍ରନେଇ ଯୁଦ୍ଧକୁ ଯିବ, ଏ କଳ୍ପନା ତାକୁ ଏମିତି ଲାଗିଲା ଯେମିତିକି ଶସ୍ତ୍ରସବୁର ପ୍ରହାର ସ୍ୱୟଂ ନିଜ ଶରୀରରେ ପଡୁଛି । ହିତା ମୋଦଙ୍କୁ ବୁଝେଇଲା– ଏମିତି କରିବନି, ମୁଁ ମରିଯିବି । ଭଗବାନ୍ ସ୍ଥବିରଙ୍କର ଆଶୀର୍ବାଦ ଏବଂ ଚମତ୍କାର ହିଁ ଯୁଦ୍ଧରୁ କଳିଙ୍ଗକୁ ରକ୍ଷା କରିବେ । ମହାରାଣୀ ଏକସହସ୍ର ଭିକ୍ଷୁଙ୍କୁ ପରିତ୍ରାଣ-ଦିବାସେନାର ପାଠ କରାଇବେ । ତୁମେ କିଛିଦିନ ଅପେକ୍ଷା କର । ମହାରାଣୀ ତୁମକୁ ମନ୍ଦିରର ଶୃଙ୍ଗାର କାମ ପୂରା କରିବା ନିମନ୍ତେ ପୁଣି ସ୍ମରଣ କରିବେ । ତୁମେ ମୁକ୍ତି ପାଇଁକି ଭିକ୍ଷା ମାଗିନେବ । କଞ୍ଚୁକୀକୁ ମଦ୍ୟପାନ ପରେ ଲେଉଟିବାରେ ଏବଂ ହିତା ମୋଦକୁ ସୈନିକ ନ ହେବା ପାଇଁ ଅନୁନୟ-ବିନୟ କରିବାରେ ବିଳମ୍ବ ହୋଇ ସାରିଥିଲା । ହିତା ପ୍ରାସାଦକୁ ଶୀଘ୍ର ଗତିରେ ଲେଉଟିଲା ବେଳେ ଚିନ୍ତିତ ଥିଲା କାରଣ ବିଳମ୍ବ ହୋଇଯିବାରେ ଯୁବରାଜ୍ଞୀ କ୍ଷୁବ୍ଧ ହୋଇଥିବେ । ତାକୁ ଡାକି ନ ଥିବେ ତ ?

ବାଳିକା ଯୁବରାଜ୍ଞୀ ନିଦରୁ ଯେତେବେଳେ ଉଠିଲେ ଆଚାର୍ଯ୍ୟ ମହାମାତ୍ୟ ଏବଂ ମହାସେନାପତିଙ୍କ ପରିବାରମାନଙ୍କ ଝିଅସବୁ ତାଙ୍କୁ କଣ୍ଢେଇ ବିବାହ କରିବା ଖେଳ କଥା ମନେ ପକେଇ ଦେଲେ । ହିତା ଏ ପର୍ଯ୍ୟନ୍ତ ଲେଉଟି ନ ଥିଲା । ପ୍ରୌଢ଼ା ବାପୀ କଣ୍ଢେଇ ବିବାହର ବେଦୀ ସେମିତି ତିଆରି କଲା ଯେମିତି ହିତା କରୁଥିଲା । ଝିଅଟି ଏତେବେଳ ପର୍ଯ୍ୟନ୍ତ ଫେରି ନ ଥିବାରୁ ବାପୀ ଚିନ୍ତାରେ ବସି ଯାଇଥିଲା । ସେ ପୁରୁଣା ପୁଅଝିଅ କଣ୍ଢେଇକୁ ବେଦୀରେ ବସେଇ ଦେଲା ।

ଅମିତା ପୁରୁଣା ପୁଅ-ଝିଅ କଣ୍ଢେଇମାନଙ୍କୁ ଦେଖି ସନ୍ତୋଷ ହେଲେନି । ଚମକି ପଡ଼ି କହିଲେ– "ପୁରୁଣାମାନଙ୍କର ବିବାହ କରାଯିବନି । ହିତୁ ନୂଆ ସବୁ ଦେବ ।" ଅମିତାଙ୍କର ବିଶ୍ୱାସ ଥିଲା ଯେ ହିତା ତାର ସମସ୍ତ ଇଚ୍ଛା ପୂରଣ କରିପାରିବ ।

ବାପୀ ଆହୁରି ଚିନ୍ତିତ ହୋଇ ପଡ଼ିଲା । ସେ ରାଜକୁମାରୀର ହଟକୁ ଜାଣୁଥିଲା । ଆଶଙ୍କା ହେଲା ଯେ ତା ଝିଅ ପ୍ରତି ଅବୋଧ ରାଜକୁମାରୀଙ୍କର କୃପା ଝିଅର କାଳ ନ ହେଉ । ହିତାକୁ ଡକରା ପଡ଼ିଲେ ତାକୁ ଖୋଜା ଚାଲିବ । ହିତାର ପ୍ରାସାଦରୁ ଯିବା ତିନି ଘଣ୍ଟା ସମୟ ବିତି ସାରିଥିଲା । ଏମିତି ସମୟରେ ହିତା ଉପରେ ଯାହାବି ବିତିଯାଆନ୍ତା କମ୍ ହୁଅନ୍ତା ।

ଦାସମାନଙ୍କର ନାୟିକ ଦଣ୍ଡକ ହିତା ଉପରେ ପ୍ରସନ୍ନ ନ ଥିଲେ । ହିତା ଦଣ୍ଡକଙ୍କର ଉପେକ୍ଷା ଏବଂ ଅବହେଳା କରୁଥିଲା । ବାପୀ ମଧ୍ୟ ଝିଅକୁ ସଙ୍କେତରେ ବୁଝେଇଥିଲା ଯେ ପ୍ରାସାଦର ଦାସଦାସୀଙ୍କ ଦୁଃଖ-ଦୁଃଖ ଦଣ୍ଡକଙ୍କ ହାତରେ ଥିଲା । ମହାରାଣୀ ଏବଂ ଯୁବରାଜ୍ଞୀଙ୍କ କୃପାପାତ୍ର ହେଲେ ମଧ୍ୟ କେବେନା କେବେ ଦଣ୍ଡକ ହାତରେ ପଡ଼ିବାକୁ ହିଁ ହେବ । ଦାସୀକୁ ମାନ ଶୋଭା ଦିଏନା କାହିଁକି ନା ତାଙ୍କର ଅଭିମାନ ଲିଭିବାର ନୁହଁ । ସମସ୍ତ ଝିଅର ମା ଭଳି ବାପୀକୁ ମଧ୍ୟ ବିଶ୍ୱାସ ଥିଲା ଯେ ତା ଝିଅର ଆୟୁ କୋଡ଼ିଏ ବରଷ ହେଲା ପରେ ମଧ୍ୟ ସେ ସରଳ ଥିଲା ।

ବାପୀ ଅମିତାଙ୍କୁ ଅନେକ ଅନୁନୟ ଏବଂ ସ୍ନେହରେ ବୁଝାଇଥିଲା – "ଅମ୍ଭେ ମହାରାଣୀ, ହିତା ମହାରାଣୀଙ୍କ ପାଇଁ ନୂଆ କଣ୍ଢେଇ ଆଣିବାକୁ ଯାଇଛି, ଏବେ ଆସୁଥିବ । ସେତେବେଳପର୍ଯ୍ୟନ୍ତ ମହାରାଣୀ ଖେଳୁଥାଆନ୍ତୁ ।"

ଅମିତା ହଟରେ ଜିଦ୍‌ଧରି ତେଇଁ ଡେଇଁ ହାତ ହଲେଇ ମସ୍ତକର ଛୋଟ ଛୋଟ କୁଞ୍ଚିତ ବାଳସବୁକୁ ହଲାଇ ଅସ୍ୱୀକାର କରିଦେଲେ । "ମୋତେ ନୂଆ ଖେଳନା ଦରକାର ନାହିଁ, ମୁଁ ଖେଳିବିନି । ହିତୁକୁ ଡାକ !"

ବାପୀ ଦୁଲାଳୀଙ୍କୁ ଆହୁରି ଅନେକ ବୁଝେଇଲା – "ମହାରାଣୀ ଶୀଘ୍ର ଆସିବ, ମୁଁ କଣ୍ଢେଇ ବାହା କରେଇଦେବି, ନ ହେଲେ ଶୁଭ ମୁହୂର୍ତ୍ତ ଟଳିଯିବ । ଭଦ୍ରେ ଲେଖା ଓ ସୀତା ମଧ୍ୟ ଆସିବେ ।" ବାପୀ ମହାମାତ୍ୟ ଓ ମହାସେନାପତିଙ୍କ ଝିଅମାନଙ୍କୁ ମଧ୍ୟ ସମ୍ବୋଧନ କଲା । ଅମିତା ତେବେ ମଧ୍ୟ ହଟରେ ଦେହ ଝୁଣି ଜାଣିବାକୁ ଚାହିଁଲା – "କିପରି ? ହିତୁ କଣ୍ଢେଇର ମା । ମା ବିନା କଣ୍ଢେଇର ବାହାଘର କେମିତି ହେବ ?"

ବାପୀ ମହାସେନାପତିଙ୍କ ଝିଅ ସୀତା ମୁଣ୍ଡରେ ହାତରଖି ବୁଝେଇଲା – "ଭଦ୍ରେ ! ସୀତା କଣ୍ଢେଇର ମା ହେବ ।"

ସୀତା ପ୍ରସନ୍ନତାରେ ଡିଆଁମାରିଲା – "ହଁ, ମୁଁ କଣ୍ଢେଇର ମା ହେବି ।" ଅମିତା ହଟକରି ଅସ୍ୱୀକାର କରିଦେଲା – "ନା-ନା, କଣ୍ଢେଇର ମା ହିତୁ । ତାକୁ ଠିକ୍ ମା ହୋଇଆସେ । ବିଦାୟବେଳର କାନ୍ଦଣା ତାକୁ ଭଲ ଆସେ । କଣ୍ଢେଇର ବିଦାୟ ବେଳେ କିଏ କାନ୍ଦିବ ?"

ବାପୀ ବିଶ୍ୱାସ ଦେଲା – "ଅମ୍ଭେ ମହାରାଣୀ ହିତୁର ମାକୁ ଖୁବ୍ କାନ୍ଦଣା ଆସେ । ହିତୁକୁ ମୁଁହିଁ ତ କାନ୍ଦଣା ଶିଖାଇଛି । କଣ୍ଢେଇର ମା ମୁଁ ହେବି । ମୁଁ କାନ୍ଦିବି ।"

ବାପୀ ପୁତ୍ତଳିର ମସ୍ତକରେ ସ୍ନେହରେ ଆଉଁଶି କହିଲା– "ଏଇଟା ମୋ ଝିଅ ।" ଆଉରି ପୁଣି କାନ୍ଦିଲା ସ୍ୱରରେ କହିଲା, ମୋ ରାଜକୁମାରୀ ଝିଅକୁ ଅନାମ ଦେଶର ରାଜକୁମାର ବାହାକରି ସାତନଦୀ ଆଉ ସାତସମୁଦ୍ର ସେ ପାରିକୁ ନେଇଯିବ । ମୁଁ ମୋ ଗେହ୍ଲାଝିଅକୁ ଝୁରୁଥିବି ।" ବାପୀ ତାର ମୁହଁକୁ ଅଞ୍ଚଳରେ ଢାଙ୍କି ସକ ସକ ହୋଇ କାନ୍ଦିବସିଲା ।

ଅମିତା ବାପୀର ଅଭିନୟରେ ହସିଉଠିଲେ, କିନ୍ତୁ କ୍ଷଣକ ପରେ ହିଁ ହିତା ମନେପଡ଼ିବାରୁ ପୁଣି ହିତାକୁ ଡାକ ଛାଡ଼ିଲେ– "ହିତୁକୁ ଡାକ ! ହିତୁ କୁଆଡ଼େ ଗଲା !"

ଅମିତାଙ୍କ ଡାକରେ ବାପୀର ମନ ଭୟରେ କମ୍ପୁଥିଲା, ଲୋକ ଶୁଣିବେ ଯଦି କ'ଣ ହେବ ! ବାପୀ ଅମିତାଙ୍କୁ କୋଳକୁ ନେଇଗଲା– "ମୁଁ ତ ମହାରାଣୀଙ୍କୁ ନେଇ ନାଚିବି !" ବାପୀ ଅମିତାଙ୍କୁ ହସେଇ ଦେଇ ପାରିଥିବାରୁ, ତାକୁ କୋଳକୁ ନେଇ ବେଗରେ ଚକ୍କର କାଟିବାରେ ଲାଗିଲା । ଅମିତା ବାପୀର ଏ ଯତ୍ନରେ ହିତାକୁ ପାସୋରି ଦେଇ ନ ଥିଲେ । ଚିଡ଼ିଚିଡ଼େଇ ଯାଇ ପାଟିକଲେ, ମୋତେ ଛାଡ଼ିଦିଅ !"

ଯୁବରାଜ୍ଞୀ, ବାପୀ କୋଳରୁ ଉତୁରି ଯାଇ ହିତା ନ ଆସିଥିବାରୁ କ୍ରୋଧରେ ଭୂମିରେ ଗଡ଼ି-ଗଡ଼ି କାନ୍ଦିବାକୁ ଲାଗିଲେ । ବାପୀ ବିବଶ ଥିଲା । ରାଜକୁମାରୀ ତାର ପ୍ରାଣ ନେଇ, ତା ପ୍ରାଣରେ ଖେଳଣା ତିଆରି ହେଲେ ଯଦି ବାହୁଲି ଯାଆନ୍ତେ ତାହାହେଲେ ସେ ତାଙ୍କୁ ସନ୍ତୁଷ୍ଟ କରିବାର ଯତ୍ନ କରନ୍ତା । ଚାହୁଁଥିଲା, ନିଜ ଉଦ୍ଧତ ଝିଅ ଉପରକୁ ଆସିଥିବା ସଂକଟ କେମିତିହେଲେ ଟଳି ଯାଆନ୍ତା । କିନ୍ତୁ ଅମିତା ଉଚ୍ଚୈସ୍ୱରରେ ହିତାକୁ ଡାକି ଡାକି କାନ୍ଦିବାକୁ ଲାଗିଲେ ।

"ଝିଅ କାହିଁକି କାନ୍ଦୁଛି ?" କକ୍ଷ ବାହାର ଅଳିନ୍ଦ ଭିତରୁ କ୍ରୋଧଭରା ଡାକ ଶୁଣାଗଲା । ସ୍ୱର ରାଜମାତାମହୀଙ୍କର ଥିଲା । ବାପୀର ପାଦତଳୁ ଭୂମି ଖସିଗଲା । ରାଜମାତାମହୀ ଏକ ଦାସୀର କାନ୍ଧ ଓ ଅନ୍ୟ ଦାସୀର ବାହୁର ସାହାରା ନେଇ କକ୍ଷ ଭିତରକୁ ଚାଲିଆସୁଥିଲେ । ସେ ରାଗରେ କ୍ରୋଧ ପ୍ରକାଶ କଲେ– "ଦୁଷ୍ଟା, ଝିଅକୁ କନ୍ଦଉଛୁ କାହିଁକି ?"

ବାପୀ କାଠ ପରି ସ୍ତବ୍ଧ ରହିଗଲା । ତାର ଓଠରୁ ଆଉ ଶବ୍ଦ ବାହାରିଲା ନାହିଁ । ଜେଜେମାଙ୍କ ଗେଲ ହେତୁ ଅମିତା ଆହୁରି ଡେଇଁ ଡେଇଁ ଉଚ୍ଚୈସ୍ୱରରେ କାନ୍ଦି ଡାକ ପକେଇଲେ– "ହିତୁକୁ ଡାକ ! ହିତୁକୁ ଡାକ !"

ଯୁବରାଜ୍ଞୀଙ୍କର କ୍ରନ୍ଦନ-ଶବ୍ଦରେ ଅଳିନ୍ଦ ଏବଂ ଅଗଣା ମଧ୍ୟରୁ କେତେକ ଦାସୀ ଏବଂ ଯବନୀ ମଧ୍ୟ ଆସି ପହଞ୍ଚିଲେ । ରାଜମାତାମହୀଙ୍କ କ୍ରୋଧ ଦ୍ୱିଗୁଣିତ ହେଲା । ସେ ଉଚ୍ଚୈସ୍ୱରରେ ଡାକିଲେ– "କୁଆଡ଼େ ଗଲା ସେ ପିଶାଚୀ ? ଝିଅକୁ ଛାଡ଼ି କୁଆଡ଼େ ଗଲା ? ଦଣ୍ଡକଙ୍କୁ କୁହ, ସେ ଡାକିନୀର କଠୋର ଶାସନ କରିବେ !"

ଅମିତାଙ୍କ କ୍ରନ୍ଦନ ସ୍ୱର ଶୁଣି କଞ୍ଚୁକୀ ଉଦ୍ଧାଳ ମଧ୍ୟ ଆସିଯାଇଥିଲେ । ଉଦ୍ଧାଳ ଝାମ୍ପିପଡ଼ି ଅମିତାକୁ ଉଠାଇ କାନ୍ଧରେ ପକେଇ ଆଶ୍ୱାସନା ଦେଲା– "ଅମ୍ମେ, ମହାରାଣୀ, ହିତୁ ମହାରାଣୀଙ୍କ ପାଇଁ ଅନେକ ସୁନ୍ଦର କଣ୍ଢେଇ ଆଣିଛି । ହିତୁ ତ କୁରଙ୍ଗ ଶାବକମାନଙ୍କୁ କୋମଳ ଦୂବଘାସ ଖୁଆଉଛି । ଚାଲ !" ମହାରାଣୀ ଉଦ୍ୟାନ ଅଭିମୁଖେ ଚାଲିଲେ । ଭଦ୍ରେ ଲେଖା ଓ ଭଦ୍ରେ ସୀତା ମଧ୍ୟ ଚାଲିଲେ ।

କଞ୍ଚୁକୀ ଅମିତାଙ୍କୁ କୋଳରେ ଏବଂ ଲେଖା ଓ ସୀତାଙ୍କୁ ସାଙ୍ଗରେ ନେଇ ଅଗଣାରୁ ଚାଲିଗଲା । ରାଜମାତା ମଧ୍ୟ ଦାସୀ ହିତାର ଉଚ୍ଛୃଙ୍ଖଳତା ପ୍ରତି ରାଗରେ ଅସ୍ପଷ୍ଟ ସ୍ୱରରେ ତାକୁ ଉଚିତ ଦଣ୍ଡ ମିଳିବାର ଇଚ୍ଛା ପ୍ରକାଶ କଲେ । ପ୍ରମୋଦ-ଉଦ୍ୟାନ ଆଡ଼କୁ ଗଲେ । ସ୍ତବ୍ଧ ବାପୀ ହିଁ ଏକୁଟିଆ କକ୍ଷରେ ରହିଗଲା । ରାଜମାତା ମହୀଙ୍କର ଚାଲିଯିବା ପରେ ହିଁ ତା'ର ଭୟରେ କମ୍ପିବାକୁ ସାହସ ହେଲା । ତା ଶରୀର ଜଳର ବେଗବାନ ଧାରରେ ଉଠିଥିବା କାଶତୃଣ ପରି ଭୟରେ ଥରି ଉଠିଲା । ଅଗଣା ଓ ଅଳିନ୍ଦମାନଙ୍କରୁ ଦାସୀମାନଙ୍କ ଡାକ ଶୁଣା ଯାଇଥିଲା– "ହିତାକୁ ଡାକ !.... ଦୁଷ୍ଟା କୁଆଡ଼େ ଗଲା ! ତାକୁ ଶୀଘ୍ର ଡାକ !" ନିଜ ଝିଅର ମୂର୍ଖତାପ୍ରତି କ୍ରୋଧରେ ବାପୀର ନେତ୍ରରୁ ନା ଲୁହ ଗଡ଼ି ପାରୁଥିଲା ନା ମୁଖରୁ ଶବ୍ଦ ବାହାରି ପାରୁଥିଲା; ସେ ତ୍ରାସରେ ସ୍ତବ୍ଧ ହୋଇ ରହି ଯାଇଥିଲା ।

× × × × ×

ହିତା ବିଳମ୍ବ ହୋଇଯାଇଥିବା କାରଣରୁ ଭୟଭୀତା ହୋଇ ରାଜପ୍ରାସାଦର ଦ୍ୱାରଦେଶକୁ ଆସିଲା । ତାର ଉକୁଟି ଉଠିଥିବା ଗହମରଙ୍ଗିଆ ଗାଲରେ ଭୟର ମଳିନ ଭାବ ଏବଂ ବିଶାଳ ନେତ୍ରଯୁଗଳର ଶ୍ୱେତକୋଣରେ ଆତଙ୍କ ଝଲସି ଉଠୁଥିଲା । ସେ ଆତ୍ମିକ ଭରସା ଓ ମାନସିକ ଦମ୍ଭ ପାଇଁ ନିଜ ଅଞ୍ଚଳରେ ସମ୍ଭାଳିଥିବା କଣ୍ଢେଇ ଓ ଖେଳନାସବୁକୁ ଛାତି ଉପରେ ଜାକି ରଖିଥିଲା, ଯେଉଁଭଳିକି ଭୟ ଓ ସଂକଟର ତୀକ୍ଷ୍ଣ ଦୃଷ୍ଟିମାନଙ୍କରୁ ସେ ଯୁବରାଜ୍ଞୀଙ୍କ ଖେଳନା ସବୁ କବଚ ରୂପେ ତା'ର ରକ୍ଷା କରି ପାରୁଥିଲେ ।

ଭାଗୀ ହେବାକୁ ହେବ । ଯୁବକମଣ୍ଡଳୀ ଶ୍ରଦ୍ଧା ଥାଇ ମଧ ଧର୍ମର ଶରଣ ନେଇ ପାରୁ ନାହାନ୍ତି । ମହାମାତ୍ୟ ପଶୁରକ୍ତ ଓ ମଦ୍ୟର ପ୍ରବାହରେ ପ୍ରଜାଙ୍କୁ ଉନ୍ମତ୍ତ କରୁଛନ୍ତି । ସଂସାର ବିରକ୍ତ ମହାରାଣୀଙ୍କର ଆପଣା ଅଧିକାର ପ୍ରତି କୌଣସି ଚିନ୍ତା ନାହିଁ । ବାଳିକା ଯୁବରାଣୀଙ୍କର ବା କୋଉ ଜ୍ଞାନ ! ସେମାନଙ୍କର ଏହି ଉପେକ୍ଷା ଯୋଗୁଁ ରାଜସିଂହାସନ ଯେପରି ଆଚାର୍ଯ୍ୟଙ୍କର । ଯୁଦ୍ଧରେ ପ୍ରଜା ଅସମର୍ଥ ହୋଇଗଲେ ଯଦି ସେ ରାଜସିଂହାସନ ପର୍ଯ୍ୟନ୍ତ ଅଧିକାର କରିନେବେ, ତେବେ କିଏ ତାଙ୍କର ବିରୋଧ କରିପାରିବ ।

ଅସଂଦ ନିରାଶ କଣ୍ଠରେ ଉତ୍ତର ଦେଲେ– 'ଯେଉଁ ରାଜ୍ୟରେ ପାପର ମାତ୍ରା ଅଧିକ ହୋଇଯାଏ ତା'ର ବିନାଶ ହେବା ହିଁ ଉଚିତ । ସେଭଳି ପାପ ପଙ୍କରେ ଭିକ୍ଷୁ କାହିଁକି ନିବାସ କରିବେ !

ସୌମିତ୍ର ଘଡ଼ିକଲାଗି ବିଚାରମଗ୍ନ ହୋଇ କହିଲା– 'ଭନ୍ତେ, ଆପଣାର ଚିତ୍ତଶାନ୍ତି ନିମନ୍ତେ ଆପଣ ପାପୀ ଦେଶର ତ୍ୟାଗ କରିପାରିବେ । ମାତ୍ର ଭନ୍ତେ ତ କେବଳ ନିଜର ନିର୍ବାଣ କଥା ଚିନ୍ତା କରୁ ନାହାନ୍ତି; ଆପଣ ବହୁଜନ ହିତାୟ, ବହୁଜନ ସୁଖାୟର ସାଧନା କରି ଆସିଛନ୍ତି ? ସହସ୍ର ଭିକ୍ଷୁଙ୍କର ଏଇ ସଂଘାରାମର କଣ ହେବ ? ମହାବିହାର ନିମନ୍ତେ ସଞ୍ଚିତ ଲକ୍ଷ ଲକ୍ଷ ଧରଣ କ'ଣ ଆଚାର୍ଯ୍ୟଙ୍କୁ ସମର୍ପି ଦେଇଯିବେ ? ଧର୍ମ ବିମୁଖ ରାଜ୍ୟର ପ୍ରଜାଙ୍କର କ'ଣ ହେବ ? ଭନ୍ତେ, ସେଭଳି ହେଲେ ତାହା ପାପ ଓ ହିଂସାକୁ ପ୍ରଶ୍ରୟ ଦେବାଭଳି ହେବ ।'

ସ୍ଥବିର କ୍ଷୁବ୍ଧ କଣ୍ଠରେ ଉତ୍ତର ଦେଲେ– 'ଯେଉଁ ରାଜ୍ୟ ଏବଂ ନଗରର ପ୍ରଜା ବାସନାର ଲୋଭରେ ଧର୍ମ ଏବଂ ପରଲୋକ ବିଷୟରେ ଚିନ୍ତା କରେ ନାହିଁ, ଧର୍ମ ଏବଂ ସଂଘର ଆଦର କରେ ନାଇଁ, ସେ ଆପଣା କୃତକର୍ମର ଫଳ ଭୋଗ କରିବ । କର୍ମଫଳ ହିଁ ତ ମନୁଷ୍ୟକୁ ବାନ୍ଧି ରଖେ ! ଯାହାର ଯେଉଁଭଳି କର୍ମ ତାର ଫଳ ମଧ ସେଇଭଳି ହେବ ।'

ସୌମିତ୍ର ବିହ୍ୱଳ ହୋଇ ପ୍ରାର୍ଥନା କଲା– 'ଭନ୍ତେ, ଆଦେଶ ଦେଲେ ଉପାସକ ନିବେଦନ କରିବ । ରାଜ୍ୟ କଳିଙ୍ଗର ରାଜବଂଶର । ମହାରାଣୀ ହିଂସାକୁ ପ୍ରଶ୍ରୟ ଦେବାକୁ ଚାହାନ୍ତି ନାହିଁ । ମହାରାଣୀଙ୍କର ଅଜ୍ଞାତସାରରେ ହିଂସାର ପାପ ରାଜ୍ୟକୁ ଗ୍ରାସ କରି ଚାଲିଛି । ମହାରାଣୀ ତାଙ୍କ ରାଜ୍ୟରେ ସାଧନାରତ ଭିକ୍ଷୁଙ୍କର ମଧ ଅପମାନ ହେଉଛି ବୋଲି ଜାଣନ୍ତି ନାହିଁ । ଭନ୍ତେ ଏହା ଧର୍ମ ବିରୋଧୀମାନଙ୍କର ଅଭିସନ୍ଧି ମାତ୍ର ଏବଂ କେବଳ ମାତ୍ର ଆପଣଙ୍କର ହିଁ ଧର୍ମକୁ ରକ୍ଷା କରିବାର ଶକ୍ତି ଅଛି ।'

ସ୍ଥବିର ଚିନ୍ତିତ ଦୃଷ୍ଟିରେ ଶ୍ରେଷ୍ଠୀଙ୍କୁ ଦେଖିଲେ ଓ ପଚାରିଲେ– 'ଉପାସକଙ୍କର କ'ଣ ଅଭିପ୍ରାୟ !'

ସୌମିତ୍ର ରହସ୍ୟପୂର୍ଣ୍ଣ କଣ୍ଠରେ କହିଲା– 'ଭନ୍ତେଙ୍କର ଚିନ୍ତା ଏବଂ ସେହି ଚିନ୍ତାର କାରଣରୁ ଭନ୍ତେଙ୍କର ଉପାସ କରୁଥିବା ସମାଚାର ଶୁଣି ମୋଭଳି ଏକ କ୍ଷୁଦ୍ର ଉପାସକର ଯଦି ଦୁଃଖ ହେଲା, ତେବେ ମହାରାଣୀ ଶୁଣିଲେ କେବେ ଦୁଃଖ କରିବେ ନାହିଁ ! ମହାରାଣୀ ନଗରରେ ଅଧର୍ମ ବୃଦ୍ଧି ସମ୍ବନ୍ଧରେ କିଛି ହେଲେ ଜାଣନ୍ତି ନାହିଁ । ଆଚାର୍ଯ୍ୟ ପ୍ରଜାଙ୍କର ଡାକ ମହାରାଣୀଙ୍କ ନିକଟକୁ ପହଞ୍ଚିବା ପଥର ବି ଏକ ବିରାଟ ଅନ୍ତରାୟ । ବର୍ତ୍ତମାନ ମହାରାଣୀଙ୍କର ଶିବିକା ବିହାରକୁ ଆସିବ । ପ୍ରାୟ ଦେଢ଼ଘଡ଼ି ସମୟ ଅଛି । ମାତ୍ର ବର୍ତ୍ତମାନ ମଧ୍ୟ ମୋତେ ବେଶ କଷ୍ଟ କଲା ପରେ ରାଜପୁରୁଷମାନେ ବାଟ ଛାଡ଼ିଛନ୍ତି .... ।

ଅନେକ ସମୟ ପର୍ଯ୍ୟନ୍ତ ଅସ୍ଫୁଟ ସ୍ୱରରେ ସ୍ଥବିର ଏବଂ ସୌମିତ୍ର ମଧ୍ୟରେ ମନ୍ତ୍ରଣା ଚାଲିଥାଏ । ସୌମିତ୍ର ବିହାରରୁ ବାହୁଡ଼ି ଆସିବା ପରେ ସ୍ଥବିର ଅସଂଦ ଆହୁରି ଏକଘଡ଼ି ପର୍ଯ୍ୟନ୍ତ ମହାସ୍ଥବିର ଜୀବକଙ୍କ ସହିତ ବିଚାର ଆଲୋଚନା କରୁଥିଲେ ।

× × × × ×

କଳିଙ୍ଗର ମହାମାତ୍ୟ ଆଚାର୍ଯ୍ୟ ସୁକଣ୍ଠ ଏବଂ ମହାସେନାପତି ଭଦ୍ରକୀର୍ତ୍ତି ଅଶୋକଙ୍କର ଆକ୍ରମଣର ପ୍ରତିରୋଧ କରିବାର ଆୟୋଜନ ଲାଗି ଅବିରାମ ବ୍ୟସ୍ତ ରହୁଥିଲେ । ଅନେକ ସାମନ୍ତ ସେନାପତିମାନଙ୍କର ନେତୃତ୍ୱରେ ସହସ୍ର ସହସ୍ର ସୈନିକ ନେଇ ଉତ୍ତର-ପଶ୍ଚିମାଞ୍ଚଳକୁ ପଠାଇବା ଆରମ୍ଭ ହୋଇ ସାରିଥାଏ । କଳିଙ୍ଗର ସବୁ ନଗରରେ ଲୌହ, ତମ୍ବା ଓ ଅନ୍ୟାନ୍ୟ ଧାତୁର କାରିଗରମାନେ ନିରନ୍ତର ଶସ୍ତ୍ର ନିର୍ମାଣ କାର୍ଯ୍ୟ ଆରମ୍ଭ କରି ଦେଇଥିଲେ । କାଠ, ବାଉଁଶ, ଚମଡ଼ା ଓ ସୂତାର କାରିଗରମାନେ ମଧ୍ୟ ନିରନ୍ତର ଯୁଦ୍ଧସାମଗ୍ରୀ ହିଁ ପ୍ରସ୍ତୁତ କରୁଥିଲେ । ଏହି ଅବିରାମ ପରିଶ୍ରମ ପାଇଁ ମହାବଳି ଯଜ୍ଞର ଯୋଜନା ତାଙ୍କର ଉତ୍ସାହ ବର୍ଦ୍ଧନ କରୁଥାଏ । ପ୍ରଜାମାନେ ଆତଙ୍କ ଭୁଲି ଆତ୍ମବିଶ୍ୱାସରେ ଆତ୍ମରକ୍ଷା ଓ ଯୁଦ୍ଧରେ ନିଃଶଙ୍କ ଝାସ ଦେବାକୁ ଆନନ୍ଦରେ ପ୍ରସ୍ତୁତ ହେଉଥିଲେ ।

ଆପଣା ରାଜ୍ୟ ଉପରେ ଆକ୍ରମଣର ଆଶଙ୍କା ଓ ରାଜ୍ୟ ରକ୍ଷାର ଚିନ୍ତା ମହାରାଣୀଙ୍କର ମଧ୍ୟ ଥିଲା ମାତ୍ର ସେ ମହାବୋଧି ବିହାରର ମହାସ୍ଥବିରଙ୍କର ଜ୍ଞାନମୟ ଉପଦେଶର ପ୍ରଭାବରେ ଶସ୍ତ୍ର ଓ ହିଂସାର ଶକ୍ତିକୁ ହେୟ ମନେ କରୁଥିଲେ । ତାଙ୍କର ବିଶ୍ୱାସ ଥିଲା–

ସ୍ୱର୍ଗୀୟ ମହାରାଜ ଅଶୋକଙ୍କୁ ଶସ୍ତ୍ର ଶକ୍ତିରେ ପରାଜିତ କରି ମଧ୍ୟ କଳିଙ୍ଗକୁ ଭୟହୀନ କରିପାରି ନ ଥିଲେ । ଅଶୋକ ଥରେ ହାରିଯାଇ ପୁଣି ଆକ୍ରମଣ କରିବାକୁ ଆସୁଛନ୍ତି । ଏହିଭଳି ଆକ୍ରମଣ ଏବଂ ପ୍ରତିରକ୍ଷାର କେବେହେଲେ ଅନ୍ତ ହେବ ନାହିଁ । କଳିଙ୍ଗର ରକ୍ଷା କେବଳମାତ୍ର ଲୀଳାମୟଙ୍କର ଦିବ୍ୟ ଶକ୍ତି ଦ୍ୱାରାହିଁ ସମ୍ଭବ ହେବ । ଅଶୋକ ମଧ୍ୟ ତାଙ୍କର ସେଇ ଲୀଳାର ଏକ ତୁଚ୍ଛ ଅଂଶ । ଲୀଳାମୟ ଭଗବାନ୍‌ଙ୍କ ଉପରେ ବିଶ୍ୱାସ ଥିଲେ ସେ ସ୍ୱୟଂ କଳିଙ୍ଗର ରକ୍ଷା କରିବେ । ମହାରାଣୀଙ୍କର ରାଜ୍ୟ ଆକ୍ରମଣର ଆଶଙ୍କାଠାରୁ ସ୍ୱୟଂ କର୍ମଫଳର ବନ୍ଧନରୁ ମୁକ୍ତ ହୋଇ ନିର୍ବାଣ ପ୍ରାପ୍ତିର ଚିନ୍ତା ଅଧିକ ଥିଲା ।

ମହାରାଣୀଙ୍କର ଶ୍ରଦ୍ଧା ଏବଂ ଅନୁରୋଧ ହେତୁ ମହାସ୍ଥବିର ଜୀବକ ତାଙ୍କୁ ବିଶ୍ୱାସ ଦେଇଥିଲେ ଯେ ମହାରାଣୀ ତାଙ୍କର ସାଧନା ପୂର୍ଣ୍ଣ କରିନେବା ପରେ ତଥାଗତଙ୍କର ସୂକ୍ଷ୍ମଲୋକ ସ୍ଥିତ ରୂପର ସାକ୍ଷାତ୍‌କାର କରିପାରିବେ । ତଥାଗତଙ୍କର ସାକ୍ଷାତ୍‌କାର ହେବା ମାତ୍ରକେ ମହାରାଣୀ ଦିବ୍ୟଶକ୍ତି ଏବଂ ବିଭୂତିସମ୍ପନ୍ନ ହୋଇଯିବେ । ସେ ଶରୀର ଥାଇ ମଧ୍ୟ ନିର୍ବାଣ ଅବସ୍ଥାକୁ ପ୍ରାପ୍ତ ହେବେ । ତାଙ୍କର ସେହି ଦିବ୍ୟ ଶକ୍ତିରେ ଆତତାୟୀ ଅଶୋକଙ୍କର ପରାଭବ କ୍ଷଣମାତ୍ରକେ ହୋଇଯିବ । ସେହି ଦିବ୍ୟଶକ୍ତିର ଚମତ୍କାରରେ ଅଶୋକ ଏବଂ ମଗଧର ଅସଂଖ୍ୟ ହାତୀ, ଘୋଡ଼ା ଆଉ ରଥସେନା ସାଧକମାନଙ୍କର ନିଃଶ୍ୱାସ ପବନରେ ଏଭଳି ଉଡ଼ିଯିବ ଯେଭଳି ବର୍ଷାଋତୁର ପ୍ରଥମ ତୋଫାନରେ ଗ୍ରୀଷ୍ମକାଳରେ ଝରିଯାଇଥିବା ପତ୍ର ଉଡ଼ିଯାଏ ।

କଳିଙ୍ଗର ମହାରାଣୀ ପ୍ରତ୍ୟେକ ପୂର୍ଣ୍ଣିମା ଓ ଅମାବାସ୍ୟା ଦିନ ମହାବୋଧି ବିହାରର ଭିକ୍ଷୁମାନଙ୍କର ଭୋଜିନିମନ୍ତେ ଏକଶତ ଏକ ଭାର ଭିକ୍ଷା ପଠେଇ ଦେଉଥିଲେ । ଭିକ୍ଷୁମାନଙ୍କୁ ଭିକ୍ଷାରେ ସନ୍ତୁଷ୍ଟ କରି ଗୋଟାଏ ପ୍ରହର ମହାସ୍ଥବିରଙ୍କର ପ୍ରବଚନ ଶ୍ରବଣ କରି ତୃତୀୟ ପ୍ରହର ବେଳକୁ ପ୍ରାସାଦକୁ ଫେରି ଆସୁଥିଲେ ।

ବେଣୁକ ଗ୍ରାମର ଘଟଣା ସମୟରେ ଏବଂ ଅନ୍ୟ ଅବସର ବେଳେ କେତେକଙ୍କର ପ୍ରାର୍ଥନା ହେତୁ ମହାରାଣୀ ରାଜାଜ୍ଞାରେ ହସ୍ତକ୍ଷେପ କରିଥିଲେ । ତେଣୁ ମହାମାତ୍ୟ ନଗରପାଳଙ୍କୁ ମହାରାଣୀଙ୍କର ସବାରି ନଗର ପଥରେ ଯିବାବେଳେ ବିଶେଷ ସତର୍କତା ଅବଲମ୍ବନ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଯେଭଳି ଜନସାଧାରଣ ତାଙ୍କର ସମୀପକୁ ଯାଇପାରିବେ ନାହିଁ ଏବଂ ଅବାଞ୍ଛିତ ଲୋକେ ତାଙ୍କୁ କ୍ଷୁବ୍ଧ କରିପାରିବେ ନାହିଁ । ପ୍ରାସାଦର କର୍ମାନ୍ତାଧ୍ୟକ୍ଷାୟକ ମଧ୍ୟ ମହାରାଣୀଙ୍କର ଦର୍ଶନ ପ୍ରାର୍ଥୀଙ୍କର ପ୍ରୟୋଜନ ଜାଣି ପ୍ରଥମେ ମହାମାତ୍ୟଙ୍କୁ ସୂଚନା ଦେଇ ପରେ ବ୍ୟବସ୍ଥା କରୁଥିଲେ ।

ରାଜପ୍ରାସାଦରୁ ମହାରାଣୀଙ୍କର ପାଲିଙ୍କି ବାହାରିବା ପୂର୍ବରୁ ରାଜପଥର ଉଭୟ ପାର୍ଶ୍ୱରେ ରାଜପୁରୁଷ ସାବଧାନ ହୋଇ ରହୁଥିଲେ । ଗହଳି ରାଜପଥରୁ ଅପସାରିତ ହୋଇଯାଉଥିଲା । ମାର୍ଗର ଉଭୟ ପାର୍ଶ୍ୱରେ ଥିବା ବିପଣୀମାନଙ୍କରେ ଠିଆ ହୋଇଥିବା ଲୋକେ ମହାରାଣୀଙ୍କୁ ଦେଖି ନତମସ୍ତକ ହୋଇ ଜୟଜୟକାର କରୁଥିଲେ, ମାତ୍ର ପଥ ଉପରକୁ କେହି ଆସୁ ନ ଥିଲେ ।

ବିହାରରେ ପ୍ରଥମେ ଏକଶତ ଏକ ଭାରବାହକ ଭିକ୍ଷା ନେଇ ଏବଂ ତତ୍‌ପରେ ମହାରାଣୀଙ୍କର ରକ୍ଷକବେଷ୍ଟିତ ଶିବିକା ପ୍ରବେଶ କଲା । ବିହାର ଦ୍ୱାରରେ ପ୍ରବେଶ କରିବାମାତ୍ରକେ କେଜାଣି କାହିଁକି ମହାରାଣୀଙ୍କୁ ଅମଙ୍ଗଳର ଆଶଙ୍କା ହେଲା । ମହାସ୍ଥବିର ଜୀବକ, ସ୍ଥବିର ଅସଂଦ ଓ ଆନନ୍ଦ ଯଥାବିଧି ସ୍ୱସ୍ତି ଓ ଆଶୀର୍ବାଦରେ ମହାରାଣୀଙ୍କର ସ୍ୱାଗତ କରିବାକୁ ଉପସ୍ଥିତ ନ ଥିଲେ । ଏକ ଶତ ଏକ ଭାର ଭିକ୍ଷା ପ୍ରତି ମଧ କେହିଁ ଦୃଷ୍ଟି ଦେଲେ ନାହିଁ । ସେଠାରେ ଯେଭଳି ଚିନ୍ତା ଓ ଆଶଙ୍କିତ ବାତାବରଣ ରହିଥିଲା ସେହି ସ୍ତବ୍ଧତାରେ ବିହାର ମଧ୍ୟରେ ମଧ୍ୟାହ୍ନ ପବନରେ ଆନ୍ଦୋଳିତ ବିଶାଳ ପିପ୍ପଳ ବୃକ୍ଷର ପତ୍ର ସମୂହର ମର୍ମର ଧ୍ୱନି ହାହାକାର ରବ ଭଳି ଦାରୁଣ ମନେ ହେଉଥିଲା । ଦ୍ୱାରଦେଶରେ ଠିଆ ହୋଇ ରହିଥିବା ଦୁଇଜଣ ମୌନ ଭିକ୍ଷୁ ମହାରାଣୀଙ୍କୁ ମାର୍ଗ ଦେଖେଇ ମହାରାଣୀଙ୍କୁ ମହାସ୍ଥବିରଙ୍କ ପାଖକୁ ପାଛୋଟି ନେଲେ । ମହାସ୍ଥବିର ସେତେବେଳେ ତାଙ୍କର ଧ୍ୟାନଗୁମ୍ଫାରେ ଆସନରେ ବିଚାର ମୁଦ୍ରାରେ ବସିଥିଲେ ।

ମହାରାଣୀଙ୍କର ପ୍ରଣାମର ଉତ୍ତରରେ ମହାସ୍ଥବିର ଅଭୟମୁଦ୍ରାରେ ଆଶୀର୍ବାଦ ଦେଇ ଆସନ ଗ୍ରହଣ କରିବାକୁ ସଂକେତ ଦେଲେ । ଜଣେ ରାଜଦାସୀ ମହାସ୍ଥବିରଙ୍କ ସମ୍ମୁଖରେ ତାଙ୍କ ପାଇଁ ଆସନ ପାରିଦେଲା । ମହାରାଣୀ ଆସନ ଗ୍ରହଣ କରି ହାତଯୋଡ଼ି ପ୍ରାର୍ଥନା କଲେ– 'ଭନ୍ତେ, ସଂଘ ପାଇଁ ଉପାସିକାର ଭିକ୍ଷା ସ୍ୱୀକାର କରିବା ହୁଅନ୍ତୁ ।'

ମହାସ୍ଥବିର ମହାରାଣୀଙ୍କୁ ସମ୍ବୋଧନ କରି କହିଲେ– 'ପରମ ଭଗବତୀ ଉପାସିକାଙ୍କର ଧର୍ମ ପ୍ରତି ଶ୍ରଦ୍ଧା ହେତୁ ରାଜ୍ୟର କଲ୍ୟାଣ ହେଉ ମାତ୍ର ସଂଘ ପାଇଁ ମହାରାଣୀଙ୍କର ଭିକ୍ଷା ଉପଯୋଗୀ ନୁହେଁ । ଭିକ୍ଷୁର ପାପ ଓ ହିଂସାରତ-ଯଜମାନ-ଗୃହର ଭିକ୍ଷା ଗ୍ରହଣ କରିବା ଉଚିତ ନୁହେଁ ।'

ଜୀବକଙ୍କର ଉକ୍ତି ଶୁଣି ମହାରାଣୀଙ୍କର ହୃଦୟ ବେଦନା ମଥିତ ହେଲା; ତା ଅଦେଖା କରି ଜୀବକ କହିଚାଲିଥିଲେ– 'ସ୍ଥବିର ଅସଂଦ ଓ ସଂଘର ଅନେକ ଭିକ୍ଷୁ ରାଜ୍ୟ ଓ ନଗରରେ ବ୍ୟାପ୍ତ ପ୍ରଚଣ୍ଡ ହିଂସା ଓ ଧର୍ମନାଶ ହେତୁ ବ୍ୟଥିତ ହୋଇ ଧର୍ମ ରକ୍ଷା ନିମନ୍ତେ ନିରାହାର ରହି ତଥାଗତଙ୍କର ଧ୍ୟାନ କରୁଛନ୍ତି ।

ନଗରରେ ଧର୍ମ ଓ ସଂଘର ଶରଣ ନିମନ୍ତେ ସଂସାରର ତ୍ୟାଗ କରିଥିବା ଭିକ୍ଷୁଙ୍କୁ ବି ସୈନିକ କାର୍ଯ୍ୟର ହିଂସା ପ୍ରବୃତ୍ତ କରିବାକୁ ହକାରି ନିଆଯାଉଛି । ରାଜ୍ୟରେ ତଥାଗତଙ୍କର ଅନୁଯାୟୀ, ସଂସାରତ୍ୟାଗୀ ଭିକ୍ଷୁ ଅପମାନିତ ହେଉଛନ୍ତି । ସଂଘର ସଂପୂର୍ଣ୍ଣ ଧର୍ମ ପ୍ରତିଦିନର ସହସ୍ର ସହସ୍ର ପଶୁବଳିର ରକ୍ତରେ ବୁଡ଼ିଯିବ । ଧର୍ମରେ ଆସିଥିବା ସଂକଟରୁ ରକ୍ଷା ନିମନ୍ତେ ନିରାହାର ରହି ଭିକ୍ଷୁମାନେ ପରିତ୍ରାଣ ଦିବାସେନାର ପାଠ କରୁଛନ୍ତି । ଯେତେବେଳ ପର୍ଯ୍ୟନ୍ତ ସଂଘ ଏବଂ ରାଜ୍ୟରେ ଅଧର୍ମର ସଂକଟ ରହିଥିବ ସେତେବେଳ ପର୍ଯ୍ୟନ୍ତ ସଂଘ ନିରାହାର ବ୍ରତ ପାଳନ କରିବ ।'

ମହାରାଣୀଙ୍କର ଉଜ୍ଜ୍ୱଳ ମୁଖମଣ୍ଡଳ ମଳିନ ହୋଇଗଲା । ସେ ହାତଯୋଡ଼ି ବିସ୍ମୟ ପ୍ରକାଶ କଲେ – 'ରାଜ୍ୟରେ ଓ ସଂଘରେ ଅଧର୍ମର ସଂକଟ... ? ଜ୍ଞାନଧର ଭନ୍ତେ, ଉପାସିକାର ଅଜ୍ଞାନତା ଦୂର କରନ୍ତୁ । ଉପାସିକାର ଅପରାଧର ସୂଚନା ଦିଅନ୍ତୁ ... !'

ମହାସ୍ଥବିର ଉତ୍ତର ଦେଲେ – 'ଶାସ୍ତ୍ରମାନେ ପଶୁବଳିକୁ ହିଂସା ଓ ପାପ ବୋଲି କହିଛନ୍ତି । ବଳିପାଇଁ ଅନ୍ୟକୁ ବଳାତ୍ ବାଧ କରିବା ମଧ୍ୟ ତା'ଠାରୁ ବଡ଼ ପାପ । ଭିକ୍ଷୁର ବେଶ ଓ ଧର୍ମର ନିରାଦର ହେଲେ ରାଜା ସ୍ୱୟଂ ଅପରାଧୀ ହୋଇଥାନ୍ତି । ନିତ୍ୟ ସହସ୍ର ସହସ୍ର ପଶୁବଳି ରାଜ୍ୟ ଓ ସଂଘକୁ ରସାତଳକୁ ନେଇଯିବ । ଏଭଳି ହିଂସାରୁ ପରିତ୍ରାଣ ନିମନ୍ତେ ଧର୍ମର ଶକ୍ତି ରୁଦ୍ର ରୂପ ଧାରଣ କରିଥାଏ । ପାପର ସେହି ଅଗ୍ନିରେ ରାଜ୍ୟ ସ୍ୱାହା ହୋଇଯାଏ ।

ମହାସ୍ଥବିରଙ୍କ ଉକ୍ତିରେ ମହାରାଣୀଙ୍କର ହୃଦୟ ଥରିଉଠିଲା । ଆଖିବୁଜି, ହାତଯୋଡ଼ି ତଥାଗତଙ୍କର ଧାତୁପାତ୍ରକୁ ସ୍ମରଣ କରି ସେ କହିଲେ – 'ଉପାସିକାର ଅଜ୍ଞାନ ଏବଂ ଉପେକ୍ଷା ହେତୁ ହିଁ ପାପର ବୃଦ୍ଧି ହୋଇଛି । ଉପାସିକା ସେହିହେତୁ ପରିତାପ କରୁଛି । ଭନ୍ତେ ଧର୍ମ ମାର୍ଗର ଅନୁଶାସନ କରନ୍ତୁ ।'

ସ୍ଥବିର ଜୀବକ ନିଷ୍ପଲକ ନେତ୍ରରେ ମହାରାଣୀଙ୍କର ନେତ୍ରକୁ ଦେଖିଲେ – 'ପରମଭଗବତୀ ଉପାସିକା ଆଜି ସୂର୍ଯ୍ୟାସ୍ତ ପୂର୍ବରୁ ରାଜାଜ୍ଞାର ଘୋଷଣା କରନ୍ତୁ ଯେ ରାଜ୍ୟରେ ଓ ନଗରରେ ବଳି ପଡ଼ିବ ନାହିଁ ଏବଂ ସୈନିକ କାର୍ଯ୍ୟପାଇଁ କାହାକୁ ବି ବାଧ କରାଯିବ ନାହିଁ ।'

ମହାରାଣୀ ମୌନ ରହି ଜୀବକଙ୍କୁ ଅନେଇ ରହିଲେ ଏବଂ କିୟତ୍‌କ୍ଷଣ ପରେ କାତର ସ୍ୱରରେ କହିଲେ – 'ଭନ୍ତେ, ଅଭୟ ପ୍ରଦାନ କରନ୍ତୁ, ଆଶ୍ୱାସନା ଦିଅନ୍ତୁ ଯେ ତଥାଗତଙ୍କର ଶରଣରେ ଆତତାୟୀର ଆକ୍ରମଣରେ ରାଜ୍ୟର ସୁରକ୍ଷା ହେବ ।'

ମହାସ୍ଥବିରଙ୍କର ମୁଖମଣ୍ଡଳରେ ବିଦ୍ରୂପର ସ୍ମିତହାସ୍ୟ ଖେଳିଗଲା – 'ସଂଶୟାତ୍ମା ଭଗବାନ୍‌ଙ୍କର କୃପା ପ୍ରାପ୍ତ ହୁଏ ନାହିଁ । ସେ ପରମ ଲକ୍ଷ୍ୟକୁ ମଧ୍ୟ ପ୍ରାପ୍ତ

ହୁଏ ନାହିଁ । ମଗଧ ଓ କଳିଙ୍ଗ ସେହି ଶକ୍ତିର ଲୀଳାର ଅଣୁମାତ୍ର ଏବଂ ସେମାନେ ସେହି ପରମଶକ୍ତିର ଶରଣାଗତ । ଯେଉଁ ଶରଣଦାତା ତଥାଗତ ସଂଶୟକାରୀର ଭ୍ରମ ଦୂର କରିବା ନିମନ୍ତେ ଆକାଶଖଣ୍ଡରେ ଅନେକ ଦ୍ୱୀପର ନିର୍ମାଣ କରି ଗୋଟାଏ ନାସାପୁଟରେ ଅଗ୍ନି ତଥା ଅପର ନାସାପୁଟରେ ଜଳ ବର୍ଷା କରିପାରନ୍ତି, ଯେ ଧର୍ମ ଏବଂ ଶରଣାଗତର ରକ୍ଷା ନିମନ୍ତେ ଅନେକ ଯୋନିରେ ଜନ୍ମଗ୍ରହଣ କରିପାରନ୍ତି, ଦେବ ଓ ଦାନବ ଯାହାଙ୍କର ଆଜ୍ଞାକାରୀ, ଯେ ପୃଥିବୀ, ସୂର୍ଯ୍ୟ, ଅଗ୍ନି, ଆକାଶ ଏବଂ ବାୟୁର ନିୟାମକ ଅଟନ୍ତି; ଗୁରୁଙ୍କର ନିର୍ଦ୍ଦେଶରେ ତାଙ୍କର କୃପା ଲାଭକରି ତାଙ୍କର ତତ୍ତ୍ୱରେ ସମାହିତ ହୋଇଯିବା ପରେ ଆଉ କୌଣସି କଥା ବାକି ରହିବ ନାହିଁ । ମନୁଷ୍ୟର ଅହଂକାର ହିଁ ତାର ବିଶ୍ୱାସକୁ ନିର୍ଜଳ କରି ତା'ପାଇଁ ସମ୍ଭବ-ଅସମ୍ଭବର ସୀମା ନିର୍ଦ୍ଧାରଣ କରିଦିଏ । ଉପାସିକା ସଂଶୟମୁକ୍ତ ହୁଅନ୍ତୁ ।'

ମହାରାଣୀ ଭକ୍ତିରେ ନତଶିର ହୋଇ ସ୍ୱୀକାର କଲେ 'ଭନ୍ତେ, ଆପଣଙ୍କର ଆଦେଶ ଅବଶ୍ୟ ପୂର୍ଣ୍ଣ ହେବ । ଜ୍ଞାନୀ ସ୍ଥବିର ଆଉ ସଂଘ ପାଇଁ ଚିନ୍ତା କରନ୍ତୁ ନାହିଁ, ଭିକ୍ଷା ସ୍ୱୀକାର କରନ୍ତୁ ।

ମହାରାଣୀଙ୍କ ନେତ୍ରରୁ ଆସନରେ ବସିରହି ପ୍ରସାରିତ କରିଥିବା ଅଞ୍ଜଳିରେ ଲୋତକ ଝରିପଡ଼ିଲା । ଅଧର ଚାପି ସେ କୌଣସିମତେ କୋହ ଚାପିବାର ପ୍ରୟାସ କଲେ ଏବଂ ଚିତ୍ତ ସ୍ଥିର କରିବାକୁ ତଥାଗତଙ୍କର ଧାତୁପାତ୍ର ସମ୍ମୁଖରେ ଏକାଗ୍ର ଧ୍ୟାନ କରି ଆଖିବୁଜି ରହିଲେ । ଚିତ୍ତ ସ୍ଥିର ହେବା ପରେ ସେ ଆଖି ଖୋଲିଲେ, ମାତ୍ର ସେତେବେଳେ ମଧ୍ୟ ତାଙ୍କର ଆଖିରେ ଲୁହ ଭରି ରହିଥିଲା ।

ମହାସ୍ଥବିର ମହାରାଣୀଙ୍କୁ ନିଷ୍ପଲକ ଦୃଷ୍ଟିରେ ଦେଖିଲେ । 'ଉପାସିକା, କ'ଣ ଚିନ୍ତା କରୁଛନ୍ତି କୁହନ୍ତୁ ।'

ମହାରାଣୀଙ୍କର ଆଖି ପୁଣି ଲୁହ ଛଳଛଳ ହୋଇଉଠିଲା । ସେ ବିହ୍ୱଳିତ ସ୍ୱରରେ ପଚାରିଲେ – 'ଭନ୍ତେ, ଉପାସିକାର ଚିତ୍ତ କେତେବେଳେ ଶାନ୍ତ ହେବ ? ସାଧନା କେତେବେଳେ ପୂର୍ଣ୍ଣ ହେବ... ଚମତ୍କାର ଦର୍ଶନ କେବେ ହେବ ? ରାଜ୍ୟ କେବେ ଭୟମୁକ୍ତ ହେବ ?'

ମହାସ୍ଥବିର ମହାରାଣୀଙ୍କୁ ଅପଲକ ନେତ୍ରରେ ଦେଖିଲେ । କହିଲେ – 'ଯେତେବେଳେ ମହାରାଣୀଙ୍କର ଚିତ୍ତ ଅହଂ ଏବଂ ସଂଶୟମୁକ୍ତ ହେବ, ଯେତେବେଳେ ଉପାସିକାଙ୍କର ଶରୀର ଓ ରାଜ୍ୟର ମୋହ ତଥା ଅହଂକାର ରହିବ ନାଇଁ, ଉପାସିକାଙ୍କର ଚିତ୍ତ ନିର୍ମଳ ହେବା ପରେ ଚମତ୍କାର ଦର୍ଶନ ଏବଂ ବୁଦ୍ଧତ୍ୱ ପ୍ରାପ୍ତି ହେବ ।'

ମହାରାଣୀଙ୍କୁ ତାଙ୍କର ପ୍ରଶ୍ନର ସମାଧାନ ହେଲା ବୋଲି ମନେ ହେଲା ନାହିଁ । କାତର ହୋଇ ମହାସ୍ଥବିରଙ୍କ ଆଗକୁ ଅଞ୍ଜଳି ବଢ଼େଇ ସେ ପ୍ରାର୍ଥନା କଲେ– 'ଭନ୍ତେ, ସେ ସମୟ କେବେ ଆସିବ ?'

ଜୀବକ କହିଲେ – 'ଯେତେବେଳେ ଗୁରୁଚରଣରେ ପୂର୍ଣ୍ଣ ଭକ୍ତି ଆସିଯିବ ।'

ମହାରାଣୀ କିୟତ୍‌କ୍ଷଣ ମୌନ ହେଲେ ଏବଂ ସେ ମହାସ୍ଥବିରଙ୍କ ସମ୍ମୁଖରେ ଭୂମିରେ ମଥାସ୍ପର୍ଶ କରି ରହିଲେ ଓ ଦୃଢ଼ ନିଶ୍ଚୟ କରିଥିବା ଭଳି ଗମ୍ଭୀର ଅଥଚ ନମ୍ରସ୍ୱରରେ କହିଲେ 'ଉପାସିକା ଆପଣାର ଶରୀର ଏବଂ ଏ ରାଜ୍ୟ ତଥାଗତ ଧର୍ମ ଓ ସଂଘ ପାଇଁ ଶ୍ରୀଗୁରୁ ଚରଣରେ ଅର୍ପଣ କରୁଛି । ଉପାସିକା ଚମତ୍କାର ଦର୍ଶନ୍ ପରେ ବିହାରରୁ ଯିବ ।'

ମହାରାଣୀଙ୍କର ମସ୍ତକ ଭୂମି ସ୍ପର୍ଶ କରି ରହିଥିଲା, ମାତ୍ର ପଛରେ ଠିଆହୋଇଥିବା ଦାସୀମାନେ ଦେଖିଲେ, ମହାସ୍ଥବିରଙ୍କର ଶରୀର ଶିହରିତ ହୋଇ ସ୍ଥିର ହୋଇଗଲା । ଜୀବକ କ୍ଷଣକ ଲାଗି ଆଖି ବୁଜିଦେଲେ ଏବଂ ପୁଣି ମହାରାଣୀଙ୍କୁ ସମ୍ବୋଧନ କରି କହିଲେ –

'ଉପାସିକା ଚମତ୍କାର ଦର୍ଶନ ପାଇଁ ଚିତ୍ତ ନିର୍ମଳ କରୁ । ତା' ଲାଗି ପୂର୍ଣ୍ଣ ତ୍ୟାଗର ସଂକଳ୍ପ ନେଇ ଛତିଶ ଘଡ଼ି କାଳ ମୌନ ଏବଂ ଧ୍ୟାନାବସ୍ଥିତ ରହୁ । ଉପାସିକା, ରାଜ୍ୟାଡ଼ମ୍ବର ବିନା ଧର୍ମାର୍ପଣ ହେବ । ମଧ୍ୟରାତ୍ରିରେ ବିହାରକୁ ପ୍ରବେଶ କରୁ । ସେତେବେଳେ ଉପାସିକା ଚମତ୍କାର ଦର୍ଶନ ଦ୍ୱାରା ସିଦ୍ଧି ଲାଭ କରିବ ।'

ମହାରାଣୀ ମଥାଟେକି ଜୀବକଙ୍କୁ ଉତ୍ତର ଦେଲେ 'ଭନ୍ତେଙ୍କର ଆଦେଶ ପୂର୍ଣ୍ଣ ହେବ । ଉପାସିକା ଭନ୍ତେଙ୍କର ଅନୁଶାସନ ଅନୁସାରେ ଛତିଶ ଘଡ଼ି ପଶ୍ଚାତ୍ ସେବାରେ ଉପସ୍ଥିତ ହେବ ।' ମହାରାଣୀ ପୁଣି ଭୂମିସ୍ପର୍ଶ କରି ପ୍ରଣାମ କଲେ ଏବଂ ଆସନ ଛାଡ଼ି ଠିଆ ହେଲେ ।

ମହାରାଣୀଙ୍କର ଶିବିକା ମହାବୋଧି ବିହାରରୁ ରାଜପ୍ରାସାଦର ଅନ୍ତଃପୁରକୁ ପହଞ୍ଚିବା ମାତ୍ରକେ ସେ ପ୍ରାସାଦର କର୍ମାନ୍ତାଧିଷ୍ଠାୟକ ସାମନ୍ତ ପ୍ରତାପଙ୍କୁ ଡକେଇ ତାଙ୍କର ଅପେକ୍ଷାରେ ଆପଣା କକ୍ଷର ଅଗଣାରେ ଠିଆ ହୋଇ ରହିଲେ । ସେବାରେ ଉପସ୍ଥିତ ହୋଇ ସାମନ୍ତ ପ୍ରଣାମ କଲା । ମହାରାଣୀ ଆଦେଶ ଦେଲେ –

ରାଜ୍ୟ ଓ ନଗରରେ ତତ୍‌କ୍ଷଣାତ୍ ଘୋଷଣା କରାଅ । କଳିଙ୍ଗର ଧର୍ମରାଜ୍ୟରେ ଜୀବ ବଳି-ଯଜ୍ଞ ନିଷେଧ । କୌଣସି ବ୍ୟକ୍ତିକୁ ସୈନିକ କାର୍ଯ୍ୟପାଇଁ ବଳାତ୍ ବାଧ୍ୟ କରାଯିବ ନାହିଁ । ଧର୍ମ ଓ ସଂଘର ଶରଣ ପ୍ରାପ୍ତି ନିମନ୍ତେ କୌଣସି ବାଧା ରହିବ ନାହିଁ । ଧର୍ମ ଓ ସଂଘର ସେବାରେ ଅର୍ପିତ ଅର୍ଥ ଯୁଦ୍ଧର ହିଂସା

ପାଇଁ ଲାଗିବ ନାହିଁ । ସମସ୍ତେ ଅହିଂସା ଧର୍ମର ପାଳନ କରି ଶ୍ରମଣ ଓ ସ୍ଥବିରମାନଙ୍କର ଆଦର ସତ୍କାର କରିବେ । ମୁଁ ଅଳିନ୍ଦରେ ପ୍ରତୀକ୍ଷା କରିବି । ନଗରରେ ଏହି ଦୁନ୍ଦୁଭି ଘୋଷଣା ଶୁଣିବା ପରେ ହିଁ କକ୍ଷରେ ପାଦ ପକେଇବି ।

ସାମନ୍ତ ପ୍ରତାପ ଧର୍ମ ଓ କର୍ତ୍ତବ୍ୟର ବିକଟ ଦ୍ୱନ୍ଦ୍ୱରେ ପଡ଼ିଲା । ତା'କୁ ମହାମାତ୍ୟ ରାଜପ୍ରାସାଦର ପ୍ରତ୍ୟେକ ଗତିବିଧିର ସୂଚନା ତାଙ୍କୁ ସର୍ବପ୍ରଥମେ ଦେବାଲାଗି ଆଦେଶ ଦେଇଥିଲେ । ତାଙ୍କର ଅନୁମତି ବିନା କୌଣସି କଥା ହୋଇପାରିବ ନାହିଁ ବୋଲି ନିର୍ଦ୍ଦେଶ ଥିଲା । ମାତ୍ର ବର୍ତ୍ତମାନ ମହାରାଣୀ ତାଙ୍କର ଆଦେଶ ପାଳନର ପ୍ରତୀକ୍ଷାରେ ନଗରର ପ୍ରାସାଦ ଦ୍ୱି'ତଳରେ ଠିଆହୋଇ ନଗରକୁ ଦୃଷ୍ଟି ଦେଇ ଠିଆ ହୋଇ ରହିଛନ୍ତି । ସାମନ୍ତ କା'ର ଆଜ୍ଞା ପାଳନ କରିବେ ?

ପ୍ରତାପଙ୍କ ଆଗରେ ମାତ୍ର ଗୋଟିଏ ସମାଧାନର ପନ୍ଥା ଥିଲା । ମହାମାତ୍ୟ ରାଜସତ୍ତାର ପ୍ରତିନିଧି । ମହାରାଣୀ ସ୍ୱୟଂ ରାଜସତ୍ତା । ରାଜସତ୍ତା ସ୍ୱୟଂ ଦେଇଥିବା ଆଦେଶର ଉପେକ୍ଷା କେଉଁଭଳି କରିହେବ ? ଧର୍ମ ଓ କର୍ତ୍ତବ୍ୟ ପାଳନରେ ଯାହା ଆଗକୁ ଆସିଛି ! ଭାଗ୍ୟର ଯାହା ବିଧାନ ସେଥିରୁ ତ୍ରାଣ ମିଳିବା ସମ୍ଭବ ନୁହେଁ ।

ମହାରାଣୀ ନଗର ଅଭିମୁଖରେ ଅନେଇ ପ୍ରାସାଦର ଦ୍ୱି'ତଳ ଅଳିନ୍ଦରେ ଠିଆ ହୋଇ ରହିଥିଲେ । ଚଉଠ ଘଡ଼ି ପରେ ତାଙ୍କୁ ରାଜପଥରୁ ଦୁନ୍ଦୁଭି ନାଦ ଶୁଣାଗଲା । ସେ ଦେଖିଲେ ଏକ ସଜ୍ଜିତ ଓଟ ଉପରେ ଭେରୀବାଦକ ବସିଛି, ଭେରୀ ବଜାଉଛି । ତା' ଆଗରେ ଅଶ୍ୱାରୋହୀ ନଗସିଂହା ବଜଉଛି । ଆଉ ଏକ ଓଟ ଉପରୁ ଚାରଣ ଘୋଷଣା କଲା –

'ପରମ ଭଟ୍ଟାରିକା, ପରମ ଭଗବତୀ, ଧର୍ମନିଷ୍ଠ କଳିଙ୍ଗ ରାଜେଶ୍ୱରୀଙ୍କର ଜୟ ହେଉ । ପୌର ଏବଂ ପ୍ରଜାଜନ ଶୁଣନ୍ତୁ । ଧର୍ମରାଜ୍ୟ କଳିଙ୍ଗରେ ରାଜାଦେଶ ଦ୍ୱାରା ପଶୁବଳି ନିଷେଧ କରାଗଲା ।' ରାଜପତାକା ଫରଫର ଉଡୁଥାଏ । ପୁନଶ୍ଚ ଘୋଷଣା ହେଲା ।

'ପ୍ରଜାପାଳୟତ୍ରୀ ମହାରାଣୀ ପ୍ରଜାମାନଙ୍କୁ ଆଶ୍ୱାସନା ଦେଉଛନ୍ତି ଯେ ରାଜପୁରୁଷ ସୈନିକ ସେବା ନିମନ୍ତେ ବଳାତ୍ କାହାକୁ ବି ବାଧ୍ୟ କରିପାରିବେ ନାହିଁ । ଧର୍ମ ଓ ସଂଘର ଶରଣ କାମନା କରୁଥିବା ବ୍ୟକ୍ତିଙ୍କୁ ବାଧା ଦେବେ ନାହିଁ । ଧର୍ମ ଏବଂ ସଂଘର ସେବାରେ ଅର୍ପିତ ଧନ ଯୁଦ୍ଧ ପାଇଁ ବିନିଯୁକ୍ତ ହେବ ନାହିଁ । ସମସ୍ତେ ଅହିଂସା ଧର୍ମର ପାଳନ ପୂର୍ବକ ଶ୍ରମଣ ଓ ସ୍ଥବିରମାନଙ୍କର ଆଦର ସତ୍କାର କରିବେ । ଏହାର ବିପରୀତ ବ୍ୟବହାର କରୁଥିବା ବ୍ୟକ୍ତି ରାଜଦ୍ୱାରରେ ଦଣ୍ଡିତ ହେବ । ଏହା ପରମ ଭଗବତୀ ରାଜେଶ୍ୱରୀଙ୍କର ଆଦେଶ ।'

ମହାରାଣୀ ଏହି ଘୋଷଣା ତିନିବାର ଶୁଣି ସନ୍ତୋଷର ନିଃଶ୍ୱାସ ନେଲେ ଏବଂ ତାଙ୍କର ଅଙ୍ଗଦାସୀ ଧାରାକୁ ଦେଖିଲେ– 'ମୁଁ ଛତିଶଘଡ଼ି ଯାଏ ମୌନ ରହିବି, ସାଧନା ସମାଧିରେ ରହିବି । ସେ ଭିତରେ ମୋର କକ୍ଷରେ କେହି ବି ପ୍ରବେଶ କରିବେ ନାହିଁ । ବର୍ତ୍ତମାନ କେତେ ପ୍ରହର ହେଲା ?'

ଧାରା ଉତ୍ତର ଦେଲା– 'ପରମ ଭଗବତୀ, ଅପରାହ୍ଣର ଅଧଘଡ଼ି ମାତ୍ର ବିତିଛି ।'

ମହାରାଣୀ କହିଲେ– 'ଛତିଶଘଡ଼ି ବିତିବା ପରେ, ନିଶାର୍ଦ୍ଧର ଅଧ ବେଳକୁ ମହାବୋଧି ବିହାରକୁ ଗମନ କରିବାକୁ ଶିବିକା ପ୍ରସ୍ତୁତ ହୋଇ ରହିଥିବ । ଶରୀର-ରକ୍ଷକ ଏବଂ ଚାରଣ ଯିବେ ନାହିଁ । ତୁ ବିହାରର ଦ୍ୱାରଦେଶରୁ ଫେରିଆସିବୁ ।'

ଧାରାର ସର୍ବାଙ୍ଗ ଶିହରିତ ହୋଇଉଠିଲା ।

ମହାରାଣୀ ପୁଣି କହିଲେ– 'ହିଡ଼ାକୁ କହିବୁ ଯୁବରାଜ୍ଞୀକୁ ଥରେ ନା ବର୍ତ୍ତମାନ ନୁହେଁ; କାଲି ରାତ୍ରିରେ ମୁଁ ଯେତେବେଳେ ଶିବିକାକୁ ଯିବି, ସେତେବେଳେ ଆଣି ମୋର ଆଶୀର୍ବାଦ ନେବ ।'

ଧାରା ପଥର ଭଳି ସ୍ତବ୍ଧ ହୋଇ ରହିଗଲା । ମହାରାଣୀ ଆପଣା କକ୍ଷକୁ ଯାଇ ତଥାଗତଙ୍କର ଧାତୁପାତ୍ର ସମ୍ମୁଖରେ ଭୂମିରେ ମସ୍ତକ ଥାପି ପ୍ରଣାମ କଲେ ଏବଂ ଧ୍ୟାନାବସ୍ଥିତ ହେଲେ ।

× × × × ×

ମହାମାତ୍ୟଙ୍କର ଭବନ ପରିସରରେ ପ୍ରତିହାରୀ ଦିନର ତୃତୀୟ ପ୍ରହରରେ ପ୍ରଥମ ଘଡ଼ିର ଘଣ୍ଟାବାଦନ ସହିତ ରାଜପ୍ରାସାଦର କର୍ମାନ୍ତାଧିଷ୍ଠାୟକ ବୃଦ୍ଧସାମନ୍ତ ପ୍ରତାପ ଦ୍ରୁତ ବେଗରେ ଅଶ୍ୱପୃଷ୍ଠରେ ଆସି ଭବନ ସମ୍ମୁଖରେ ଠିଆ ହେଲେ ।

ପ୍ରତାପ ଅଶ୍ୱପୃଷ୍ଠରେ ଥାଇ ପ୍ରତିହାରୀକୁ ଆଜ୍ଞା ଦେଲେ– 'ପ୍ରଭୁ ଆଚାର୍ଯ୍ୟଙ୍କର ସେବାରେ ତୁରନ୍ତ ନିବେଦନ ଜଣାଅ । ଅତ୍ୟନ୍ତ ଆବଶ୍ୟକ ସମ୍ବାଦ ଅଛି ।'

ପ୍ରତିହାରୀ ଦଉଡ଼ିଲା ଭଳି ଭିତରକୁ ଗଲା ।

ଆବଶ୍ୟକ ସମ୍ବାଦର ସୂଚନା ଦେବା ପରେ ମଧ୍ୟ ସାମନ୍ତ ପ୍ରତାପଙ୍କୁ ମହାମାତ୍ୟଙ୍କର ପ୍ରାଙ୍ଗଣ ଦ୍ୱାରରେ ପ୍ରାୟ ଅଧଘଡ଼ି ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେଲା । ଯେଉଁ ସମୟରେ ସାମନ୍ତ ପ୍ରତାପ ଆଚାର୍ଯ୍ୟଙ୍କ କକ୍ଷରେ ପ୍ରବେଶ କଲେ ଓ ପ୍ରଣାମ କଲେ ସେତେବେଳେ ରାଜ୍ୟର କୋଷାଧ୍ୟକ୍ଷ ଆଚାର୍ଯ୍ୟ ଅଶ୍ୱତ୍ଥ ଏବଂ ଦୁଇଜଣ ଦୂତ ଆଚାର୍ଯ୍ୟଙ୍କୁ ପ୍ରଣାମ କରି ବିଦାୟ ନେଇ ଯାଉଥିଲେ । ସାମନ୍ତ ପ୍ରତାପ ଏକାନ୍ତରେ ଅପେକ୍ଷାର ରୁଦ୍ଧଶ୍ୱାସ ହେଲାଭଳି ଅନୁଭବ କରୁଥିଲେ ।

ସାମନ୍ତ ପ୍ରତାପ ଅବସର ମିଳିବା ମାତ୍ରକେ ବିହ୍ୱଳ କଣ୍ଠରେ ନିବେଦନ କଲେ 'ପ୍ରଭୁ, ଅଭୟ ଦାନ କରନ୍ତୁ । ସେବକ ବାଧ ହୋଇ ଅପରାଧ କରିଛି । ଅନ୍ୟ କିଛି ଉପାୟ ମଧ୍ୟ ନ ଥିଲା । ପରମ ଭଗବତୀ ମହାରାଣୀ ମହାବୋଧି ବିହାରରୁ ପ୍ରାସାଦକୁ ଫେରିବା ମାତ୍ରକେ ନଗରରେ ତୁରନ୍ତ ବଳି ନିଷେଧ ଆଜ୍ଞାର ଘୋଷଣା କରିବାକୁ ନିର୍ଦ୍ଦେଶ ଦେଲେ । ସେବକ ରାଜାଦେଶର ଅବହେଳା କରିପାରିଲା ନାହିଁ । ମହାରାଣୀ କକ୍ଷରେ ପ୍ରବେଶ କରିବାମାତ୍ରକେ ସେବକ ସୂଚନା ଦେବାକୁ ଉପସ୍ଥିତ ହୋଇଛି ।

ଆଚାର୍ଯ୍ୟ ସାମନ୍ତ ପ୍ରତାପଙ୍କୁ ତୀକ୍ଷ୍ଣ ଦୃଷ୍ଟିରେ ବିଦ୍ଧ କରି ପଚାରିଲେ – 'ନଗରପାଳକୁ ଘୋଷଣା କରିବାକୁ ଆଦେଶ ଦେବା ପୂର୍ବରୁ ସେହି ବିଷୟ ମୋତେ ସୂଚିତ କରିବା କ'ଣ ଅସମ୍ଭବ ଥିଲା ?'

ପ୍ରତାପ ଉତ୍ତର ଦେଲେ – 'ସ୍ୱାମୀ, କ୍ଷମା । ସେଭଳି ଅବସର ନ ଥିଲା । ମହାରାଣୀ ଦ୍ୱିତଳର ଅଳିନ୍ଦରେ ପ୍ରତୀକ୍ଷା କରି ରହିଥିଲେ । ଆଗ୍ରହ ଥିଲା ରାଜପଥରେ ଘୋଷଣା ଶୁଣିବା ପରେ ହିଁ ସେ କକ୍ଷ ମଧ୍ୟରେ ପ୍ରବେଶ କରିବେ । ତେଣୁ ରାଜପ୍ରାସାଦରେ ଥିବା ଚାରଣମାନଙ୍କ ଜରିଆରେ ଘୋଷଣାର ବ୍ୟବସ୍ଥା କରିବାକୁ ପଡ଼ିଲା । ତିନି ବାର ଘୋଷଣା ଶୁଣିବା ପରେ ମହାରାଣୀ ଆପଣା କକ୍ଷରେ ପ୍ରବେଶ କଲେ । ତା'ପରେ ଯାଇ ସେବକ ଆଚାର୍ଯ୍ୟଙ୍କର ସେବାରେ ଉପସ୍ଥିତ ହେବାର ସୁଯୋଗ ପାଇଛି ।

ଆଚାର୍ଯ୍ୟ ଆପଣାର ଶ୍ୱେତ ଶ୍ମଶ୍ରୁ, ଡାହାଣ ହାତରେ ଆଉଁଶି ଆଉଁଶି ଚିନ୍ତାପୂର୍ଣ୍ଣ ସ୍ୱରରେ କହିଲେ – ''ଏଭଳି ପରସ୍ପର ବିରୋଧୀ ରାଜାଦେଶରେ ପ୍ରଜା ହତବୁଦ୍ଧି ହୋଇଯିବ । ମହାରାଣୀ ବିହାରରୁ ଫେରିବା ମାତ୍ରକେ ଆଜ୍ଞା କଲେ ? ବିହାରରେ କ'ଣ ହେଲା ?''

ପ୍ରତାପ ଉତ୍ତର ଦେଲେ – 'ସ୍ୱାମୀ, ସେବକ ତାହା ଜାଣିବାକୁ ପ୍ରତୀକ୍ଷା କରିପାରି ନାହିଁ । ପ୍ରତୀକ୍ଷା କରିଥିଲେ ଅଧିକ ବିଳମ୍ବ ହୋଇଥାନ୍ତା । ସେବକ ପ୍ରାସାଦକୁ ପହଞ୍ଚି ସେ ସମ୍ବନ୍ଧରେ ଖବର ଦେବ ।'

ଆଚାର୍ଯ୍ୟ ଚିନ୍ତାବ୍ୟକ୍ତ କରି କହିଲେ – 'ରାଜ୍ୟର ପ୍ରବନ୍ଧ ବ୍ୟବସ୍ଥାରେ ଭିକ୍ଷୁମାନଙ୍କର ହସ୍ତକ୍ଷେପ ସବୁ ଅନର୍ଥର କାରଣ ହେବ ।'' ଏବଂ ପ୍ରତାପଙ୍କୁ ସଂବୋଧିତ କରି କହିଲେ – 'ବିହାରରେ କଣ ହେଲା, ସେ ସମାଚାର ତୁରନ୍ତ ପଠେଇବ ।'

ସାମନ୍ତ ପ୍ରତାପ ମହାମାତ୍ୟଙ୍କର ଭବନରୁ ଫେରିବାର ପ୍ରାୟ ଏକଘଡ଼ି ଅତୀତ ହୋଇଥିବ, ସେତେବେଳେ ନଗରପାଳ ଚିତ୍ରରଥ ଆସି ମହାମାତ୍ୟଙ୍କର ଦର୍ଶନ

ଲାଗି ପ୍ରାର୍ଥନା କଲେ । ଚିତ୍ରରଥ ସେହି ସମ୍ବାଦ ଦେଲେ ଯା'ର ଆଶଙ୍କା ଆଚାର୍ଯ୍ୟ କରୁଥିଲେ ।

ଦ୍ୱିପ୍ରହର ପୂର୍ବରୁ ନଗରର ପଣ୍ୟ, ବୀଥୀମାନଙ୍କୁ ଭିକ୍ଷା ନିମନ୍ତେ ଆସିଥିବା ଭିକ୍ଷୁମାନେ ପଶୁବଳି ନିଷେଧ, ସଂଘ ଏବଂ ଭିକ୍ଷୁମାନଙ୍କ ପ୍ରତି ଆଦର ସମ୍ମାନର ପୁନଃସ୍ଥାପନା ବିଷୟକ ନୂତନ ରାଜାଦେଶର ଘୋଷଣା ଶୁଣିବା ପରେ ଉଦ୍ଦଣ୍ଡ ବ୍ୟବହାର କରିବା ଆରମ୍ଭ କରି ଦେଇଥିଲେ । ବିହାରରେ ସମାଚାର ଶୁଣି ଅନେକ ଭିକ୍ଷୁ କୌତୂହଳ ଶାନ୍ତ କରିବା ଅଭିପ୍ରାୟରେ ନଗରର ପଣ୍ୟରେ ଓ ପଥମାନଙ୍କୁ ଆସି ଯାଇଥିଲେ । କିଛି ଦିନ ପୂର୍ବରୁ ନାଗରିକଙ୍କଠାରୁ ପାଇଥିବା ଅପମାନ କଥା ମନେପକେଇ କ୍ରୋଧିତ ହେଉଥିଲେ । ଭିକ୍ଷୁମାନେ ନାଗରିକଙ୍କର ଧୃଷ୍ଟତା ଏବଂ ବଳିର ଉତ୍ସାହରେ ଉନ୍ମତ୍ତ ହୋଇ ଧର୍ମର ଅବଜ୍ଞା ନିମନ୍ତେ ନାଗରିକମାନଙ୍କୁ ଭର୍ତ୍ସନା କରୁଥିଲେ ।

ଅନେକ ନାଗରିକ ଯେଉଁମାନେ ଯଥାସମୟରେ ବଳି ନିମିତ୍ତ ପଶୁ କ୍ରୟ କରି ନ ପାରି ଚିନ୍ତିତ ଥିଲେ ସେମାନେ ବଳି ଯଜ୍ଞ ବିରୋଧରେ ରୋଷ ପ୍ରକାଶିତ କରିବାକୁ ସେମାନଙ୍କ ସହିତ ମିଳିତ ହୋଇଥିଲେ ଏବଂ ଚତୁଷ୍ପଥମାନଙ୍କରେ ନିର୍ମିତ ହୋଇଥିବା ବଳିବେଦୀ ଓ ତୋରଣମାନଙ୍କୁ ଭଙ୍ଗାରୁଜା କରିବା ଆରମ୍ଭ କରି ଦେଇଥିଲେ । ବେଦୀ ଓ ତୋରଣ ଆଦି ଭାଙ୍ଗିବାବେଳେ ସେମାନେ ଯେପରି ପାପର ଦମନ ଏବଂ ଧର୍ମ ରକ୍ଷା କରୁଥିବାର ସନ୍ତୋଷ ଲାଭ କରୁଥିଲେ ସେଭଳି ଲୋକେ ଅହିଂସା ଓ ଧର୍ମ ପ୍ରତି ଆପଣାର ନିଷ୍ଠା ପ୍ରକାଶିତ କରିବାକୁ ବଳି ଯଜ୍ଞର ଆୟୋଜନ କରିଥିବା ଲୋକଙ୍କୁ ନିନ୍ଦା କରି ଭର୍ତ୍ସନା କରୁଥିଲେ ଏବଂ ସେମାନଙ୍କୁ ପ୍ରହାର କରି ମୁଣ୍ଡ ଫଟେଇ ଦେବାର ଧମକ ଦେଉଥିଲେ । ଭିକ୍ଷୁମାନେ ଆପଣାର ଅଧିକାର ଓ ଆଦର ଅନୁଭବ କରିବା ପାଇଁ ଶାନ୍ତି ରକ୍ଷା ନିମନ୍ତେ ରହୁଥିବା ରାଜପୁରୁଷମାନଙ୍କର ମଧ୍ୟ ଅପମାନ କରୁଥିଲେ ।

ନଗରପାଳ ଚିତ୍ରରଥ ମହାମାତ୍ୟଙ୍କ ଆଗରେ ଚିନ୍ତା ପ୍ରକାଶ କଲେ । କହିଲେ– 'ସ୍ଥାନେ ସ୍ଥାନେ ରାଜପୁରୁଷମାନଙ୍କୁ ନିଯୁକ୍ତ କରି ରଖିଛି ଯେଭଳି ଉତ୍ପାତ ବଢ଼ିବ ନାହିଁ । ମାତ୍ର ଯଦି ଭିକ୍ଷୁମାନଙ୍କୁ ରାଜାଦେଶ ଠାରୁ ପୂଜ୍ୟ ମନେ କରି ସେମାନଙ୍କର ଉତ୍ପାତକୁ ଅନୁଶାସିତ କରାଯିବ ନାହିଁ, ତା'ହା ପ୍ରଜାମାନଙ୍କୁ ସହନ କରିବାକୁ ପଡ଼ିବ, ତେବେ ନ୍ୟାୟ ପ୍ରତି ଜନସାଧାରଣଙ୍କର ଆସ୍ଥା ରହିବ ନାହିଁ ।'

ମହାମାତ୍ୟ କିଛି ସମୟ ନୀରବ ରହି ଉତ୍ତର ଦେଲେ– 'ଉତ୍ପାତ ଆରମ୍ଭ ହୋଇଯାଇଛି ଯଦି, ତେବେ ରାଜପୁରୁଷ କିଛି କାଳ ଦୂରେଇ ରହନ୍ତୁ । ମହାରାଣୀ ତାଙ୍କର ଆଦେଶର ପରିଣାମ ନିଜେ ଦେଖନ୍ତୁ । ଉତ୍ପାତ କରୁଥିବା ଲୋକଙ୍କୁ

ଉନ୍ମାଦ ପ୍ରକାଶର ଅବସର ଦିଆଯାଉ । ଭିକ୍ଷୁମାନେ ମହାରାଣୀଙ୍କର ପ୍ରଶ୍ରୟ ଉନ୍ମାଦରେ ମୂଢ଼ ହୋଇଯାଇଛନ୍ତି ଯେତେବେଳେ ସେମାନେ ପ୍ରଜାଶକ୍ତି ବି ଅନୁଭବ କରନ୍ତୁ । ରାଜପୁରୁଷ କେବଳ ମାତ୍ର ରାଜପ୍ରାସାଦର ସୁରକ୍ଷା ବ୍ୟବସ୍ଥା କରନ୍ତୁ । ଭିକ୍ଷୁମାନେହିଁ ପ୍ରଜାଙ୍କର କ୍ରୋଧ ବଢ଼େଇବେ ଏବଂ ପରିଶେଷରେ ତ୍ରାହି ତ୍ରାହି ଚିତ୍କାର କରିବେ । କାଲି ମଧ୍ୟାହ୍ନ ପର୍ଯ୍ୟନ୍ତ ଅପେକ୍ଷା କର ।'

ଉତ୍ପାତ କରୁଥିବା ଲୋକଙ୍କର କୌଣସି ପ୍ରତିରୋଧ ନ ହେବା ଫଳରେ ସେମାନଙ୍କର ଉନ୍ମାଦ ବଢ଼ିବାକୁ ଲାଗିଲା । କେତେକ ନାଗରିକ ବଳି-ନିଷେଧର ରାଜାଦେଶ ଶୁଣି ବଳିଇଚ୍ଛୁକ ଲୋକମାନେ ଅପମାନିତ ହେଉଥିବା ଦେଖି ଭୟରେ ସେମାନେ ପୂର୍ବରୁ ବଳି ନିମନ୍ତେ କ୍ରୟ କରି ରଖିଥିବା ବଳି ପଶୁମାନଙ୍କୁ ବନ୍ଧନମୁକ୍ତ କରି ଛାଡ଼ିଦେଲେ । ସେହି ଉନ୍ମୁକ୍ତ ପଶୁମାନେ ଅହିଂସାର ବିଜୟ ଚିହ୍ନ ସ୍ୱରୂପ ରାଜପଥରେ ଅବାରିତ ବୁଲିଲେ, ଦଉଡ଼ିବାକୁ ଲାଗିଲେ । ଭିକ୍ଷୁ ଏବଂ ସେମାନଙ୍କ ସାଙ୍ଗରେ ମିଶିଥିବା ଅହିଂସକ ଦଳ ସେମାନଙ୍କର ଭୁଜବଳରେ ଅହିଂସାର ପ୍ରତିଷ୍ଠା ନିମନ୍ତେ ଯେ କେହି ବ୍ୟକ୍ତିର ଦ୍ୱାରରେ ବନ୍ଧା ହୋଇ ରହିଥିବା ପଶୁମାନଙ୍କୁ ବଳି ବଜାରରେ ଉନ୍ମୁକ୍ତ ବୁଲିବାକୁ ଛାଡ଼ି ଦେଲେ । ଆପଣା ପଶୁଙ୍କୁ ବଳାତ୍ ଖୋଲା ଯାଉଥିବା ଦେଖି ଆପତ୍ତି କରୁଥିବା ଲୋକେ ସେମାନଙ୍କ ହାତରୁ ପ୍ରହାର ଖାଇ ନୀରବ ହେବାକୁ ବାଧ୍ୟ ହେଲେ । କୌଣସି ବାଧା ନ ଦେଖି ସେହି ଦଳର ସାହସ ମଧ୍ୟ ଅନେକ ପରିମାଣରେ ବଢ଼ିବାକୁ ଲାଗିଲା । ସେମାନେ ବଳି ପଶୁମାନଙ୍କୁ ମୁକ୍ତ କରିବା ସହିତ ବଳି ଇଚ୍ଛା କରିଥିବା ନାଗରିକମାନଙ୍କୁ ମଧ୍ୟ ଦଣ୍ଡିତ କରିବାକୁ ଲାଗିଲେ । ସେମାନେ ମଦ୍ୟ ଦୋକାନମାନଙ୍କରେ ବଳାତ୍ ପ୍ରବେଶ କରି ମଦ୍ୟ ଘଟମାନଙ୍କୁ ଭାଙ୍ଗିବାକୁ ଲାଗିଲେ ।

ବଳି ଓ ହିଂସାର ଇଚ୍ଛାକାରୀ ବ୍ୟକ୍ତିଙ୍କୁ ଦଣ୍ଡିତ କରୁଥିବା ଦଳ ସହିତ ସେହି ଦଳଟି ମଧ୍ୟ ସମ୍ମିଳିତ ହୋଇଗଲା, ଯେଉଁମାନେ ବଳପୂର୍ବକ ମଦ୍ୟ ଘଟ ଛଡ଼େଇ ସ୍ୱୟଂ ଯଥାସାମର୍ଥ୍ୟ ପିଇ ଘଟମାନଙ୍କୁ ଭାଙ୍ଗି ରାଜରାସ୍ତାରେ ମଦ୍ୟର ସ୍ରୋତ ବୁହାଇବା ଆରମ୍ଭ କରିଦେଲେ । ଯେଉଁ ମଦ୍ୟ ଏକଦା ସେମାନଙ୍କ ପାଇଁ ଦୁର୍ଲଭ ଥିଲା ତାହା ରାଜପଥରେ ଅଜାଡ଼ିଦେଇ ସେମାନେ ସନ୍ତୋଷ ଲାଭ କରୁଥିଲେ । ମଦ୍ୟ ଦୋକାନର ସ୍ୱାମୀ କାତର ପ୍ରାର୍ଥନା କଲେ ତାହା ତାଙ୍କର ଶକ୍ତିର ସନ୍ତୋଷ ବିଧାୟିନୀ ହେଉଥିଲା । ଉତ୍ପାତ ବଢ଼ିଲା ସିନା କମିଲା ନାହିଁ । ପଶୁମାନଙ୍କୁ ହତ୍ୟା କରିବା ଓ ମଦ୍ୟର ଲାଳସା ଥିବା ଅପରାଧରେ ବହୁବ୍ୟକ୍ତିଙ୍କର ଗୃହଦାହ କରିବାକୁ ମଧ୍ୟ ସେମାନେ ପଛେଇଲେ ନାହିଁ । ଏ ସବୁ ହେତୁ ଅନେକ ନିହତ ବି ହେଲେ ।

ବଳିର ପାପ ପାଇଁ ଦଣ୍ଡିତ କରୁଥିବା ଭୟଭୀତ ଲୋକେ ଆତ୍ମରକ୍ଷା ପାଇଁ ବାଧ୍ୟ ହେଲେ ଏବଂ ସେହି ବାଧ୍ୟତା ସେମାନଙ୍କ ମଧ୍ୟରେ ପ୍ରଚଣ୍ଡ କ୍ରୋଧର ସଞ୍ଚାର କଲା । ଭିକ୍ଷୁମାନେ ପଳାୟନ କରି ବିହାର ମଧ୍ୟରେ ଶରଣ ନେଲେ । ତଦୁପରି ଭିକ୍ଷୁମାନଙ୍କର ପୀତ ଚୀବର ରାଜରାସ୍ତାରେ ପଦଦଳିତ ହେଲା । କେତେକ ପ୍ରାଣ ବି ଦେଲେ । ବଳି ଯଜ୍ଞର ପ୍ରତିଷ୍ଠା ନିମନ୍ତେ ଉନ୍ମତ୍ତ ଲୋକେ ଚତୁଷ୍ପଥରେ ଅଗ୍ନିସ୍ତୂପ ପ୍ରଜ୍ଜ୍ୱଳିତ କରି ହାଟବଜାରରେ ଘୂରିବୁଲୁଥିବା ପଶୁମାନଙ୍କର ହତ୍ୟା କରି ସେମାନଙ୍କର ମାଂସ ପୋଡ଼ି, ଭାଜି ଖାଇବା ଏବଂ ଅପହୃତ ମଦ୍ୟପାନ କରିବା ଓ ବିତରଣ କରିବା ଆରମ୍ଭ କରିଦେଲେ । ସେମାନେ ବଳିରକ୍ତ ଶରୀରରେ ବୋଳି ହୋଇ ମଦ୍ୟପାନ କରି ହାତରେ ଖଡ୍‌ଗ, ବର୍ଚ୍ଛା ଉଠେଇ ବଳି ବିରୋଧ କରୁଥିବା ଲୋକଙ୍କ ଉପରକୁ ଝପଟି ଆସିଲେ । ତାହା ମଧ୍ୟ ଧର୍ମପ୍ରତିଷ୍ଠାର ଭିନ୍ନ ରୂପ ଥିଲା । ବଳିରୁ ପଶୁମାନଙ୍କର ରକ୍ଷା ଲାଗି ଓ ବଳି ଦେବାର ଅଧିକାର ଲାଗି ମଣିଷ ମଣିଷର ବଳି ପକେଇବାକୁ ଲାଗିଲେ । କଳିଙ୍ଗର ଲୋକେ ଅଶୋକଙ୍କର ଆକ୍ରମଣ ବିଷୟ ଭୁଲି ଜଣେ ଜଣକୁ ଶତ୍ରୁ ମନେକରି ସଂହାର କରିବାକୁ ଲାଗିଲେ ।

ଅନ୍ୟଦିନ ପ୍ରାୟ ମଧ୍ୟାହ୍ନ ସମୟରେ ମହାମାତ୍ୟଙ୍କର ଆଦେଶରେ ନଗରରେ ସୁରକ୍ଷା ବ୍ୟବସ୍ଥା ନିମନ୍ତେ ସବୁ କ୍ଷେତ୍ରରେ ସଶସ୍ତ୍ର ସୈନିକ ନିଯୁକ୍ତ ହୋଇ ରହିଲେ । ଦୁନ୍ଦୁଭି ନରସିଂହା ନାଦ କରି ସବୁ ନାଗରିକଙ୍କୁ ଆପଣା ଆପଣା ଗୃହରେ ରହିବାକୁ ଏବଂ ଅସ୍ତ୍ରଶସ୍ତ୍ରାଦି ଧରି ନ ବାହାରିବାକୁ ନିର୍ଦ୍ଦେଶ ଘୋଷିତ ହେଲା । ବିହାରର ସୁରକ୍ଷା ନିମନ୍ତେ ସଶସ୍ତ୍ର ସୈନିକମାନେ ବିହାରକୁ ଚତୁର୍ଦ୍ଦିଗରୁ ଘେରି ରହିଲେ । ଭିକ୍ଷୁ କେବଳ ପ୍ରାଣ ଦେବାକୁ ବାହାରି ପାରୁଥିଲେ । ନଗର ପଥ ବିପଣୀ ଜନଶୂନ୍ୟ ହୋଇଗଲା । ସେଠାରେ କେବଳ ସଶସ୍ତ୍ର ସୈନିକ ଓ ଉନ୍ମୁକ୍ତ ହୋଇ ଇତସ୍ତତଃ ଘୂରିବୁଲୁଥିବା ପଶୁହିଁ ଦେଖାଗଲେ । ବଳି ଭୟରେ ମୁକ୍ତ କରି ଦିଆଯାଇଥିବା ପଶୁମାନଙ୍କୁ ଘାସ ପାଳ ଦେବାକୁ ବି ଲୋକ ନ ଥିଲେ । କ୍ଷୁଧା ବ୍ୟାକୁଳ ପଶୁମାନେ ଏଣେତେଣେ ମୁହଁ ମାରି ଏବଂ ପ୍ରହାର ପାଇ ଘୂରି ବୁଲୁଥିଲେ ।

# ଆଚାର୍ଯ୍ୟଙ୍କର ଦ୍ୱିଧା

ଆଚାର୍ଯ୍ୟ ସୁକଣ୍ଠଙ୍କର ମନ ଓ ମସ୍ତିଷ୍କ ସଂପୂର୍ଣ୍ଣ ନଗରଠାରୁ ମଧ କ୍ଷୁବ୍ଧ ଓ ବ୍ୟଥିତ ଥିଲା । ଅସଂଖ୍ୟ ସେନା ନେଇ କଳିଙ୍ଗ ଉପରେ ଆକ୍ରମଣ କରିବାକୁ ଆସୁଥିବା ଅଶୋକ ଏବଂ ଆତ୍ମସଂହାରରେ ବ୍ୟଥିତ ନଗର ଚିନ୍ତାଠାରୁ ତାଙ୍କର ଅଧିକ ଚିନ୍ତା ମହାରାଣୀଙ୍କ ବ୍ୟବହାର ହେତୁ ହେଉଥିଲା । ରାଜପ୍ରାସାଦରୁ ସମାଚାର ମିଳିଥିଲା –

ମହାରାଣୀ ମହାବୋଧି ବିହାରରେ କଳିଙ୍ଗର ରାଜ୍ୟ ମହାସ୍ଥବିର ଓ ଭିକ୍ଷୁସଂଘକୁ ଅର୍ପଣ କରିଦେବାର ସଂକଳ୍ପ କରି ଆସିଛନ୍ତି । ସେ ଦିବ୍ୟ ଶକ୍ତିର ଚମତ୍କାର ଦେଖି ସିଦ୍ଧି ପ୍ରାପ୍ତ କରିବାକୁ ମଧ୍ୟରାତ୍ରିରେ ଏକାକିନୀ ବିହାରକୁ ଯିବେ ।

ମହାମାତ୍ୟ, ଅଶୋକ ସେନାଙ୍କର ଆକ୍ରମଣରୁ ମହାରାଣୀ ଓ କଳିଙ୍ଗ ରାଜ୍ୟର ରକ୍ଷା କରିବାକୁ ପ୍ରାଣବଳି ଦେବାକୁ ବି ପ୍ରସ୍ତୁତ ଥିଲେ ଏବଂ ମହାରାଣୀ ନିଜକୁ ଓ ରାଜ୍ୟକୁ ସମାପ୍ତ କରିଦେବାକୁ ବସିଥିଲେ ।

ମହାମାତ୍ୟ ଦିନର ଚତୁର୍ଥ ପ୍ରହରରେ ରାଜପ୍ରାସାଦକୁ ପହଞ୍ଚି ମହାରାଣୀଙ୍କର ଦର୍ଶନ ନିମନ୍ତେ ପ୍ରାର୍ଥନା କଲେ । ଭୟଭୀତ କର୍ମାନ୍ତାଧିଷ୍ଠାୟକ ତାଙ୍କୁ ସୂଚନା ଦେଲେ ଯେ ମହାରାଣୀ ଆପଣା କକ୍ଷରେ ଛତିଶଘଡ଼ି ପର୍ଯ୍ୟନ୍ତ ରହିବେ ଓ ମଝିରେ ବାହାରିବେ ନାହିଁ ବୋଲି ସଂକଳ୍ପ କରିଛନ୍ତି । ମହାମାତ୍ୟଙ୍କ ପାଇଁ ମହାରାଣୀଙ୍କୁ ଭେଟିବାର ଆବଶ୍ୟକତା ଅନିବାର୍ଯ୍ୟ ଥିଲା । ସେ ମହାରାଣୀଙ୍କର କକ୍ଷଦ୍ୱାରରେ ପହଞ୍ଚି ଦର୍ଶନ ନିମନ୍ତେ ପ୍ରାର୍ଥନା କଲେ । ମହାରାଣୀ ସମାଧିର ଆସନରୁ ଟଳିଲେ ନାହିଁ । ମହାମାତ୍ୟ ଅପମାନିତ ମନେକରି ଭବନକୁ ଫେରିଆସିଲେ ଆଉ ଆପଣା କକ୍ଷର କାଷ୍ଠାସନରେ ବସି ଏକାନ୍ତରେ ଚିନ୍ତା କରିବାକୁ ଲାଗିଲେ । ମହାରାଣୀ ଓ ରାଜ୍ୟର ରକ୍ଷା ନିମନ୍ତେ କେଉଁ ଉପାୟ ଅବଲମ୍ବନ କରାଯାଇପାରିବ ତାହାହିଁ ତାଙ୍କର ଚିନ୍ତାର ବିଷୟ ଥିଲା ।

ବଳି ବିରୋଧ ଏବଂ ବଳି ଅଧିକାର ନିମନ୍ତେ ହୋଇଥିବା ଉତ୍ପାତ ଓ ସେଥିଲାଗି ସଂଘର୍ଷର ରାତିର ପର ରାତିରେ କଳିଙ୍ଗ ନଗରକୁ ଶ୍ମଶାନର ଆତଙ୍କ ଓ ମୌନତା ଘୋଡ଼େଇ ରଖିଥିଲା । ବଜାର ଓ ଗଳିମାନଙ୍କରେ ମୁଡ଼ି, ମିଷ୍ଟାନ୍ନ ଓ ମାଂସ ବିକାଳି ଡାକ ପକଉ ନ ଥିଲେ । ଫଳ ବିକାଳିମାନେ ମଧ ନ ଥିଲେ । ଲୌହକାରଙ୍କ ଶାଳମାନଙ୍କରେ ରାତିସାରା କୋଳାହଳ ରହୁଥିଲା, ମାତ୍ର ସେଠାରେ

ବି ନିସ୍ତବ୍ଧତା ଭରି ରହିଥିଲା । ନର୍ତ୍ତକୀମାନଙ୍କର ବିପଣୀରେ ମଧ୍ୟ କେହି ନ ଥିଲେ । ଝରକା ଓ ଛାତ ବାଡ଼ରେ ଦୀପ ଜଳେଇ ବସିଥିବା ନର୍ତ୍ତକୀମାନେ ହୁଏତ ପଥ ଉପରେ ସତୃଷ୍ଣ ଆଖି ପକେଇ କିଛି କାଳ ରହିଥିବେ ମାତ୍ର ଦୀପ ଜଳେଇ ରଖିବାର ତେଲ ଖର୍ଚ୍ଚ ବୃଥା ହେବ ବୋଲି ଦୀପ ଲିଭେଇ ଝରକା ସବୁ ବନ୍ଦ କରି ଦେଇଥିଲେ । ପ୍ରାୟ ସଂପୂର୍ଣ୍ଣ ନଗରୀ ଗାଢ଼ ଅନ୍ଧକାରରେ ବୁଡ଼ି ରହିଥିଲା । କେବଳ କୋଉଠି କେମିତି ବର୍ଛା ଧରି ମଶାଲ ଜଳେଇ ରାଜପୁରୁଷ ଦେଖାଯାଉଥିଲେ ଏବଂ ପଥର ନିର୍ମିତ ରାସ୍ତା ଉପରେ ସେମାନଙ୍କର ବଲମର ଆଘାତ ସ୍ପଷ୍ଟ ଶୁଣାଯାଉଥିଲା ।

ଚାରିପଟେ ଘେରି ରହିଥିବା ଶୂନ୍ୟତା ଓ ହତାଶା ଭାବକୁ ଲୋହିତର କଣ୍ଠସ୍ୱର ଆହୁରି ବେଦନାର୍ଦ୍ର କରୁଥିଲା– ସେ ଶୂନ୍ୟ ପଥରେ ଏକାକୀ ଗାଇ ଗାଇ ଘୂରି ବୁଲୁଥିଲା –

'ପାଗଳ ପକ୍ଷୀ, ଚାନ୍ଦକୁ ମେଘ ଢାଙ୍କିଲାଣି

ତୁ କ୍ଷୁଣ୍ଣ ହେଇ କିଆଁ ତୋ'ର ନିଜ ପକ୍ଷୀକୁ ଓଲାରି ପକଉଛୁ...

ଆତ୍ମହତ୍ୟା କାହିଁକି କରୁଛୁ ?'

ସମଗ୍ର ନଗରୀରେ ସିନା ଅନ୍ଧକାର ଥିଲା, ମହାମାତ୍ୟଙ୍କର ଭବନ ପ୍ରାଙ୍ଗଣରେ ଆବଶ୍ୟକତାଠାରୁ ଅଧିକ ପ୍ରକାଶ ଥିଲା । ପ୍ରାଙ୍ଗଣ ତୋରଣରେ ଦୁଇଟି ମଶାଲ ଜଳୁଥିଲା ଏବଂ ସାମନାରେ ମଧ୍ୟ ପ୍ରହରୀମାନେ ମଶାଲ ଜଳେଇ ରହିଥିଲେ । ଅନେକ ରଥ ଓ ଶିବିକା ପ୍ରତୀକ୍ଷାରେ ରହିଥିଲେ । ଅନେକ ସଶସ୍ତ୍ର ସୈନିକ ମଧ୍ୟ ଥିଲେ । ଭବନର ଭିତରେ ଓ ବାହାରେ ଉଭୟତ୍ର ଅନେକ ମଶାଲ ଜଳୁଥିଲେ । ଅନେକ ସୈନିକ ଯୂଥପ ଓ ସେନାନୀ ଠିଆ ହୋଇ ରହି ଅସ୍ପଷ୍ଟ ସ୍ୱରରେ କଥାବାର୍ତ୍ତା ହେଉଥିଲେ । ଭବନର ପରିସର ମଧ୍ୟରୁ ସାମାନ୍ୟତମ ସ୍ୱର ଶୁଭିଲେ ବି ସବୁରି ଦୃଷ୍ଟି ଦ୍ୱାରଦେଶକୁ ଟାଣି ହୋଇ ଯାଉଥିଲା ।

ଭିତର ଅଗଣାର ପ୍ରହରୀ ବାହାର ଅଗଣାରେ ରହିଥିବା ଲୋକଙ୍କୁ ସାବଧାନ ହୋଇଯିବାକୁ ସଂକେତ ଦେଲା । ମହାମାତ୍ୟ, ମହାସେନାପତି ଭଦ୍ରକୀର୍ତ୍ତି, ଧର୍ମିଷ୍ଠ ଆର୍ଯ୍ୟ ପ୍ରଜିତ ଏବଂ କୋଷାଧ୍ୟକ୍ଷ ଆଚାର୍ଯ୍ୟ ଅଶ୍ୱତ୍ଥ ଅଗଣାକୁ ଆସିଲେ । ସବୁ ସେନାପତି ସାବଧାନ ମୁଦ୍ରାରେ ଆଦେଶର ପ୍ରତୀକ୍ଷାରେ ସେମାନଙ୍କୁ ଅନେଇ ରହିଲେ । ଧର୍ମିଷ୍ଠ ଏବଂ କୋଷାଧ୍ୟକ୍ଷ ଆଚାର୍ଯ୍ୟ ଓ ମହାସେନାପତିଙ୍କୁ ପ୍ରଣାମ କରି ବିଦା ହୋଇଗଲେ ।

ମହାସେନାପତିଙ୍କର ସଂକେତରେ ସେନାପତି ସୁଧନ୍ୱା ତାଙ୍କର ପାଖକୁ ଆସି ଅଭିବାଦନ କଲେ । ମହାସେନାପତି ଆଜ୍ଞା ଦେଲେ– 'ତୁରନ୍ତ ଏକଶତ ସୈନିକ ନେଇ ପୂର୍ବ ପ୍ରାଚୀରସ୍ଥ ଶ୍ରୀଷ ଦୁର୍ଗକୁ ଘେରିଯାଅ । ଦୁର୍ଗରେ ଯେ କେହି ଶରଣାର୍ଥୀ ବା ଆଉମାନେ ବାହାରି ଆସନ୍ତୁ ଏବଂ ବିଶେଷ ଆଜ୍ଞା ବିନା କେହି ବି ଦୁର୍ଗ ମଧ୍ୟକୁ ପ୍ରବେଶ କରିପାରିବେ ନାହିଁ ।' ସେନାପତି ସୁଧନ୍ୱା ପ୍ରଣାମ କରି ଚାଲିଗଲେ ।

ମହାସେନାପତି ସେନାପତି ହରିତଙ୍କୁ ଦେଖିଲେ । ହରିତ ତାଙ୍କ ପାଖକୁ ଆସିବା ପରେ ସେ ଆଦେଶ ଦେଲେ– ତୁରନ୍ତ ପାଞ୍ଚଶତ ସୈନିକ ନେଇ ବିହାରର ଅବରୋଧ ଅଧିକ ସୁଦୃଢ଼ କର । ସୂର୍ଯ୍ୟୋଦୟ ପୂର୍ବରୁ କେହି ଯେପରି ବିହାରରୁ ବାହାରିବେ ନାହିଁ କିମ୍ବା ପ୍ରବେଶ କରିବେ ନାହିଁ ।

ତାପରେ ମହାସେନାପତି ସେନାପତି ବିକ୍ରମଙ୍କୁ ଦେଖିଲେ । ବିକ୍ରମ ପାଖକୁ ଆସିବା ପରେ ମହାସେନାପତି ତାଙ୍କୁ ଦୁଇଶତ ସୈନିକ ନେଇ ପ୍ରାସାଦର କର୍ମାନ୍ତାଧିଷ୍ଠାୟକ ସାମନ୍ତ ପ୍ରତାପଙ୍କ ସହିତ ରାଜପ୍ରାସାଦର ବାହାର ଅଗଣାରେ ଉପସ୍ଥିତ ରହିବାକୁ ଆଦେଶ ଦେଲେ । ତାପରେ ସ୍ୱୟଂ ଭଦ୍ରକୀର୍ତ୍ତି ମହାମାତ୍ୟଙ୍କ ସମୀପକୁ ଆସି ରହସ୍ୟପୂର୍ଣ୍ଣ କଣ୍ଠରେ କହିଲେ– 'ଏକଘଡ଼ି ପରେ ପ୍ରାସାଦରେ.... ।'

ଆଚାର୍ଯ୍ୟଙ୍କଠାରୁ ଅନୁମତିର ସଂକେତ ପାଇ ମହାସେନାପତି ମଧ୍ୟ ବିଦାୟ ନେଇ ଚାଲିଗଲେ ।

× × × × ×

ରାତ୍ରୀର ଦ୍ୱିତୀୟ ପ୍ରହର ବିତି ସାରିଥିଲା । ରାଜପ୍ରାସାଦର ଅନ୍ତଃପୁର ଅଗଣାରେ ନୀରବତା ଥିଲା ମାତ୍ର ଦାସୀ, ଯବନୀ ଓ କଞ୍ଚୁକୀମାନେ ଜାଗି ରହିଥିଲେ । କେବଳମାତ୍ର ଯୁବରାଜ୍ଞୀ ଅମିତା ନିଶ୍ଚିନ୍ତରେ ଶୋଇ ଯାଇଥିଲେ । ବାପୀ ଓ ହିତାର ଦୃଷ୍ଟି ବାରମ୍ବାର ଅମିତା ଆଡ଼କୁ ଟାଣିହୋଇ ଯାଉଥାଏ । ବାଳିକାର ନିଶ୍ଚିନ୍ତ ନିଦ୍ରା, ପ୍ରଫୁଲ୍ଲ ମୁଖଶ୍ରୀ ଦେଖି ସେମାନଙ୍କର ଆଖି ଲୁହ ଛଳଛଳ ହୋଇ ଯାଉଥାଏ; ମୁହଁ ବୁଲେଇ ସେମାନେ ପଣତରେ ଲୁହ ପୋଛି ନେଉଥିଲେ । ଅଳିନ୍ଦରେ ଠିଆ ହୋଇ ରହିଥିବା କଞ୍ଚୁକୀର ଧଳା ନିଶ ଦାଢ଼ି ବି ମଝିରେ ମଝିରେ ଥରିଯାଇ ସ୍ଥିର ହୋଇ ଯାଉଥାଏ ।

ମହାରାଣୀଙ୍କର କକ୍ଷଦ୍ୱାରରେ ଠିଆହୋଇ ଅଙ୍ଗଦାସୀ ଧାରା ଓ ନୀମା ମଧ୍ୟ ବାରମ୍ବାର ଆଖି ପୋଛି ନେଉଥିଲେ । ଅଳିନ୍ଦରେ ଠିଆ ହୋଇଥିବା ଯବନୀଙ୍କର ବକ୍ଷ ମଧ୍ୟ ଦୀର୍ଘନିଃଶ୍ୱାସର ଆବେଗରେ ଆନ୍ଦୋଳିତ ହେଉଥିଲା । ସବୁରି ମନ ମଧ୍ୟରାତ୍ରି ପରର ପ୍ରଥମ ଘଡ଼ିର ଟଂକାର ଶୁଣିବା ଲାଗି ବ୍ୟାକୁଳିତ ହୋଇ

ରହିଥିଲା । ସେତେବେଳେ ତଳ ଅଗଣାରେ ଦାସୀମାନେ ପଦଶବ୍ଦ ଶୁଣିଲେ । ସେମାନେ ପାଦ ଚିପିଚିପି ଅଳିନ୍ଦକୁ ଆସିଲେ ଏବଂ ତଳ ଅଗଣାକୁ ଅନେଇ ଦେଖିଲେ ।

ଦାସୀ ଧାରାର ଆଦେଶ ଅନୁସାରେ ମହାରାଣୀଙ୍କର ଶିବିକା ବାହକମାନେ ଅଗଣାରେ ଶିବିକା ପ୍ରସ୍ତୁତ କରି ରଖିଥିଲେ । 'ସମୟ ହେଲା' ଅନୁମାନ କରି ସମସ୍ତେ ବିହ୍ୱଳିତ ହୋଇଉଠିଲେ । ଦାସୀ ଓ ଯବନୀମାନଙ୍କର ଲୋତକ ଧାରା ବହିଗଲା ।

ହିତା ଚୁପଚାପ ରାଜକୁମାରୀଙ୍କ ପଲଙ୍କ ପାଖରେ ନଇଁ ଶୋଇ ପଡ଼ିଥିବା ଅମିତାଙ୍କୁ ବାହୁରେ ଉଠେଇ କାନ୍ଧରେ ଭରାଦେଇ ଶୁଏଇଦେଲା । ସେ ସମ୍ଭବତଃ କୌଣସି ସ୍ୱପ୍ନ ଦେଖୁଥିଲେ । ଡାକି ପକେଇଲେ – 'ମା'

ହିତାର ବୋହି ଆସୁଥିବା ଲୁହଧାର ରୋକିନେବା ବେଶ କଠିନ ହେଲା । ସେ ଭାବୁଥାଏ – ମାଆଙ୍କୁ ମନେପକେଇ ଯୁବରାଣୀ କାନ୍ଦିବେ ଯଦି କ'ଣ ବୁଝେଇବି ? ସେ ଶୋଇ ପଡ଼ିଥିବା ଅମିତାଙ୍କୁ କାନ୍ଧେଇ ଅଳିନ୍ଦକୁ ଆସି ଅଗଣାକୁ ଅନେଇଲା ।

ମହାରାଣୀଙ୍କର ପାଲିଙ୍କି ଅଗଣାକୁ ଆସିବାର ସାମାନ୍ୟ କିଛିକ୍ଷଣ ହୋଇ ନ ଥାଏ ଅନ୍ତଃପୁର ପରିସରରେ ଆଲୁଅ ଦିଶିଲା । ଅଳିନ୍ଦରେ ଥିବା ଦାସୀ ଓ ଯବନୀମାନେ ସେ ପଟକୁ ଅନେଇଲେ । ମଶାଲଧାରୀ ଜଣେ ସେବକ ଆସିଲା । ତା'ର ପଛେ ପଛେ ଆଉ ଜଣେ ସେବକ ସାଙ୍ଗରେ ସାମନ୍ତ ପ୍ରତାପ ଆସି ପହଞ୍ଚିଲେ । ସବା ପଛରେ ଶିବିକା ବାହକମାନେ ଥିଲେ ।

ସାମନ୍ତ ପ୍ରତାପ ଶିବିକା ସମୀପରେ ବସିଥିବା ମଶାଲଧାରୀ ଏବଂ ବାହକମାନଙ୍କୁ ଚାଲିଯିବାକୁ କହିଲେ । ସାମନ୍ତଙ୍କ ସାଙ୍ଗରେ ଆସିଥିବା ସେବକ ସେମାନଙ୍କୁ ନେଇ ଚାଲିଗଲା । ସାମନ୍ତଙ୍କ ସହିତ ଆସିଥିବା ମଶାଲଧାରୀ ଓ ଶିବିକା ବାହକମାନେ ଶିବିକା ପାଖରେ ବସିଗଲେ । ମାତ୍ର ସେମାନଙ୍କର ପୁଷ୍ଟ ବଳିଷ୍ଠ ଶାରୀରିକ ଗଠନ ପାଇଁ ସେମାନେ ଶିବିକା ବାହକ ଭଳି ଜଣାଯାଉ ନ ଥିଲେ । ଦାସୀ ଓ ଯବନୀମାନେ ବିସ୍ମୟ ଓ ଆତଙ୍କରେ ଏ ସବୁ କ'ଣ ହେଉଛି ବୋଲି ଭାବୁଥିଲେ ।

ମଧ୍ୟନିଶା ପରେ ପ୍ରଥମ ଘଡ଼ିର ଟଙ୍କାର ଶୁଣାଗଲା । ତାହା ସେହି ନିସ୍ତବ୍ଧ ରାତ୍ରିର ଅନ୍ଧକାରରେ ଯବନୀ ଓ ଦାସୀମାନଙ୍କର ହୃଦୟକୁ ସତେ ଯେପରି ବିନ୍ଧି କଲା । ସେମାନେ ଯେଉଁପରି ସେହି ପୀଡ଼ା ହେତୁ ନିଃଶ୍ୱାସ ନେବାକୁ ବି କଠିନ ମନେ କରୁଥିଲେ । ହିତା ଆପଣା କାନ୍ଧରେ ଶୋଇଥିବା ଯୁବରାଜ୍ଞୀଙ୍କୁ

ବାହୁରେ ଭିଡ଼ିଧରି ଛାତିରେ ଜଡ଼େଇନେଲା । ସବୁରି ଦୃଷ୍ଟି ମହାରାଣୀଙ୍କର କକ୍ଷ ଦିଗରେ ଆପେ ଆପେ କେନ୍ଦ୍ରିତ ହୋଇଗଲା ।

ଯେତେବେଳେ ମଶାଲ ନେଇ ଜଣେ ଦାସୀ ମହାରାଣୀଙ୍କର କକ୍ଷଦ୍ୱାରରେ ଉପସ୍ଥିତ ହେଲା ଧାରାର ପଛେ ପଛେ ମହାରାଣୀ କକ୍ଷରୁ ବାହାରି ଆସିଲେ । ମଶାଲମାନଙ୍କର ରକ୍ତପୀତାଭ ଆଲୋକରେ ତାଙ୍କର ଗୌରବର୍ଣ୍ଣ ଉଜ୍ଜ୍ୱଳ ରୂପ ତେଜୋମୟ ମନେ ହେଉଥିଲା । ନେତ୍ର ଅବନତ । ଓଷ୍ଠ ମନ୍ତ୍ର ଜପ ହେତୁ କମ୍ପିତ ହେଉଥିଲେ । ଧାରା ଓ ନୀମା ତାଙ୍କ ପଛରେ ଲୁହ ପୋଛି ବାହାରି ଆସୁଥିଲେ । ସୋପାନ ମାର୍ଗ ଦେଇ ମହାରାଣୀ ଧୀରପଦରେ ଓହ୍ଲେଇ ଆସିଲେ । ହିତା ମଧ୍ୟ ଅମିତାଙ୍କୁ ଛାତିରେ ଭିଡ଼ିଧରି ଓହ୍ଲେଇ ଆସୁଥାଏ ।

ମହାରାଣୀ ଅଗଣାକୁ ଆସିଲେ । ସାମନ୍ତ ପ୍ରତାପ ତାଙ୍କୁ ଦୂରରୁ ଅଭିବାଦନ ଜଣାଇ ପଛକୁ ଘୁଞ୍ଚିଗଲେ । ଶିବିକାକୁ ଯିବା ପୂର୍ବରୁ ମହାରାଣୀ ପଛକୁ ଅନେଇ ଦେଖିଲେ ।

ହିତା ମଥାନତ କରି ତା'ର ଛାତିରେ ନିବିଡ଼ ନିଦ୍ରାରେ ଶୋଇ ଯାଇଥିବା ଯୁବରାଣୀଙ୍କୁ ନେଇ ଆଗକୁ ଆସିଲା । ମହାରାଣୀ ମନ୍ତ୍ରପାଠ କରୁଥିବା ଅବସ୍ଥାରେ ଯୁବରାଣୀଙ୍କର ମଥାରେ ହାତ ରଖି କିୟତ୍ କ୍ଷଣ ପରେ ଶିବିକା ଆରୋହଣ କଲେ ।

ବାହକମାନେ ଶିବିକା ଉଠେଇ ଚାଲିବା ଆରମ୍ଭ କଲେ । ଧାରା ଓ ନୀମା ପାଲିଙ୍କି ସହିତ ଚାଲିବାକୁ ଲାଗିଲେ । ସାମନ୍ତ ପ୍ରତାପ ମଧ୍ୟ ଶିବିକାର ଅନୁସରଣ କଲେ । ତାଙ୍କ ପଛେ ପଛେ ଅମିତାଙ୍କୁ ଧରି ହିତା, ବାପୀ, ଯବନୀ ଓ ଅନ୍ୟାନ୍ୟ ଦାସୀମାନେ କୋହ ଚାପି ପଣତ କାମୁଡ଼ି ଚାଲିବାକୁ ଲାଗିଲେ ।

ଅନ୍ତଃପୁରର ପ୍ରାଙ୍ଗଣ ପଥରେ ସାମନ୍ତ ପ୍ରତାପ ଧାରା ଓ ନୀମାଙ୍କ ଛଡ଼ା ଅନ୍ୟମାନଙ୍କୁ ମୌନ ରହିବାକୁ ଏବଂ ଅଗ୍ରସର ନ ହେବାକୁ ସଂକେତରେ ନିର୍ଦ୍ଦେଶ ଦେଲେ । ସେମାନେ ମୁହଁ ଉପରେ ପଣତ ଚାପି କୌଣସିମତେ ନିଜ ନିଜକୁ କ୍ରନ୍ଦନ ବିରତ କରିବାକୁ ଚେଷ୍ଟା କରୁଥିଲେ ।

ଶିବିକାରେ ଆଖିବୁଜି ମହାରାଣୀ ମନ୍ତ୍ରପାଠ କରୁଥିଲେ । ମାତ୍ର ଧାରା ଓ ନୀମା ରାଜପ୍ରାସାଦର ପ୍ରାଙ୍ଗଣରେ ଅନେକ ମଶାଲର ପ୍ରକାଶ ଦେଖି ବିସ୍ମିତ ଓ ଆତଙ୍କିତ ହୋଇ ଉଠିଲେ । ସ୍ୱୟଂ ମହାମାତ୍ୟ, ମହାସେନାପତି ତଥା ଅନ୍ୟାନ୍ୟ ସେନାପତିମାନେ ଅନେକ ଅଶ୍ୱାରୋହୀ ସୈନିକମାନଙ୍କ ସହିତ ମୌନ ହୋଇ ଠିଆହୋଇ ରହିଥିଲେ । ଦୁଇଜଣ ସେନାପତି ଓ ଚାରିଜଣ ସଶସ୍ତ୍ର ଅଶ୍ୱାରୋହୀ

ସୈନିକ ମହାରାଣୀଙ୍କର ଶିବିକା ଆଗରେ ଏବଂ ମହାମାତ୍ୟଙ୍କ ସହିତ ଅନ୍ୟାନ୍ୟ ସେନାପତିମାନେ ଶିବିକା ପଛରେ ଚାଲିବାକୁ ଲାଗିଲେ । ଅପର ସମସ୍ତ ସୈନିକ ପଂକ୍ତିବଦ୍ଧ ହୋଇ ଶିବିକାର ଉଭୟ ପାର୍ଶ୍ୱରେ ଚାଲିଥିଲେ ।

ରାଜପ୍ରାସାଦର ମୁଖ୍ୟଦ୍ୱାର ଦେଇ ଶିବିକା ଅତିକ୍ରମ କରି ଗଲାବେଳେ ଦାସୀ ଓ ଯବନୀମାନେ କୋହ ଚାପିପାରିଲେ ନାହିଁ । କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ ।

ହିତା ଭୟରେ ଥରିଉଠିଲା । କାଳେ ଯୁବରାଜ୍ଞୀଙ୍କର ନିଦ୍ରାଭଙ୍ଗ ହେବ । ସେ ବାଳିକାଙ୍କୁ ଛାତିରେ ଜଡ଼େଇ ଧରି ଶୟନ କକ୍ଷକୁ ଦଉଡ଼ିଗଲା ।

ନୀରବ ନିଶାରେ ମହାରାଣୀଙ୍କର ପାଲିଙ୍କି ଅନେକ ମାର୍ଗ ଦେଇ ଚାଲିଥିଲା । ମହାରାଣୀ ପାଲିଙ୍କିର ପରଦା ଅନ୍ତରାଳରେ ନେତ୍ରରେ ପଲକର ପରଦା ପକେଇ ଗୁରୁଚରଣରେ ଚିତ୍ତାର୍ପିତ ହୋଇ ଧ୍ୟାନସ୍ଥ ହୋଇ ମନ୍ତ୍ରପାଠ କରି ଚାଲିଥିଲେ । ଶିବିକା ଭୂସ୍ପର୍ଶ କଲା । ମହାରାଣୀ ଶିବିକାରେ ତଥାଗତ ତଥା ଶ୍ରୀଗୁରୁ ଚରଣରେ ପ୍ରଣାମ ଜଣେଇ ଆଖି ଖୋଲି ଶିବିକାରୁ ଓହ୍ଲେଇ ଆସିଲେ ।

ମହାରାଣୀ ଚତୁର୍ଦ୍ଦିଗକୁ ବିସ୍ମୟରେ ଅନେଇଲେ । ସେ ବିହାରରେ ନୁହଁ, ଅନ୍ୟ କୌଣସି ଏକ ସ୍ଥାନରେ ପହଞ୍ଚିଥିଲେ । ଆପଣା ଚାରିପଟେ ଜଳୁଥିବା ମଶାଲମାନଙ୍କର ଆଲୋକରେ ସେ ପୀତଚୀବରଧାରୀ ଭିକ୍ଷୁ ଓ ସ୍ଥବିରଙ୍କୁ ନୁହେଁ, ସଶସ୍ତ୍ର ସୈନିକ, ସେନାପତି, ମହାସେନାପତି ଓ ମହାମାତ୍ୟଙ୍କୁ ଦେଖିଲେ । ଆଚାର୍ଯ୍ୟ ଓ ଭଦ୍ରକୀର୍ତ୍ତି ବିନୟ ପୂର୍ବକ ପ୍ରଣାମ କରି ଆଦେଶ ପ୍ରତୀକ୍ଷାରେ ମୌନ ହୋଇ ଠିଆହୋଇଥିଲେ ।

ମହାରାଣୀଙ୍କୁ ବାଧ୍ୟ ଓ କ୍ଷୁବ୍ଧ ହୋଇ ତାଙ୍କର ମୌନଭଙ୍ଗ କରିବାକୁ ପଡ଼ିଲା । ସେ ଆଚାର୍ଯ୍ୟଙ୍କୁ ଦେଖି ପ୍ରଶ୍ନ କଲେ– 'ମୁଁ ବିହାରରେ ନୁହଁ... ଆଉ କୋଉଠି ଅଛି ?'

ଆଚାର୍ଯ୍ୟ ତାଙ୍କୁ ପୁନଶ୍ଚ ପ୍ରଣାମ କରି ବିନୟ ସହକାରେ ଉତ୍ତର ଦେଲେ– 'ପରମ ଭଗବତୀ ରାଜେଶ୍ୱରୀଙ୍କୁ ରାଜପ୍ରାସାଦର ନିବାସ ପ୍ରକୃଷ୍ଟ ମନେହେଲା ନାହିଁ । ତେଣୁ ବର୍ତ୍ତମାନ ମହାରାଣୀ ଶ୍ରୀଷ ଦୁର୍ଗର ଏକାନ୍ତରେ ଅଛନ୍ତି । ପରମଭଗବତୀ ଏଠାରେ ଏକାନ୍ତରେ ଧର୍ମ ସାଧନା କରିପାରିବେ ।

ମହାରାଣୀଙ୍କର କପାଳରେ କ୍ରୋଧର ରେଖା ଉକୁଟି ଉଠିଲା । 'ମୁଁ ଦୁର୍ଗକୁ ନୁହଁ, ବିହାରକୁ ଯିବାକୁ ଚାହେଁ । ଆଚାର୍ଯ୍ୟ ମୋ ସହିତ କପଟ କରିଛନ୍ତି । ମୁଁ ଦିବ୍ୟଶକ୍ତିର ଚମତ୍କାର ଦର୍ଶନ ଦ୍ୱାରା ସିଦ୍ଧି ଲାଭ କରିବାକୁ ବିହାରକୁ ଯିବାକୁ ଚାହୁଁଛି ।'

ଆଚାର୍ଯ୍ୟ ପୁଣି ବିନୟରେ ମଥାନତ କରି ନିବେଦନ କଲେ– 'ପରମ ଭଗବତୀ, ସେବକର ଅବିନୟ କ୍ଷମା କରନ୍ତୁ । ମହାରାଣୀଙ୍କର ସ୍ଥାନ ବିହାର ନୁହେଁ । ମହାରାଣୀ ବିହାରରେ ନିବାସ କଲେ ତାଙ୍କର ରାଜସ୍ୱ ଗୁଣ ରହିବ ନାହିଁ । ଯେଉଁପରି ଜଳରେ ଅଗ୍ନି ତା'ର ଗୁଣ ହରାଇଥାଏ ।'

ମହାରାଣୀଙ୍କର କ୍ରୋଧ ଦ୍ୱିଗୁଣିତ ହେଲା । ସେ କହିଲେ– 'ଏହା ମୋର ଦୃଢ଼ ନିଶ୍ଚୟ, ମୁଁ ବିହାରକୁ ଯିବି । ଆଚାର୍ଯ୍ୟ କେବଳମାତ୍ର ରାଜ୍ୟର ସେବକ ।'

ଆଚାର୍ଯ୍ୟ ନତମସ୍ତକ ହୋଇ ଅବିଚଳିତ ସ୍ୱରରେ ଉତ୍ତର ଦେଲେ– ପରମ ଭଗବତୀଙ୍କର କଥନ ସତ୍ୟ । ଆଚାର୍ଯ୍ୟ ନିଶ୍ଚିତ ଭାବରେ କଳିଙ୍ଗ ରାଜ୍ୟ ଏବଂ ରାଜକୁଳର ସେବକ । ରାଜସେବକର ପରମ କର୍ତ୍ତବ୍ୟ ହେଲା ରାଜ୍ୟର ରକ୍ଷା କରିବା । ଆଚାର୍ଯ୍ୟ ଛଳ ନୁହେଁ ଧର୍ମ ପାଳନ କରୁଛି । ପରମ ଭଗବତୀ ଅନାସକ୍ତ ଭାବରେ ବିଚାର କରନ୍ତୁ । ରାଜ୍ୟ କୌଣସି ବ୍ୟକ୍ତିର ନୁହେଁ କିମ୍ବା କୌଣସି ବ୍ୟକ୍ତି ନିହିତ ହୋଇ ରହି ନ ଥାଏ । ରାଜ୍ୟ ତ ଦେଶ ଏବଂ ପ୍ରଜା । ରାଜ୍ୟକୁ କାହାକୁ ଅର୍ପଣ କିମ୍ବା ସଂକଳ୍ପ କରାଯାଇପାରିବ ନାହିଁ । ରାଜସିଂହାସନର ଉତ୍ତରାଧିକାରିଣୀ ପରମ ଭଗବତୀ ଯୁବରାଜ୍ଞୀ । ଭଗବତୀ ରାଜମାତାଙ୍କର ଅନୁମତିରେ ଆଗାମୀ ପୂର୍ଣ୍ଣିମାର ଶୁଭଲଗ୍ନରେ କଳିଙ୍ଗ ରାଜ୍ୟାସନର ଉତ୍ତରାଧିକାରିଣୀ ଯୁବରାଜ୍ଞୀ ରାଜସିଂହାସନ ଆରୋହଣ କରିବେ । ଏହି ମୁହୂର୍ତ୍ତରୁ ମହାମହିମାମୟୀ, ପରମ ଭଗବତୀ ଦେବରକ୍ଷିତା କଳିଙ୍ଗ ରାଜେଶ୍ୱରୀ ଅମିତାଙ୍କର ଆଦେଶରେ କଳିଙ୍ଗ ରାଜ୍ୟର ଶାସନ ହେବ । ଭଗବତୀ ରାଜମାତା ରାଜ୍ୟ ଏବଂ ରାଜେଶ୍ୱରୀ ଅମିତାଙ୍କର କଲ୍ୟାଣ କାମନାରେ ଯୁଦ୍ଧକାଳ ପର୍ଯ୍ୟନ୍ତ ଏଠାରେ ନିବାସ କରନ୍ତୁ; ଏହା ରାଜପରିଷଦର ବିନୀତ ପ୍ରାର୍ଥନା ।

ମହାରାଣୀଙ୍କର ଅବଶ କ୍ରୋଧ ଦ୍ରବିତ ହୋଇ ଲୋତକ ରୂପରେ ଝରିଆସିଲା । ସେ ଉଚ୍ଚୈସ୍ୱରରେ କହିଲେ– 'ଆଚାର୍ଯ୍ୟ ଛଳକରି ମୋତେ ପ୍ରାସାଦରୁ ହଟେଇ ଦେଶକୁ ପାପ, ବଳି ଓ ହିଂସାରେ ବୁଡ଼େଇ ଦେବାକୁ ଚାହାନ୍ତି । ହିଂସାର ପାପରେ ରାଜ୍ୟର ତ୍ରାଣ ଆଦୌ ସମ୍ଭବ ହେବ ନାହିଁ ।'

ଆଚାର୍ଯ୍ୟଙ୍କର ଭାବମୁଦ୍ରା ଓ ସ୍ୱର ଅଧିକ ବିନୀତ ହୋଇଉଠିଲା । ସେ ଉତ୍ତର ଦେଲେ– 'ଭଗବତୀ ରାଜମାତା ରାଜ୍ୟ ଓ ପ୍ରଜାଙ୍କର କଲ୍ୟାଣ କାମନା କରୁଛନ୍ତି । ଭଗବତୀ, ପାପ-ପୁଣ୍ୟ, ହିଂସା-ଅହିଂସା କୌଣସି ବ୍ୟକ୍ତିର ହଠ ଆଉ ଅହଂକାର ଉପରେ ନିର୍ଭର କରେ ନାହିଁ । ତା'ର ନିର୍ଣ୍ଣୟ ପ୍ରଜା ଓ ରାଜ୍ୟର କଲ୍ୟାଣ ସାଧନ, ବହୁଜନ ହିତ ଏବଂ ବିଶ୍ୱାସ ବିଧାନ କରିଥାଏ । ପଶୁମାନଙ୍କ ପ୍ରତି ମହାରାଣୀଙ୍କର ଦୟା ହେତୁ ଘୋଷିତ ବଳି-ନିଷେଧ ଆଦେଶ ଫଳରେ

ଅସଂଖ୍ୟ ପ୍ରଜା କ୍ଷୁବ୍ଧ, ହତାଶ ଏବଂ ବିମୂଢ଼ ହୋଇଛନ୍ତି । ଏହି କ୍ଷୋଭ ଅନେକ ଉତ୍ପାତ ଏବଂ ପାରସ୍ପରିକ ହିଂସାର କାରଣ ହୋଇଛି । ଭଗବତୀ, ବହୁଜନ ହିତ ଏବଂ ସନ୍ତୋଷ ହିଁ ପୁଣ୍ୟ ଓ ବହୁଜନ ଅହିତ ଓ କଷ୍ଟ ହିଁ ପାପ । ଜନଗଣର ଇଚ୍ଛାବିରୋଧରେ ସେମାନଙ୍କୁ ନିର୍ବାଣ ନିମନ୍ତେ ବାଧ କରିବା ମଧ୍ୟ ସେମାନଙ୍କ ପ୍ରତି ଏକପ୍ରକାର ହିଂସା !'

ମହାରାଣୀ ଆବେଗରେ କହିଲେ— 'ଆଚାର୍ଯ୍ୟ, ଅହଂକାର ଓ ମୋହ ହେତୁ ଭଗବାନ୍ ଓ ଗୁରୁଙ୍କର ଅବଜ୍ଞା କରୁଛନ୍ତି । ଆଚାର୍ଯ୍ୟ ଭଗବାନ୍ ଏବଂ ଗୁରୁଙ୍କର ଦିବ୍ୟ ଶକ୍ତିକୁ ଚିହ୍ନି ନାହାନ୍ତି । ଆଚାର୍ଯ୍ୟ ଜାଣନ୍ତି ନାହିଁ ପରମ ଯୋଗୀ ମହାସ୍ଥବିର ଜୀବକଙ୍କର ଆକାଶ ମାର୍ଗରେ ବିଚରଣର ସିଦ୍ଧି ଅଛି । ଭଗବାନ୍‌ଙ୍କର ସାକ୍ଷାତ୍ ପ୍ରାପ୍ତ କରିଥିବା ମହାସ୍ଥବିର ହିଁ ଚମତ୍କାରୀ ଦିବ୍ୟଶକ୍ତିରେ ଏହି ରାଜ୍ୟକୁ ରକ୍ଷାକରିବାକୁ ସମର୍ଥ । ଆଚାର୍ଯ୍ୟ ତାଙ୍କର ଅବଜ୍ଞା କରି ରାଜ୍ୟର ବିନାଶ ...' ଉତ୍ତେଜନାରେ ମହାରାଣୀ କହିପାରିଲେ ନାହିଁ ....

ଆଚାର୍ଯ୍ୟ ପୁନଶ୍ଚ ବିନୀତ ଭାବରେ ନିବେଦନ କଲେ— 'ଭଗବତୀ ରାଜମାତା, ଦେବତାମାନଙ୍କର ଦିବ୍ୟଶକ୍ତି ମନୁଷ୍ୟମାତ୍ରରେ ପ୍ରକଟିତ ଓ ଚରିତାର୍ଥ ହୋଇଥାଏ । ଦେବତାର ଶକ୍ତି ମନୁଷ୍ୟର ବିଶ୍ୱାସ ମଧ୍ୟରେ ନିହିତ ହୋଇ ରହିଛି । ମନୁଷ୍ୟର ଅଜ୍ଞାନ ହିଁ ତାର ଭୟ । ଏ ଯୁଦ୍ଧ କଳିଙ୍ଗର ଏବଂ ମଗଧର ଦେବତାମାନଙ୍କ ମଧ୍ୟରେ ହେବ ନାହିଁ । ମଗଧ ଓ କଳିଙ୍ଗ ରାଜ୍ୟ ମଧ୍ୟରେ ହେବ ଏବଂ ମନୁଷ୍ୟମାନେ ଯୁଦ୍ଧ କରିବେ । ରାଜ୍ୟ ଓ ପ୍ରଜା ସ୍ୱୟଂ ଆପଣାର ରକ୍ଷା କରିବେ । ପକ୍ଷୀ ମଧ୍ୟ ଆକାଶ ମାର୍ଗରେ ବିଚରଣ କରିବାକୁ ସମର୍ଥ ମାତ୍ର ସେ ଦିବ୍ୟ ଶକ୍ତି ସଂପନ୍ନ ନୁହେଁ । ପକ୍ଷୀମାନେ ମନୁଷ୍ୟର ଭାଗ୍ୟର ବିଧାନ କରିପାରିବେ ନାହିଁ । ପ୍ରଜାଙ୍କର ଦୟା ଏବଂ ଭିକ୍ଷାରେ ନିର୍ବାହ କରୁଥିବା ବ୍ୟକ୍ତି କିଭଳି ପ୍ରଜାର ରକ୍ଷା ଓ ଶାସନ କରିବ !'

ମହାରାଣୀ ଗୁରୁନିନ୍ଦା ଶୁଣିବାର ପାପରୁ ନିବର୍ତ୍ତିବାକୁ କାନ ବନ୍ଦ କରିନେଲେ; ଆଖି ବୁଜି ନେଲେ ।

ମହାମାତ୍ୟ ଓ ମହାସେନାପତି ଭୂମି ସ୍ପର୍ଶ କରି ମହାରାଣୀଙ୍କର ଅଭିବାଦନ କଲେ ଏବଂ ତାଙ୍କ ଆଗରେ ମଥାନତ ହୋଇ ଦୁର୍ଗଦ୍ୱାରକୁ ପଛେଇ ପଛେଇ ଫେରି ଆସିଲେ ।

# ମହାମାତ୍ୟଙ୍କର ସମାଧାନ

ଅଶୋକଙ୍କର ସୈନ୍ୟଦଳ କଳିଙ୍ଗର ଉତ୍ତର ଓ ପଶ୍ଚିମର ପ୍ରଦେଶଗୁଡ଼ିକ ଜୟକରି ଲୁଣ୍ଠନ କରି କରି କଳିଙ୍ଗ ରାଜ୍ୟର ସୀମା ପର୍ଯ୍ୟନ୍ତ ପହଞ୍ଚି ଯାଇଥିଲେ । ମଗଧ ସେନାଦ୍ୱାରା ଲୁଣ୍ଠିତ ଓ ତ୍ରସ୍ତ ଲୋକେ ବହୁସଂଖ୍ୟାରେ ଆସି କଳିଙ୍ଗ ରାଜ୍ୟର ରାଜଧାନୀ ତଥା ଅନ୍ୟାନ୍ୟ ନଗରମାନଙ୍କରେ ଶରଣ ନେଇଥିଲେ । ସେଇ ତ୍ରସ୍ତ ଓ ପୀଡ଼ିତ ଲୋକଙ୍କ ସମାବେଶ ହେତୁ ରାଜଧାନୀରେ ବିରୂପତା ଓ ଆତଙ୍କ ଖେଳି ଯାଇଥିଲା । ଯଜ୍ଞ-ବଳିର ପ୍ରଶ୍ନ ନେଇ ନଗରରେ ବିଶୃଙ୍ଖଳା ଓ ଉତ୍ପାତ ଫଳରେ ପ୍ରଜାକୁଳ ଅବସନ୍ନ ଥିଲେ । କଳିଙ୍ଗର ନାଗରିକମାନେ ପାରସ୍ପରିକ କଳହ ହେତୁ ଆହତ ପରିବାର ଭଳି ପରିତାପରେ ଦୀର୍ଘ ନିଃଶ୍ୱାସ ନେଉଥିଲେ । ମହାରାଣୀଙ୍କର ନଗର ଛାଡ଼ି ଚାଲି ଯାଇଥିବାର ସମାଚାର ମଧ୍ୟ ସେମାନଙ୍କୁ ନୈତିକ ଦୃଷ୍ଟିରୁ ଦୁର୍ବଳ କରିଥିଲା ।

ମହାମାତ୍ୟ ସୁକଣ୍ଠ ରାଜ୍ୟ ଓ ନଗରର ସଂପୂର୍ଣ୍ଣ ଆତଙ୍କ ଏବଂ ଅବସାଦକୁ ଆପଣା ହୃଦୟରେ ଧାରଣ କରି ମଧ୍ୟ ଅବିଚଳିତ ଥିଲେ । ସେ ଶ୍ୱେତ ଶ୍ମଶ୍ରୁ ମଣ୍ଡିତ ମୁଖମଣ୍ଡଳରେ ସ୍ମିତ ହସ ଖେଳେଇ ପ୍ରଜାମାନଙ୍କୁ ଆଶ୍ୱାସନା ଦେଲେ –

"ଭଗବତୀ ରାଜମାତା ରାଜ୍ୟର ସୁରକ୍ଷା ଓ କଲ୍ୟାଣ ଉଦ୍ଦେଶ୍ୟରେ ଧ୍ୟାନ ସାଧନାଦ୍ୱାରା ଦିବ୍ୟଶକ୍ତିମାନଙ୍କର ସହାୟତା ପାଇବେ ବୋଲି ତପସ୍ୟା କରୁଛନ୍ତି । ମହାରାଣୀଙ୍କର ଇଚ୍ଛା ଯେ ମହାରାଜାଙ୍କ ଆଦେଶ ଅନୁସାରେ ବିଜୟର ଶୁଭଲଗ୍ନରେ ଜନ୍ମଗ୍ରହଣ କରିଥିବା ଦେବତା ସ୍ୱରୂପିଣୀ ଯୁବରାଜ୍ଞୀ ଅମିତା ଅବିଳମ୍ବେ ସିଂହାସନାରୂଢ଼ା ହୋଇ ଦେଶ ଓ ପ୍ରଜାକଲ୍ୟାଣର ଦାୟିତ୍ୱ ବହନ କରନ୍ତୁ । ତେଣୁ କାର୍ତ୍ତିକ ଶୁକ୍ଳା ଅଷ୍ଟମୀ ତିଥିରୁ ରାଜେଶ୍ୱରୀଙ୍କର ଅଭିଷେକ ଉତ୍ସବର ଶୁଭାରମ୍ଭ ହେଉ ।"

ରାଜଧାନୀର ପ୍ରଜା ଆନନ୍ଦ ଓ ଉତ୍ସାହ ପ୍ରମତ୍ତ ହୋଇଉଠିଲେ । ନଗରର ଭବନ, ଅଟ୍ଟାଳିକା ଓ କୋଠିମାନଙ୍କରେ ଝାଞ୍ଜ, ମୃଦଙ୍ଗ, ତୂରୀ, ଭେରୀ ଶବ୍ଦମୁଖର ହୋଇଉଠିଲା । ବୀଥିକାମାନଙ୍କରେ, ବଜାର ଓ ରାଜପଥରେ, ଦ୍ୱାର ଏବଂ ରାଜପ୍ରାସାଦର ଅଳିନ୍ଦମାନଙ୍କରେ ବନ୍ଦନାଧ୍ୱଜ ଓ ତୋରଣ ସଜ୍ଜା ଆରମ୍ଭ ହୋଇଗଲା । ନଗରର ଚତୁଷ୍ପଥମାନଙ୍କରେ ବିନୋଦ ସମାରୋହ ନିମନ୍ତେ ମଞ୍ଚ ତଥା ବେଦୀମାନଙ୍କର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଗଲା । ଘର, ଭବନ, ଅଟ୍ଟାଳିକାମାନଙ୍କର ମୁଖ୍ୟଦ୍ୱାରରେ ପୂର୍ଣ୍ଣକୁମ୍ଭ ସ୍ଥାପିତ ହେବାକୁ ଲାଗିଲେ । ଅଗଣା ଓ ଦ୍ୱାରଦେଶରେ ବହୁବିଧ ଆଳଂକାରିକ

ଚିତା ଚିତ୍ରିତ ହେଲେ । ନଗରର ବାତାବରଣରେ ଧୂପ, ଅତର ଓ ବହୁ ସୁଗନ୍ଧିତ ଦ୍ରବ୍ୟଧୂମ ଭରି ଉଠିଲା । ଘୃତ, ତୈଳ, ଅନ୍ନ, ମାଂସ, ମିଷ୍ଟାନ୍ନ ଆଦିର ସୁବାସରେ ପବନ ଭାରାକ୍ରାନ୍ତ ହୋଇଉଠିଲା । ପ୍ରଜାକୁଳ ଆନନ୍ଦ ଉତ୍ସାହରେ ମାତିଉଠିଲେ ଏବଂ ଅଶୋକଙ୍କର ଆକ୍ରମଣର ପ୍ରତିରୋଧ କରିବା ନିମନ୍ତେ ଯୁଦ୍ଧ ସଂବନ୍ଧୀ ଆୟୋଜନ ଦ୍ୱିଗୁଣିତ ଉତ୍ସାହରେ ହେବାକୁ ଲାଗିଲା । ଲୌହକାରମାନଙ୍କର ନିର୍ମାଣଶାଳାର ଅନବରତ କର୍କଶ ଶବ୍ଦ ହେତୁ ସେହି କ୍ଷେତ୍ରମାନଙ୍କରେ ଅନ୍ୟକଥା କାନରେ ପଡ଼ିଲା ନାହିଁ । ତେବେ ମହାମାତ୍ୟ ଜାଣିଥିଲେ, ଦୁଃଖ ଓ ସନ୍ତାପରେ ନିରୁତ୍ସାହିତ ମନୁଷ୍ୟ ଶତ୍ରୁ ଆକ୍ରମଣର ପ୍ରତିରୋଧ କରିପାରିବ ନାହିଁ ।

ମହାମାତ୍ୟଙ୍କର ବୟସ ପଞ୍ଚାବନ ବର୍ଷ । ସେହି ସମୟରେ ତାଙ୍କର ପତ୍ନୀଙ୍କର ଦେହାନ୍ତ ହେଲା । ସେ ସମୟରେ ସେ ତାଙ୍କର ପୈତୃକ ପ୍ରାସାଦରେ ରହୁଥିଲେ ହେଁ ପାରିବାରିକ ତଥା ବୈୟକ୍ତିକ ଚିନ୍ତା ନିବୃତ୍ତ ହୋଇ ବାନପ୍ରସ୍ଥୀ ଭଳି ଜୀବନଯାପନ କରୁଥିଲେ । ରାଜକାର୍ଯ୍ୟ ସହିତ ସେ ଅଧ୍ୟୟନ ଓ ମନନ କାର୍ଯ୍ୟରେ ହିଁ ମଗ୍ନ ରହୁଥିଲେ । ଘରେ ପୁତ୍ର, ପୁତ୍ରବଧୂ, ପୌତ୍ର, ପୌତ୍ରୀମାନଙ୍କୁ ବେଳେବେଳେ ଦୁଇ ତିନି ସପ୍ତାହ ପର୍ଯ୍ୟନ୍ତ ଦେଖିପାରୁ ନ ଥିଲେ ହେଁ ରାଜପ୍ରାସାଦରେ ପହଞ୍ଚି ବାଳିକା ଯୁବରାଜ୍ଞୀ ପ୍ରତି ମାତାଭଳି କର୍ତ୍ତବ୍ୟ ସଂପାଦନ କରିବାକୁ ସେ ସ୍ୱୀକାର କରିନେଇଥିଲେ । ମାତାର ଅଭାବରେ ବାଳିକା ଯୁବରାଜ୍ଞୀ ଦୁଃଖୀ ଓ ଅଧୀର ନ ହୁଅନ୍ତୁ ବୋଲି ସେ ସର୍ବଦା ଚିନ୍ତିତ ରହୁଥିଲେ ।

ମହାମାତ୍ୟ ତାଙ୍କର ପୁତ୍ର ଓ ପୁତ୍ରୀମାନଙ୍କୁ ଯୁବରାଜ୍ଞୀଙ୍କର ସମବୟସ୍କ ବାଳକ-ବାଳିକାଙ୍କୁ ନେଇ ପ୍ରାୟ ରାଜପ୍ରାସାଦକୁ ଯାଇ ତାଙ୍କୁ କ୍ରୀଡ଼ା ବିନୋଦରେ ପ୍ରଫୁଲ୍ଲ ରଖିବାକୁ ଆଦେଶ ଦେଇଥିଲେ । ମହାମାତ୍ୟ, ମହାସେନାପତି, ଧର୍ମସ୍ଥ ଆଦିଙ୍କର ପରିବାରରେ ମଧ୍ୟ ତଦନୁରୂପ ଅନୁରୋଧ କରିଥିଲେ । ସେ ସ୍ୱୟଂ ମଧ୍ୟ ବାରମ୍ବାର ଯୁବରାଜ୍ଞୀଙ୍କର ଦର୍ଶନ ନିମନ୍ତେ ଉପସ୍ଥିତ ହେଉଥିଲେ । ଆଚାର୍ଯ୍ୟଙ୍କର ଏ ବିଷୟରେ ସବୁଠାରୁ ଅଧିକ ବିଶ୍ୱାସ କର୍ମାନ୍ତାଧିଷ୍ଠାୟକ ସାମନ୍ତ ପ୍ରତାପ, ବୃଦ୍ଧା କଞ୍ଚୁକୀ ଉଦ୍ଧାଳ, ପ୍ରୌଢ଼ାଦାସୀ ବାପୀ ଏବଂ ଯୁବରାଜ୍ଞୀଙ୍କର ବିଶେଷ ଦାସୀ ହିତା ଉପରେ ଥିଲା । ଯୁବରାଜ୍ଞୀ ସଂଭ୍ରାନ୍ତ ପ୍ରୌଢ଼ ମହାସାମନ୍ତମାନଙ୍କର ରୁକ୍ଷ କୋଳଠାରୁ ହିତାର କୋମଳ ଓ ମାଂସଳ କୋଳରେ ଅଧିକ ସନ୍ତୋଷ ଲାଭ କରୁଥିଲେ । ତାଙ୍କୁ ମହାମାତ୍ୟ ଓ ମହାସେନାପତିଙ୍କର ସୁବାସିତ ଶ୍ମଶ୍ରୁ ଅପେକ୍ଷା କଞ୍ଚୁକୀ ଉଦ୍ଦାଳର ଚିରପରିଚିତ ଶ୍ମଶ୍ରୁ ଅଧିକ ସାନ୍ତ୍ୱନା ଦେଉଥିଲା ।

ରାଜପ୍ରାସାଦର କର୍ମାନ୍ତାଧିଷ୍ଠାୟକଙ୍କ ଆଦେଶରେ ହିତା ଯୁବରାଜ୍ଞୀଙ୍କୁ ବିଶ୍ୱାସ ଦେଇଥିଲା ଯେ ରାଜମାତା ତୀର୍ଥାଟନ କରୁଛନ୍ତି ଏବଂ ଅତି ଚଞ୍ଚଳ ଦେଶ

ବିଦେଶରୁ ଅତି ସୁନ୍ଦର ସୁନ୍ଦର କଣ୍ଢେଇ ଆଣି ସ୍ୱଦେଶକୁ ଲେଉଟିବେ । ଦାସଦାସୀମାନଙ୍କୁ ଧାରା ଓ ନୀମାଠାରୁ ରାଜମାତାଙ୍କର ରାଜ୍ୟକୁ ଧର୍ମ ଉଦ୍ଦେଶ୍ୟରେ ସମର୍ପିତ କରିଦେଇଥିବାର ସୂଚନା ମଧ୍ୟ ମିଳିଥିଲା । ରାଜମାତାଙ୍କର ତୀର୍ଥଯାତ୍ରା ଏବଂ ଧର୍ମାର୍ଥ ରାଜ୍ୟସମର୍ପଣ ସମ୍ବାଦକୁ ମିଶେଇ ଏଇଭଳି ଅନୁମାନ କରାଯାଉଥିଲା ଯେ ରାଜମାତା ବୈରାଗ୍ୟ ହେତୁ ରାଜ୍ୟ ତ୍ୟାଗ କରି ତପସ୍ୟା କରିବାକୁ ଯାଇଛନ୍ତି ।

ହିତା ଅମିତାକୁ ଭୁଲେଇ ରଖୁଥିଲା । ତାଙ୍କୁ ମାତାର ସ୍ମରଣ ନ ହେଉ ବୋଲି ସେ ସର୍ବଦା ଚେଷ୍ଟା କରୁଥିଲା, ତଥାପି ମଧ୍ୟ କେତେବେଳେ ହେଲେ ବାଳିକାକୁ ମାଆ କଥା ମନେ ପଡ଼ିବ ତ ? ସେତେବେଳେ ହିତା ଅମିତାକୁ ଭୁଲେଇବାରେ ସଫଳ ହୋଇ ମଧ୍ୟ ନିଜେ ଅଧୀର ହୋଇ ପଡୁଥିଲା । ରାଜମାତାଙ୍କର ରାଜ୍ୟତ୍ୟାଗ ଫଳରେ ସ୍ୱୟଂ ତା'ର ଭବିଷ୍ୟତ ବି ତ ଅନ୍ଧକାରମୟ ହୋଇ ଉଠିଥିଲା ।

ପରମ ମହିମାମୟୀ, ପରମ ଭଗବତୀ, ପରମ ଭଟ୍ଟାରିକା କଳିଙ୍ଗର ରାଜେଶ୍ୱରୀ ଅମିତାଙ୍କର ରାଜ୍ୟାଭିଷେକ ପ୍ରଜା ଓ ରାଜପୁରୁଷଙ୍କ ନିମନ୍ତେ ଆନନ୍ଦ, ଆହ୍ଲାଦ ଓ ଉତ୍ସବର ଅବସର ଥିଲା ମାତ୍ର ମହାମାତ୍ୟଙ୍କୁ ସେଥିରେ ପ୍ରତିପଦରେ ଚିନ୍ତା କରିବାକୁ ଏବଂ ନାନା ସମସ୍ୟାର ସମ୍ମୁଖୀନ ହେବାକୁ ପଡୁଥିଲା । ବାଳିକା ମହାରାଣୀଙ୍କୁ ରାଜ୍ୟସିଂହାସନ ଉପରେ ନିଶ୍ଚଳ ବସିରହିବା ଅପେକ୍ଷା ହିତାର ଆଙ୍ଗୁଠି ଧରି ନାଚିବା କୁଦିବା ବା ବଲ୍ଲୁ ପଛରେ ଉଦ୍ୟାନରେ ଦଉଡ଼ିବା ଅଧିକ ରୁଚିକର ମନେ ହେଉଥିଲା । ତାଙ୍କୁ କଳିଙ୍ଗର ରାଜରାଜେଶ୍ୱରୀ ହୋଇ ସିଂହାସନାରୂଢ଼ା ହେବାରେ କୌଣସି ପ୍ରକାର ସୁଖ କିମ୍ବା ବିନୋଦର ଅନୁଭବ ହେଉ ନ ଥିଲା ।

ଯେଉଁ ସମୟରେ ମହାରାଣୀ ଅମିତାଙ୍କର ରାଜ୍ୟାଭିଷେକ ବିଧି ଓ ଅନୁଷ୍ଠାନ ସଂପନ୍ନ ହେଉଥିଲା ସେତେବେଳେ ବାଳିକାସୁଲଭ ବିଚାରରେ ସେ ଭାବୁଥିଲେ ମହାମାତ୍ୟ, ମହାସେନାପତି, ରାଜଗୁରୁ ଓ ଅନ୍ୟାନ୍ୟ ଗୁରୁଜନମାନେ ତାଙ୍କୁ ସଜେଇ ଖେଳି ମନୋବିନୋଦ କରୁଛନ୍ତି ଯେପରି ସେ ନିଜେ ଆପଣାର ସଖୀମେଳରେ ତାଙ୍କର କଣ୍ଢେଇର ବିବାହ ଉତ୍ସବ ପାଳନ କରନ୍ତି । ତାହା ତାଙ୍କୁ ଭଲ ଲାଗିଲା ନାହିଁ । ସେ ଜିଦ୍ ଧରି ବସିଲେ ଯେ— 'ମୁଁ ରାଜେଶ୍ୱରୀ ହେବି ନାହିଁ, ହିତାକୁ ରାଜେଶ୍ୱରୀ କର ।'

ରାଜତିଳକୋତ୍ସବର ଆରମ୍ଭରେ ରାଜଗୁରୁ ଯୁବରାଜ୍ଞୀଙ୍କ ଶରୀର ଉପରେ ସପ୍ତନଦୀ ସପ୍ତସାଗରର ଜଳ ସିଞ୍ଚନ କଲେ । ଅମିତା ପ୍ରସନ୍ନ ହୋଇ ଉଚ୍ଚୈସ୍ୱରରେ ଆନନ୍ଦରେ ହସିବାକୁ ଲାଗିଲେ ଏବଂ ସ୍ୱୟଂ ସେହି ପବିତ୍ର ଜଳ ନେଇ ରାଜଗୁରୁ ତଥା

ଉପସ୍ଥିତ ଜନସମୁଦାୟ ଉପରେ ସିଞ୍ଚି ଖେଳିବାକୁ ଲାଗିଲେ । ରାଜତିଳକ ଓ ରାଜଦଣ୍ଡ ଧାରଣର ବିଧାନ ସେ ପର୍ଯ୍ୟନ୍ତ ପୂର୍ଣ୍ଣ ହୋଇ ନ ଥିଲା । ବାଳିକା ଗୋଟିଏ ସ୍ଥାନରେ ବସି ବସି ଥକି ଯାଇଥିଲେ ଯେଉଁଭଳି ସ୍ୱଚ୍ଛନ୍ଦ ପକ୍ଷୀ ପିଞ୍ଜରାବଦ୍ଧ ହୋଇଥାଏ । ବଳାତ୍ ସିଂହାସନ ଉପରେ ବସେଇ ଦିଆ ହୋଇଥିବା ହେତୁ ବ୍ୟାକୁଳ ହୋଇ ଅମିତା ସେଠାରୁ ପଳେଇଯିବାକୁ ଇଚ୍ଛା କରୁଥିଲେ ।

ମହାମାତ୍ୟ, ମହାସେନାପତି ଏବଂ ରାଜଗୁରୁ ସେ ରାଜେଶ୍ୱରୀ ହୋଇସାରିବା ପରେ ତାଙ୍କୁ ଅନେକ ଖେଳ ଖେଳିବାକୁ ମିଳିବ ବୋଲି ବୁଝେଇ ଦେଉଥାନ୍ତି । ସମସ୍ତେ ତାଙ୍କର କଥା ମାନିବେ ବୋଲି କହୁଥିଲେ ହେଁ ସେ ବାରମ୍ବାର ଦେହ ଝାଡ଼ି ପ୍ରତ୍ୟେକ କଥା ଅସ୍ୱୀକାର କରୁଥିଲେ ।

ହିତା ଅନୁମତି ନିମନ୍ତେ ଡରି ଡରି ମହାମାତ୍ୟଙ୍କୁ ଦେଖିଲା । ଆଗକୁ ବଢ଼ିଆସି ମହାରାଣୀଙ୍କ କାନରେ କହିଲା— 'ମହାରାଣୀ ମୋ କଥା ମାନିବେ ନାହିଁ ଯଦି ମୁଁ ମଧ୍ୟ ମହାରାଣୀଙ୍କ ସାଙ୍ଗରେ କଥା ହେବି ନାହିଁ ।'

ହିତା ସଂଭ୍ରାନ୍ତ ପୁରୁଷଙ୍କ ପାଇଁ ଅଞ୍ଚଳରେ ମୁହଁ ଲୁଚେଇ ଅମିତାଙ୍କୁ ତା' ଆଖିର ଲୁହ ଦେଖେଇଲା । ଅମିତା ତାକୁ କୁଣ୍ଢେଇ ପକେଇ କିଛି ସମୟ ପାଇଁ ସିଂହାସନରେ ବସିବାକୁ ରାଜି ହୋଇଗଲେ ।

ଅମିତା ସିଂହାସନରେ ବସିଗଲେ ସିନା, ମହାମାତ୍ୟ, ମହାସେନାପତି, ରାଜଗୁରୁ ପ୍ରଭୃତି ବୃଦ୍ଧମାନେ ତାଙ୍କୁ ଚାରିପଟୁ ଘେରି ରହିଥିବା ଆଦୌ ଭଲ ଲାଗିଲା ନାହିଁ । ଅମିତା ହିତାକୁ ସିଂହାସନ ପାଖରେ ବସିବାର ଆଗ୍ରହ କଲେ । ମହାମାତ୍ୟ ହିତାକୁ ମହାରାଣୀଙ୍କର ଚାମରଧାରିଣୀ ପଦ ପ୍ରଦାନ କରିବାକୁ ବାଧ୍ୟ ହେଲେ । ହିତା ସହସା ମହତ୍ତ୍ୱପୂର୍ଣ୍ଣ ଏବଂ ଅନୁପେକ୍ଷଣୀୟ ହୋଇଗଲା ।

ରତ୍ନଜଡ଼ିତ ସୁବର୍ଣ୍ଣ ମୁକୁଟ ପିନ୍ଧିବାକୁ ଆପତ୍ତି କରି ବାଳିକା ମହାରାଣୀ ମାଆଙ୍କୁ ଡାକି ଡାକି କାନ୍ଦିବାକୁ ଲାଗିଲେ । କୌଣସି ପ୍ରକାରେ ବୁଝେଇ ମୁକୁଟଟି ପିନ୍ଧେଇ ଦିଆହେଲା । ଭାର ହେତୁ ଅମିତା ଆଖିରୁ ଯାତନାର ଅଶ୍ରୁଧାର ବହିବାକୁ ଲାଗିଲା । ମହାମାତ୍ୟ ଯେଉଁ ବାଳିକା ମହାରାଣୀଙ୍କୁ ସ୍ୱାମିନୀ କହି, ଯାହା ଆଗରେ ନତଶିର ହୋଇ ସ୍ୱାମୀଭକ୍ତି ଏବଂ ଆଜ୍ଞାପାଳନ କରିବାକୁ ଶପଥ ଗ୍ରହଣ କରିଥିଲେ; ସେହି ମହାରାଣୀଙ୍କ ଆଖିରେ ଲୁହ ଦେଖି ତାଙ୍କୁ କୋଳେଇ ନେବାକୁ ବାଧ୍ୟ ହେଲେ ।

ମହାମାତ୍ୟ ବାଳିକା ମହାରାଣୀଙ୍କୁ ଆମୋଦିତ କରିବାକୁ ହସି ହସି ଗେଲ କଲେ— 'ପରମ ଭଗବତୀ ରାଜେଶ୍ୱରୀଙ୍କର ଆଖିକୁ ଲୁହ ଆସେ ନାହିଁ ।' ମନେ ମନେ ସେ ଭାବୁଥିଲେ— ଏହାହିଁ ରାଜନୀତିର ବାସ୍ତବିକତା । ଯେଉଁଭଳି ଉପାସକ ସ୍ୱୟଂ ଦେବତାର ପ୍ରତିଷ୍ଠାକରି ତାକୁ ସର୍ବଶକ୍ତିମାନ ବୋଲି ଧରିନିଏ !

ରାଜ୍ୟର୍ ଶାସନ ଓ ରାଜକାର୍ଯ୍ୟ ନିର୍ବାହର ବୋଝ ତ ତାଙ୍କରି ଉପରେ ନ୍ୟସ୍ତ ହୋଇ ରହିବ ! ମହାରାଣୀ କେବଳମାତ୍ର ଅବୋଧ ବାଳିକା ହୋଇଥିବା ହେତୁ ତାଙ୍କର କର୍ତ୍ତବ୍ୟ ମଧ୍ୟ ସ୍ୱାଭାବିକ ଠାରୁ ଅଧିକ ଗମ୍ଭୀର ହେବ । ମହାରାଣୀ ତ ରାଜପୁରୁଷମାନଙ୍କର ଶକ୍ତିର ମୁଦ୍ରାମାତ୍ର ! ବା ମହାମାତ୍ୟଙ୍କର ସ୍ମିତହାସ୍ୟର କାରଣ; ଏହା ମଧ୍ୟ ହୋଇପାରେ ଯେ ଯେଉଁ ରାଜ୍ୟ ଓ ସିଂହାସନର ଲୋଭରେ ଚଣ୍ଡ ଅଶୋକ ନିଜର ଅନେଶତ ଭାଇଙ୍କର ହତ୍ୟା କରିଥିଲେ, ରାଜପରିବାରର ଅପର ପାଞ୍ଚଶତ ସଦସ୍ୟଙ୍କୁ ରକ୍ତରେ ବୁଡ଼େଇ ଦେଇଥିଲେ ଏବଂ ଆହୁରି ଲକ୍ଷଲକ୍ଷଙ୍କର ସଂହାର କରିବାକୁ ଉଦ୍ୟତ, ସେହି ରାଜସିଂହାସନର ସୁଖ କ'ଣ ଏଇଆ ଯେ ଗୋଟାଏ ବାଳିକା ଦି' ଘଡ଼ି ବସିବା ପରେ ଥକିଗଲା ? ଏହା ବାଳିକାର ଅଜ୍ଞାନତା ନା ନିଷ୍ପାପ ହୃଦୟ !

ରାଜେଶ୍ୱରୀ ଅମିତାଙ୍କର ରାଜ୍ୟାଭିଷେକ ଅନୁଷ୍ଠାନ ଉପଲକ୍ଷରେ କଳିଙ୍ଗର ପ୍ରମୁଖ ନର୍ତ୍ତକୀଗଣ ରାଜସଭାରେ ମହାରାଣୀଙ୍କର ମଙ୍ଗଳ କାମନାରେ ନୃତ୍ୟ କରୁଥିଲେ । ମହାରାଣୀ ସିଂହାସନରେ ବସି ବସି ବିରକ୍ତ ହେବାକୁ ଲାଗିଲେ । ପ୍ରମୋଦ ବନକୁ ଯାଇ ପାଳିତ ଶ୍ୱାନ ବଭ୍ରୁ ଏବଂ କୁରଙ୍ଗ ଶାବକମାନଙ୍କ ସହିତ ଖେଳିବେ ବୋଲି ଜିଦ୍ କରି ବସିଲେ । ହିତା, ବାପୀ ଏବଂ ବୃଦ୍ଧ କଞ୍ଚୁକୀ ଉଦ୍ଦାଳ ମହାରାଣୀଙ୍କୁ ବୁଝେଇ ବସେଇ ରଖିଛନ୍ତି ବୋଲି ଆପଣା ଆସନରେ ବସିଥାଇ ମହାମାତ୍ୟ ଅନୁଭବ କରୁଥିଲେ । ସେ ତାଙ୍କର ଶ୍ୱେତ ଶ୍ମଶ୍ରୁରେ ଲୁଚିରହିଥିବା ସ୍ମିତହାସ୍ୟ ଖେଳାଇ ମନେ ମନେ ଭାବୁଥିଲେ ଏଣିକି କ'ଣ ରାଜ୍ୟର ସୁବ୍ୟବସ୍ଥା ନିମନ୍ତେ ମହାମାତ୍ୟ, ମହାସେନାପତି, ଧର୍ମସ୍ଥ ଆଦିଙ୍କ ଠାରୁ ହିତା, ବାପୀ ଏବଂ କଞ୍ଚୁକୀର ଭୂମିକା ଅଧିକ ମହତ୍ତ୍ୱପୂର୍ଣ୍ଣ ହେବ ?

ହିତାର ଚାତୁରୀ ହେତୁ ଅମିତାଙ୍କୁ ନୃତ୍ୟରତା ନର୍ତ୍ତକୀମାନଙ୍କର ନୂପୁରଧ୍ୱନିରେ ରସାନୁଭବ ହେବାକୁ ଲାଗିଲା । ମହାରାଣୀ ଅକସ୍ମାତ୍– 'ମୁଁ ମଧ୍ୟ ନାଚିବି' କହି ଉଠିଲେ ।

ସମୀପରେ ଆସନ ଗ୍ରହଣ କରିଥିବା ମହାମାତ୍ୟ ଧୀର ଗଳାରେ କହିଲେ– 'ପରମ ଭଗବତୀଙ୍କର ପ୍ରଜାମାନଙ୍କ ସମ୍ମୁଖରେ ନୃତ୍ୟ କରିବା ଉଚିତ ହେବ ନାହିଁ ।'

ମହାରାଣୀ ଆପଣାର ବାଳବୁଦ୍ଧିରେ ଯୁକ୍ତି କଲେ– 'ତେବେ ତାରା ଓ ରତ୍ନା ମୋ ଆଗରେ କାହିଁକି ନାଚୁଛନ୍ତି ! ମୁଁ ମଧ୍ୟ ନାଚିବି । ମୋର ମନ ହେଉଛି ।'

ମହାମାତ୍ୟ ଅମିତାଙ୍କୁ ନାଚିବାର ଅନୁମତି ଦେଲେ ନାହିଁ । ଫଳରେ ସେ ଅଧିକ ହଠପୂର୍ବକ 'ମୁଁ ମାଆଙ୍କ ପାଖକୁ ଯିବି' ବୋଲି କହିବାକୁ ଲାଗିଲେ ।

ରାଜନୀତିର ବିତର୍କରେ କେବେହେଲେ କ୍ଳାନ୍ତ ହେଉ ନ ଥିବା ମହାମାତ୍ୟ ସେହି ବାଳିକା ଆଗରେ ବାଧ ହୋଇ କହିଲେ–

'ନା ମହାରାଣୀ, ଆପଣ ନାଚିପାରିବେ ନାହିଁ !'

ଅମିତା ଯୁକ୍ତି କଲେ– 'ଆଚାର୍ଯ୍ୟକାକା, ଆପଣ ତ କହୁଥିଲେ ମୁଁ ସିଂହାସନ ଉପରେ ବସି ମୁକୁଟ ପିନ୍ଧି ରାଜେଶ୍ୱରୀ ହେବା ପରେ ସମସ୍ତେ ମୋର ଆଜ୍ଞା ପାଳନ କରିବେ । ତେବେ ମୋତେ ଆପଣ ନାଚିବାକୁ ମନା କରୁଛନ୍ତି କିପରି ? ଆପଣ ମୋର ଆଦେଶ ପାଳନ କରୁ ନାହାନ୍ତି କେଉଁପରି ?'

ସେହି କଠିନ ପରିସ୍ଥିତିରେ ବିବଶ ହୋଇ ମହାମାତ୍ୟ ସିଂହାସନ ପଛରେ ଚାମର ଧରି ଠିଆ ହୋଇଥିବା ହିତାକୁ ଦେଖିଲେ ।

ହିତା ମହାମାତ୍ୟଙ୍କର ସଂକେତ ବୁଝି ମୁଖ ଓ ନେତ୍ରରେ ଗାମ୍ଭୀର୍ଯ୍ୟ ଭରି ମହାରାଣୀଙ୍କ କାନରେ ଧୀରେ ଧୀରେ କହିଲା– ''ନାଚିଲେ ପିଲାଙ୍କ ପାଦ ମକଚି ହୋଇ ଯାଇପାରେ । ମହାରାଣୀଙ୍କର ସେପରି ହେଲେ ଦାସୀକୁ ଜେଜେମା, ରାଜମାତା ଓ ଦଣ୍ଡକ ଚାବୁକ ପ୍ରହାର କରି ଦଣ୍ଡ ଦେବ ।''

ଅମିତା ହିତା ଉପରେ ପ୍ରହାର ଆଶଙ୍କାରେ ଚିନ୍ତିତ ହୋଇ ରାଜସଭାରେ ନୃତ୍ୟ କରିବାର ହଠ ପରିତ୍ୟାଗ କଲେ ।

ରାଜେଶ୍ୱରୀଙ୍କର ରାଜ୍ୟାଭିଷେକ ଉପଲକ୍ଷରେ ରାଜ୍ୟର ଶ୍ରେଷ୍ଠୀ ବର୍ଗ ପ୍ରଜାମାନଙ୍କ ନିମନ୍ତେ ସ୍ଥାନେ ସ୍ଥାନେ ପାନାହାରର ମୁକ୍ତ-ଛତ୍ରର ବ୍ୟବସ୍ଥା କରିଥିଲେ । ରାଜମାତାଙ୍କର ମହାବଳି ଯଜ୍ଞ ନିଷେଧ କରିଦେବା ଫଳରେ ପ୍ରଜାଗଣ ତୃପ୍ତିର ଆଶା ହରେଇ କ୍ରୋଧରେ ଉଦ୍‌ଭ୍ରାନ୍ତ ହୋଇଥିଲେ । ପ୍ରଜା ରାଜେଶ୍ୱରୀ ଅମିତାଙ୍କ କୃପାରୁ ଏହି ସନ୍ତୋଷ ଲାଭକରି ବାଳିକା ମହାରାଣୀଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତିରେ ବିଭୋର ହୋଇଉଠିଲେ ।

ନଗରରେ ମହାରାଣୀଙ୍କର ଶୋଭାଯାତ୍ରାର ସମାରୋହରେ ବିପଣୀ, ବୀଥିକା, ରାଜପଥାଦିର ଉଭୟ ପାର୍ଶ୍ୱରେ ଏବଂ ପ୍ରତ୍ୟେକ ଭବନ, ଅଟ୍ଟାଳିକା ଓ ପ୍ରାସାଦମାନଙ୍କରେ ଚିତା ମୁରୁଜର ଆଲେଖ୍ୟ, ତୋରଣ ପୁଷ୍ପମାଲ୍ୟ, ଅଭିନନ୍ଦନ ଧ୍ୱଜ, ରେଶମୀ ଓ କାର୍ପାସ ବସ୍ତ୍ରାଦିରେ ସଜ୍ଜିକରଣ ହୋଇଥିଲା । ତୋରଣରେ କଳସ ନାରିକେଳ ସଜ୍ଜା ହୋଇ ପକ୍ୱ ଗୁବାକ ଝୁଲେଇ ଦିଆ ଯାଇଥିଲା । ପ୍ରତ୍ୟେକ ଦ୍ୱାରରେ କଦଳୀ ସ୍ତମ୍ଭ ଓ ଚିତା ଚିତ୍ରିତ କଳସ ରଖା ହୋଇଥିଲା । ଗୃହପାଳିତ ପଶୁମାନଙ୍କର ଶିଙ୍ଗ ତେଲ ଦ୍ୱାରା ଚମକେଇ ଦେଇ ହଳଦୀ ଓ ଗେରୁ ରଙ୍ଗରେ ଚିତ୍ରିତ କରାହୋଇଥିଲା । ପ୍ରତ୍ୟେକ କ୍ଷେତ୍ରରେ ଧୂପ ଗୁଗ୍ଗୁଳ ଓ ଅତରର ସୁବାସ ପରିପୂର୍ଣ୍ଣ ହୋଇ ରହିଥିଲା । ଶୋଭାଯାତ୍ରାର ମାର୍ଗର ଉଭୟ ପାର୍ଶ୍ୱରେ ଥିବା ଅଟ୍ଟାଳିକାମାନଙ୍କର ଗବାକ୍ଷ ଓ ଛାତମାନଙ୍କରେ କୁଳବଧୂ ଓ କୁଳନାରୀମାନେ ଅଗଣିତ ସଂଖ୍ୟାରେ

ସ୍ୱାଗତ କରିବାକୁ ସମବେତ ହୋଇଥିଲେ । ମାର୍ଗର କୌଣସି ବି ଭବନରେ ତିଳ ଧାରଣ ନିମନ୍ତେ ମଧ୍ୟ ସ୍ଥାନ ନ ଥିଲା ।

ମହାରାଣୀଙ୍କର ଶୋଭାଯାତ୍ରାର ପୁରୋଭାଗରେ ହାଦୋଳାରେ ସଜ୍ଜିତ ଓଟମାନଙ୍କ ଉପରେ ରାଜଧ୍ୱଜ ଧାରଣ କରି ରହିଥିବା ସୈନିକମାନେ ମହାରାଣୀଙ୍କର ଅବିରତ ଜୟଘୋଷ କରୁଥିଲେ । ସେମାନଙ୍କ ପଛରେ ଓଟମାନଙ୍କରେ ନରସିଂହା, ଭେରୀ, ନିଶାଣ, ଟମକ, ଝାଞ୍ଜ ଆଦି ବାଜୁଥାଏ । ସେମାନଙ୍କ ପଛରେ ବନ୍ଦୀ ଓ ଚାରଣବର୍ଗ କଳିଙ୍ଗର ପ୍ରତାପୀ ରାଜବଂଶର ବିରୁଦାବଳୀ ଗାନ କରୁଥିଲେ । ତାଙ୍କ ପଛରେ ଅନେକ ବଳଦଗାଡ଼ି ଉପରେ ସଜ୍ଜିତ ମଞ୍ଚମାନଙ୍କରେ କାପାଳିକମାନେ ପ୍ରଜାଙ୍କର ମନୋବିନୋଦ ନିମନ୍ତେ ବିଭିନ୍ନ କ୍ରୀଡ଼ାକୌଶଳ ପ୍ରଦର୍ଶନ କରି ଚାଲିଥିଲେ । ତାଙ୍କ ପଛରେ ଅନ୍ୟାନ୍ୟ ଶଗଡ଼ମାନଙ୍କ ଉପରେ ସଜ୍ଜିତ ମଞ୍ଚରେ ମଙ୍ଗଳମୁଖୀ ନର୍ତ୍ତକୀମାନେ ନୃତ୍ୟ କରୁଥିଲେ । ମଙ୍ଗଳମୁଖୀ ନର୍ତ୍ତକୀମାନଙ୍କ ପଛରେ ସୂର୍ଯ୍ୟକିରଣରେ ଝଟକୁଥିବା ବର୍ଚ୍ଛା ଧାରଣ କରି ରାଜପତାକା ସହ ଅଶ୍ୱାରୋହୀ ଯୂଥପଙ୍କର ଦଳ ଅନୁସରଣ କରିଚାଲିଥିଲା । ତା' ପଛରେ ସଶସ୍ତ୍ର ସେନାନାୟକଙ୍କୁ ଘେରି ସୁସଜ୍ଜିତ ହସ୍ତୀ-ପଂକ୍ତି ରହିଥିଲା ।

ସର୍ବପ୍ରଥମ ବିଶାଳ ହସ୍ତିନୀ ସୁନେଲୀ ଝାଲରରେ ସୁସଜ୍ଜିତ ହୋଇଥାଏ ଏବଂ ତା' ଉପରେ ସୁବର୍ଣ୍ଣ ଆହୁଦା ବନ୍ଧାହୋଇ ରହିଥାଏ । ସେହି ଆହୁଦାର ମଧ୍ୟଭାଗରେ ଦୁଇଜଣ ଶରୀରରକ୍ଷକ ସେନାପତି, ବୃଦ୍ଧ ଉଦ୍ଧାଳ ଏବଂ ଚାମରଧାରିଣୀ ହିତାର ସୁରକ୍ଷାରେ ରାଜେଶ୍ୱରୀ ଅମିତା ଥିଲେ । ମହାରାଣୀଙ୍କ ପଛରେ ହସ୍ତୀ ଆରୋହଣ କରି କ୍ରମଶଃ ମହାମାତ୍ୟ ଆଚାର୍ଯ୍ୟ ସୁକଣ୍ଠ, ମହାସେନାପତି ଆର୍ଯ୍ୟ ଭଦ୍ରକୀର୍ତ୍ତି, ରାଜଗୁରୁ, ଧର୍ମିଷ୍ଠ, କୋଷାଧ୍ୟକ୍ଷ, ରାଜସଖା ନଗରଶ୍ରେଷ୍ଠୀ ସୌମିତ୍ର ଏବଂ ରାଜପରିଷଦର ସଦସ୍ୟମାନେ ରହିଥିଲେ । ତା'ପରେ ରଥମାନଙ୍କରେ, ଶିବିକା ତଥା ଅଶ୍ୱାରୋହଣ କରି ରାଜସମ୍ମାନ ପ୍ରାପ୍ତ ବିଶିଷ୍ଟ ବ୍ୟକ୍ତିମାନେ ରହିଥିଲେ । କଳିଙ୍ଗ ରାଜେଶ୍ୱରୀଙ୍କର ବୈଭବ ପ୍ରଦର୍ଶନଦ୍ୱାରା ମହାମାତ୍ୟ ପ୍ରଜାମାନଙ୍କ ହୃଦୟରେ ତାଙ୍କର ଶକ୍ତି ଏବଂ ସାମର୍ଥ୍ୟ ପ୍ରତି ବିଶ୍ୱାସକୁ ସୁଦୃଢ଼ କରିବାକୁ ଚାହୁଁଥିଲେ ।

ଅସଂଖ୍ୟ କଣ୍ଠରୁ ମହାରାଣୀଙ୍କର ଜୟଘୋଷ ନିନାଦିତ ହେଉଥିଲା । ଭବନ, ଅଟ୍ଟାଳିକାମାନଙ୍କର ଛାତ ଉପରୁ ମହାରାଣୀଙ୍କ ଉପରେ ପୁଷ୍ପ, ପୁଷ୍ପମାଲ୍ୟ, ଅକ୍ଷତ ବୃଷ୍ଟି ଅବିରତ ହେଉଥାଏ । ମାର୍ଗର ଉଭୟ ପାର୍ଶ୍ୱରୁ ମଧ୍ୟ ପୁଷ୍ପ ଦୂର୍ବାକ୍ଷତ ବୃଷ୍ଟି ହେଉଥାଏ । ବାଳିକା ମହାରାଣୀଙ୍କ ପାଇଁ ଏହା ଏକ ରୋଚକ ବିନୋଦ ଥିଲା । ମହାରାଣୀଙ୍କର ଆହୁଦା ଫୁଲ ଓ ଫୁଲମାଳାରେ ଘୋଡ଼େଇ ହୋଇ ଯାଉଥାଏ । ଅମିତା ସେହି ସେହି ଫୁଲ ଓ ମାଳାକୁ ପ୍ରଜାଙ୍କ ଉପରକୁ ପକେଇ

ଚାଲିଥାନ୍ତି । ଯେଉଁ ଫୁଲ ତାଙ୍କୁ ଅଧିକ ଭଲ ଲାଗୁଥିଲା ତାକୁ କିଛି ସମୟ ଆପଣା ପାଖରେ ରଖି ନେଉଥାନ୍ତି ।

ଗୋଟାଏ ଭବନର ଛାତ ଉପରୁ ଏକ ଅତ୍ୟନ୍ତ ସୁନ୍ଦର ଫୁଲମାଳ ଆସି ଅମିତାଙ୍କର ଆହୁଦାରେ ପଡ଼ିଲା । ଅତି ପ୍ରସନ୍ନ ହେଲେ ଅମିତା ଏବଂ ତାକୁ ଉଠେଇ ନେଇ ଗଳାରେ ଲମ୍ବେଇ ନେଲେ ତଥା ବିନିମୟରେ ଆପଣା ଗଳାର ମୋତିମାଳ କାଢ଼ିଦେଲେ । ତା'ପରେ ବାଳିକା ମହାରାଣୀ ଫୁଲ ବଦଳରେ ପ୍ରଜାଙ୍କ ଉପରକୁ ମୋତି, ରତ୍ନମାଳା ଫିଙ୍ଗିବାକୁ ଲାଗିଲେ । ହିତା ବାରମ୍ବାର ଆକଟ କରୁଥାଏ । ହିତାର ଆକଟ କରୁଥିବା ସତ୍ତ୍ୱେ ମହାରାଣୀ ରତ୍ନାଭୂଷଣ ନିକ୍ଷେପ କରିବା ବନ୍ଦ କଲେ ନାହିଁ । ମହାରାଣୀଙ୍କର ଉଦାରତା ଓ ଦାନଶୀଳତା ଦେଖି ପ୍ରଜାଗଣ ଶ୍ରଦ୍ଧାବିଭୋର ହୋଇ ତୁମୁଳ ସ୍ୱରରେ ଜୟଜୟକାର କରିବାକୁ ଲାଗିଲେ ।

ପ୍ରଜାଙ୍କ ଜୟ ଜୟକାର ଧ୍ୱନିରେ ଅମିତାଙ୍କର ରତ୍ନ ନିକ୍ଷେପଣର ଉତ୍ସାହ ବଢ଼ି ଚାଲିଥିଲା । କିଛି ସମୟ ପରେ ମହାମାତ୍ୟଙ୍କର ହାତୀ ସହିତ ଚାଲିଥିବା କଞ୍ଚୁକୀ ମହାରାଣୀଙ୍କର ହସ୍ତିନୀ ପାଖକୁ ଆସି ହିତା ଓ ଉଦ୍ଧାଳକୁ ମହାରାଣୀଙ୍କୁ ରତ୍ନ ନିକ୍ଷେପ କରିବାରୁ ନିବୃତ୍ତ କରିବାକୁ ମହାମାତ୍ୟଙ୍କର ନିର୍ଦ୍ଦେଶ ଦେଲା । ଉଦ୍ଧାଳ ଓ ହିତା ବୁଝେଇବା ପରେ ମଧ୍ୟ ଅମିତା ହଠ ଛାଡ଼ିଲେ ନାହିଁ । 'ଆମ ଉପରକୁ ସେମାନେ ପୁଷ୍ପ ଅକ୍ଷତ ପକାଉଛନ୍ତି ।'

ହିତା ଓ ଉଦ୍ଧାଳ ବୁଝେଇଲେ— 'ପରମ ଭଗବତୀ, ପୁଷ୍ପ ଓ ଅକ୍ଷତ ଫିଙ୍ଗା ଯାଇପାରିବ । ମାତ୍ର ମଣିମୁକ୍ତା ନୁହଁ ।'

ଅମିତା ହଠ ନ ଛାଡ଼ି ଯୁକ୍ତି କଲେ— 'ନା,' ମଣିମୁକ୍ତା ଅପେକ୍ଷା ପୁଷ୍ପ ଅଧିକ ସୁନ୍ଦର ।' ତାପରେ ସେ ଗୋଟାଏ ଫୁଲକୁ ଆଘ୍ରାଣ କରି କହିଲେ, 'ଦେଖ ଏ ଫୁଲ କେତେ ସୁଗନ୍ଧିତ ଓ କୋମଳ । ମଣିମୁକ୍ତା ଗନ୍ଧହୀନ ଓ କଠୋର ।'

ଅମିତା ଦ୍ୱିଗୁଣିତ ଉତ୍ସାହରେ ମଣିମୁକ୍ତା ଫିଙ୍ଗି ଚାଲିଥିଲେ ଏବଂ ଅଧିକ କୃତାର୍ଥ ହୋଇ ପ୍ରଜା ଅଧିକରୁ ଅଧିକ ଜୟଘୋଷ କରୁଥିଲେ । ରାଜ୍ୟଧନର ଅପବ୍ୟୟ ହେଉଥିବା ଦେଖି ମହାମାତ୍ୟ ଚିନ୍ତିତ ହେଉଥିଲେ ହେଁ ମହାରାଣୀଙ୍କର ଦାନଶୀଳତା ହେତୁ ଯେଉଁ ଶ୍ରଦ୍ଧା ଉଛୁଳି ଆସୁଥିଲା ସେଥିରେ ମଧ୍ୟ ସେ ପରମ ସନ୍ତୋଷ ଲାଭ କରୁଥିଲେ ।

ମହାମାତ୍ୟଙ୍କର କଞ୍ଚୁକୀ ଆସି ସୂଚନା ଦେଲା ଯେ କୋଷାଧ୍ୟକ୍ଷ ଆର୍ଯ୍ୟ ଅଶ୍ୱୟ ରାଜ୍ୟଧନର ଅସଦୁପଯୋଗ ହେତୁ ଗଭୀର ଚିନ୍ତା ପ୍ରକାଶ କରୁଛନ୍ତି ।

ମହାମାତ୍ୟ ଉତ୍ତରସ୍ୱରୂପ ସନ୍ଦେଶ ଦେଲେ – 'ଏହା ରାଜ୍ୟ ଧନର ସଦୁପଯୋଗ । କଳିଙ୍ଗ ଉପରେ ମଗଧର ଆକ୍ରମଣର ପ୍ରତିରୋଧ କରିବାରେ ରାଜକୋଷରେ ପଡ଼ିରହିଥିବା ମଣିମୁକ୍ତା ରତ୍ନାଦି ସହାୟକ ହେବେ ନାହିଁ, ମାତ୍ର ମହାରାଣୀଙ୍କ ପ୍ରତି ପ୍ରଜାଙ୍କର ଶ୍ରଦ୍ଧା ପରମ ସହାୟକ ହେବ ।'

ମହାରାଣୀଙ୍କର ଦର୍ଶନ ଲାଭ କରିବାକୁ ରାଜପଥ ଲୋକାରଣ୍ୟ ହୋଇ ଉଠିଥିଲା । ମହାରାଣୀଙ୍କ ଦ୍ୱାରା ପ୍ରଜାଙ୍କ ମଧ୍ୟରେ ମଣି-ମୁକ୍ତା ବିତରଣ କରିବାର ଉଦାରତାର ସମାଚାର ବାୟୁ ପ୍ରବାହ ସହିତ ବ୍ୟାପିଯାଉଥିବା ସୁଗନ୍ଧ ଭଳି ଅତି ଚଞ୍ଚଳ ସାରା ନଗରରେ ଖେଳିଗଲା । ରାଜପଥରେ ଜନସମାଗମ ଏତେ ପ୍ରବଳ ହେଲା ଯେ ଶୋଭାଯାତ୍ରାର ଗତି ଆପେ ମନ୍ଥର ହୋଇଗଲା । ମହାରାଣୀଙ୍କର ଆହୁଦା ଉପରେ ବସିବା ଗୋଟାଏ ପ୍ରହରରୁ ଅଧିକ ହୋଇସାରିଥିଲା । ବସିବସି ପୀଡ଼ାରେ ବାଳିକାର ପ୍ରତି ଅଙ୍ଗ ବ୍ୟଥିତ ହେଉଥିଲା । ସେ ବାରମ୍ବାର ହିତା ଓ କଞ୍ଚୁକୀକୁ ତାଙ୍କୁ ତଳକୁ ଓହ୍ଲେଇ ଦିଅ ବୋଲି ଇଚ୍ଛା ପ୍ରକାଶ କରୁଥାନ୍ତି ।

କଞ୍ଚୁକୀ ଓ ହିତା ଯେ କୌଣସି ମତେ ବାଳିକା ମହାରାଣୀଙ୍କୁ ଭୁଲେଇ ଆହୁଦା ଉପରେ ବସେଇ ରଖିଥାନ୍ତି । ଗୋଟାଏ ଅଟ୍ଟାଳିକାର ଛାତଉପରୁ ଅର୍ଦ୍ଧପ୍ରସ୍ଫୁଟିତ ନୀଳକମଳଟିଏ ମହାରାଣୀଙ୍କର ଆହୁଦା ଉପରେ ପଡ଼ିଲା । ଆହୁଦାଟି ଫୁଲରେ ଭରିରହିଥିବା ହେତୁ ଆହୁଦା ଉପରୁ ଫୁଲଟି ରାଜପଥ ଉପରକୁ ଖସିପଡ଼ିଲା । ମହାରାଣୀ ତାକୁ ଧରି ରଖିପାରିଲେ ନାହିଁ ।

ଅମିତା ଡାକି କହିଲେ – 'ହାତୁଣୀକୁ ରଖ, ମୁଁ ଫୁଲ ନେବି ।'

ହିତା ଓ କଞ୍ଚୁକୀ ଅମିତାକୁ ଅନେକ ବୁଝେଇଲେ ଯେ ଏହାଠାରୁ ଅଧିକ ସୁନ୍ଦର ସହସ୍ର ଫୁଲ ମହାରାଣୀଙ୍କ ନିମନ୍ତେ ରାଜପ୍ରାସାଦରେ ଅଛି । ମାତ୍ର ତାଙ୍କର ବାଳିକାମନ ଆଦୌ ମାନିଲା ନାଇଁ । ଅନୁରୋଧ ନ ରଖିବା ହେତୁ ଅମିତା କ୍ରୋଧରେ ହିତାକୁ ପ୍ରହାର କରିବା ସହିତ ନିଜେ କାନ୍ଦିବାକୁ ଲାଗିଲେ ।

ମହାମାତ୍ୟ ଅବ୍ୟବସ୍ଥା ଦେଖି କଞ୍ଚୁକୀ ଓ ହିତାକୁ କ୍ରୁଦ୍ଧ ଦୃଷ୍ଟିରେ ଦେଖିଲେ । କଞ୍ଚୁକୀ ଅଭୟଦାନ ମାଗି ଉତ୍ତର ଦେଲା – 'ବାଳିକା ମହାରାଣୀ ତିନିଘଡ଼ିରୁ ଅଧିକ ସମୟ ହେଲା ଆହୁଦା ଉପରେ ବସି ରହିଛନ୍ତି । ତାଙ୍କର କୋମଳ ଅଙ୍ଗ ଓ ବାଳ ପ୍ରବୃତି ପାଇଁ ଏହା ଏକ ବିକଟ ଯାତନା । ତାଙ୍କର ଶରୀର ଅବଶ ହେଉଛି । ଆଉ ସହନ କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ।'

ମହାମାତ୍ୟ ମଧ୍ୟ ସେତେବେଳେ ଧରି ବସି ରହିଥିବା ହେତୁ କ୍ଳାନ୍ତି ଅନୁଭବ କରୁଥିଲେ ମାତ୍ର କର୍ତ୍ତବ୍ୟ ସମ୍ପାଦନ କରିବା ଆବଶ୍ୟକ ଥିଲା । ବାଳିକା ତ

ସେ କଥା ହୃଦୟଙ୍ଗମ କରିପାରିବ ନାହିଁ । ମହାରାଣୀଙ୍କର ପ୍ରଜାଙ୍କ ଆଗରେ କାନ୍ଦିବା ଅଶୁଭ, ଅଶକୁନ ଓ ରାଜ୍ୟ ଶକ୍ତିର ଅପମାନ ହୋଇଥାନ୍ତା ।

ମହାମାତ୍ୟ ମହାସେନାପତିଙ୍କର ସମ୍ମତି ନେଲେ । ଉଭୟେ ସ୍ୱୀକାର କଲେ – 'ରାଜ ହଠ, ବାଳ ହଠ ଏବଂ ସ୍ତ୍ରୀ ହଠ ଏମାନଙ୍କ ମଧ୍ୟରୁ କୌଣସି ଗୋଟାଏର ବି ଉପାୟ କରିବା କଠିନ । ଏଠାରେ ତିନୋଟି ହଠ ବିଦ୍ୟମାନ ହୋଇ ରହିଥିଲା । ପ୍ରଜାଙ୍କ ଆଗରେ ମହାରାଣୀଙ୍କର କାନ୍ଦିବା ଅପେକ୍ଷା ତାଙ୍କୁ କ୍ରୀଡ଼ାରେ ପଥ ଉପରକୁ ଆସି ଫୁଲ ନେଇ ନେବାକୁ ବ୍ୟବସ୍ଥା କରିଦେବା ଉଚିତ ।

ମହାମାତ୍ୟଙ୍କର ଅନୁମତିକ୍ରମେ ମହାରାଣୀଙ୍କର ହାତୁଣୀକୁ ନୁଆଁଇ ଦିଆଗଲା । କଞ୍ଚୁକୀ ଓ ହିତା ଓହ୍ଲେଇ ଗଲେ । ମହାମାତ୍ୟ, ମହାସେନାପତି, ରାଜ୍ୟପରିଷଦର ସଦସ୍ୟ ତଥା ଶୋଭାଯାତ୍ରାରେ ସବାରି ଉପରେ ଯାଉଥିବା ସମସ୍ତେ ମହାରାଣୀଙ୍କ ଆଦରରେ ତୁରନ୍ତ ସବାରିମାନଙ୍କରୁ ଓହ୍ଲେଇ ପଡ଼ିଲେ । କଞ୍ଚୁକୀ ମହାରାଣୀଙ୍କୁ ହାତୀରୁ ଓହ୍ଲେଇ ଆଣିଲା ।

ମହାରାଣୀଙ୍କୁ ଆପଣା ଗହଣରେ ପାଇ ପ୍ରଜାଗଣ ଅଧିକ ଉଲ୍ଲାସରେ ଜୟଧ୍ୱନି କରିବାକୁ ଲାଗିଲେ । ମହାରାଣୀଙ୍କ ନିମନ୍ତେ ସ୍ଥାନ ଦେବାକୁ ସଶସ୍ତ୍ର ରାଜପୁରୁଷମାନେ ପ୍ରଜାମାନଙ୍କୁ ଶୃଙ୍ଖଳିତ କରିନେଲେ । ପ୍ରଜାଙ୍କୁ ଘୁଞ୍ଚେଇ ନେବା ପରେ ମଧ ସେମାନେ ମହାରାଣୀଙ୍କର ବାଳରୂପ ଅତି ପାଖରୁ ଦେଖି ଗଦ୍‌ଗଦ୍ ହୋଇ ଭୂମିସ୍ପର୍ଶ କରି ପ୍ରଣାମ କରିବାକୁ ଲାଗିଲେ ।

ମହାରାଣୀ କ୍ରୀଡ଼ା ଓ ବିନୋଦରେ ପଡ଼ି ଯାଇଥିବା ଫୁଲଟିକୁ ଖୋଜୁଥିଲେ । ରାଜପଥ ଅସଂଖ୍ୟ ପଦମଥିତ ପୁଷ୍ପ ହେତୁ କର୍ଦ୍ଦମାକ୍ତ ହୋଇ ଉଠିଥିଲା । ପ୍ରଜାଗଣ ମହାରାଣୀଙ୍କୁ ସୁନ୍ଦର ସୁନ୍ଦର ପୁଷ୍ପ ଉପହାର ଦେଉଥିଲେ, ମାତ୍ର ଅମିତା ଆହୁଦା ଉପରୁ ଖସି ଆସିଥିବା ସେଇ ନୀଳ କମଳଟିକୁ ହିଁ ଖୋଜୁଥିଲେ । ପ୍ରଜା ମହାରାଣୀଙ୍କର ଏହି ସରଳ ଭାବ ହେତୁ ଅତ୍ୟଧିକ ଶ୍ରଦ୍ଧାଶୀଳ ହୋଇ ଉଠୁଥିଲେ ।

ହଜି ଯାଇଥିବା ନୀଳକମଳ ଖୋଜୁଥିବା ବେଳେ ଭିଡ଼ ଭିତରେ ଦୁଇଜଣ ସମବୟସ୍କ ବାଳକଙ୍କ ଉପରେ ଦୃଷ୍ଟି ପଡ଼ିବାରୁ ସେ ସେମାନଙ୍କୁ ଆସ ଆସ ବୋଲି ଡାକି ଡାକି ସେମାନଙ୍କ ଆଡ଼କୁ ବଢ଼ିଗଲେ ।

ବାଳକ ଦୁଇଜଣ ଚିରାଦଦରା ଲୁଗା ପିନ୍ଧିଥିଲେ । ସେମାନେ ମହାରାଣୀଙ୍କର ସ୍ୱର୍ଣ୍ଣଖଚିତ ବସ୍ତ୍ର ଓ ରତ୍ନଜଡ଼ିତ ମୁକୁଟର ତେଜରେ ଆତଙ୍କିତ ହୋଇ ପଛକୁ ଘୁଞ୍ଚିବାକୁ ଲାଗିଲେ ।

ମହାରାଣୀ ବାଳକମାନଙ୍କୁ ଆଶ୍ୱାସନା ଦେଲା ଭଳି ସ୍ୱରରେ ଡାକିଲେ– 'ଆସ, ମୋ ସାଙ୍ଗରେ ଖେଳିବ ଆସ ! ଡରୁଛ କାହିଁକି ? ମୁଁ କାହାଠାରୁ ଛଡ଼େଇ ନିଏ ନାହିଁ, କାହାକୁ ଡରାଏ ନାହିଁ, କାହାକୁ ମାରେ ନାହିଁ ।'

ପ୍ରଜାଗଣ ମହାରାଣୀଙ୍କର କଥାରେ ଆହୁରି ଗଦଗଦ ହୋଇ ଅଧିକ ଉଚ୍ଚୈସ୍ୱରରେ ଜୟଜୟକାର ଧ୍ୱନି କରିବାକୁ ଲାଗିଲେ । ଭୟଭୀତ ବାଳକମାନଙ୍କୁ ସାନ୍ତ୍ୱନା ଦେଇ ମହାରାଣୀଙ୍କ ନିକଟକୁ ଅଣାଗଲା । କିଛି କ୍ଷଣ ଭିତରେ ଜନସମୁଦ୍ରରୁ ବହୁବାଳକ ବାହାରିଆସି ମହାରାଣୀଙ୍କୁ ଘେରିଗଲେ ।

ଅମିତାଙ୍କୁ ଏହା ପୂର୍ବରୁ ଏଭଳି ଅବସ୍ଥାରେ ଏକା ସାଙ୍ଗରେ ଏତେ ବାଳକଙ୍କୁ ଦେଖିବାର ଅବସର ମିଳି ନ ଥିଲା । ସେ ବିସ୍ମିତ ହେଉଥିଲେ ଏବଂ ବାଳକମାନେ ତାଙ୍କର ବସ୍ତ୍ର ଆଭୂଷଣ ଦେଖି ସ୍ତବ୍ଧ ହୋଇ ଯାଉଥିଲେ । ତାଙ୍କର ବସ୍ତ୍ର-ଆଭୂଷଣ ପ୍ରତି ବାଳକମାନଙ୍କର ଲାଳାୟିତ ନେତ୍ର ଦେଖି ଅମିତା ପଚାରିଲେ– 'ତମମାନଙ୍କୁ ଏଭଳି ବସ୍ତ୍ର ଭଲ ଲାଗୁଛି ? ତମେମାନେ ଏଭଳି କାହିଁକି ପିନ୍ଧୁ ନାହଁ ?'

ଗୋଟାଏ ବାଳକ ସାହସ କରି କହିଲା– 'ଆମକୁ ଏଭଳି ବସ୍ତ୍ର କିଏ ଦେବ ?'

ଅମିତା ସାମାନ୍ୟ ଚିନ୍ତାକରି କହିଲେ– 'ବସ୍ତ୍ର, ମାତା ଦେବେ । ସମସ୍ତଙ୍କୁ ଦେବେ ।'

ମହାମାତ୍ୟ ମହାରାଣୀଙ୍କ କଥାର ଅବସର ଅନୁକୂଳ ବ୍ୟାଖ୍ୟା କଲେ– 'ପରମ ଭଗବତୀ ମହାରାଣୀ ପ୍ରଜାମାନଙ୍କୁ ଆଶ୍ୱାସନା ଦେଉଛନ୍ତି ଯେ, ସେ ସମସ୍ତ ପ୍ରଜାଙ୍କର ମାତା ଏବଂ ସେ ତାଙ୍କର ଉଚିତ ପ୍ରତିପାଳନ କରିବେ ।'

ଚତୁର୍ଦ୍ଦିଗରୁ ଜୟଘୋଷ ନିନାଦିତ ହେଲା ।

ଅମିତା ଆପଣାର ବସ୍ତ୍ରାଭୂଷଣ ଖୋଲି ଦରିଦ୍ର ବାଳକଙ୍କ ମଧ୍ୟରେ ବିତରଣ କରିବାକୁ ଲାଗିଲେ । ଆନନ୍ଦ ବିହ୍ୱଳ ଜନସାଧାରଣଙ୍କ ଜୟନାଦରେ ରାଜପଥର ଉଭୟ ପାର୍ଶ୍ୱସ୍ଥ ଅଟ୍ଟାଳିକାମାନେ ଥରିଉଠିଲେ । 'ଜୟ ! ଜୟ ପ୍ରଜାବତ୍ସଳ ଧର୍ମାବତାର ବାଳ ମହାରାଣୀଙ୍କର ଜୟ !'

ପ୍ରଜାଗଣ ମନେକରୁଥିଲେ ସତକୁ ସତ ପ୍ରଜାଙ୍କର ରକ୍ଷା ଓ କଳିଙ୍ଗର ମଙ୍ଗଳ ବିଧାନ ନିମନ୍ତେ ସମସ୍ତ ସୃଷ୍ଟିର ପାଳନ କର୍ତ୍ତ୍ରୀ, ଆଦିଶକ୍ତି ମାତା ବାଳିକା ରୂପରେ କଳିଙ୍ଗର ରାଜସିଂହାସନରେ ଆସି ବିରାଜମାନ କରିଛନ୍ତି । ସେତେବେଳକୁ ଅମିତା ନୀଳକମଳ କଥା ଭୁଲି ଯାଇଥିଲେ । ସେ ତାଙ୍କୁ ଘେରି ରହିଥିବା ବାଳକବାଳିକାଙ୍କ ସାଙ୍ଗରେ ଦୋଳି ଓ ଖେଳନା ବିଷୟରେ କଥା ହେବାକୁ ଲାଗିଲେ ।

ମହାମାତ୍ୟଙ୍କର ସଂକେତରେ କଞ୍ଚୁକୀ ଓ ହିତା ମହାରାଣୀଙ୍କୁ ରାଜଭବନକୁ ଫେରିଯିବା ପାଇଁ ଅନୁରୋଧ କଲେ ।

ଅମିତା ବାଳମଣ୍ଡଳୀ ପ୍ରତି ସଂକେତ କରି କହିଲେ 'ଏମାନଙ୍କୁ ମଧ୍ୟ ରାଜପ୍ରାସାଦକୁ ନେଇଯିବା । ଆମେ ଏମାନଙ୍କ ସହିତ ଖେଳିବୁ ।'

ଅମିତାଙ୍କୁ ଏହା ଉଚିତ ନୁହେଁ ବୋଲି ବୁଝେଇ ଦିଆଗଲା । ଉଚିତ ଅନୁଚିତର ତର୍କରୁ ଅମିତାଙ୍କର ସମାଧାନ ହେଲା ନାହିଁ । ହିତା ବିବଶତା ପ୍ରକାଶିତ କରି କହିଲା – 'ମହାରାଣୀ, ହସ୍ତିନୀ ଲକ୍ଷ୍ମୀ ମହାରାଣୀଙ୍କ ବ୍ୟତୀତ ଆଉ ଅନ୍ୟ କାହାକୁ ପିଠିରେ ବସେଇ ନେଇପାରିବ ନାହିଁ ।'

ଅମିତା ସର୍ବଦା ହିତାର କଥା ଉପରେ ବିଶ୍ୱାସ କରୁଥିଲେ । କିନ୍ତୁ ସେତେବେଳେ ବାଳକମାନଙ୍କର ଆନ୍ତରିକ ସଖ୍ୟର ଆତୁରତାରେ ହିତାର କଥାରେ ବିଶ୍ୱାସ କରିପାରିଲେ ନାହିଁ । ସ୍ୱୟଂ ହସ୍ତିନୀର ପାଖକୁ ଆସି ପଚାରିଲେ – 'ଲକ୍ଷ୍ମୀ, ତୁ ମୋର ବାଳସଖାଙ୍କୁ ତୋ ପିଠିରେ ବସେଇବୁ ନାଇଁ !'

ଲକ୍ଷ୍ମୀ ତାର ଶୁଣ୍ଢ ଉଠେଇ ଓ ନୁଆଁଇ ସମ୍ମତି ପ୍ରକାଶ କଲା ।

ଅମିତା ଆନନ୍ଦରେ ନାଚିଉଠିଲେ, ତାଳିମାରି କହିଲେ – 'ଲକ୍ଷ୍ମୀ ସମସ୍ତଙ୍କୁ ବସେଇବ ।' ତା'ପରେ ସେ ହଠ କରି ବସିଲେ ଯେ ପିଲାଗୁଡ଼ିକ ବସିବା ପରେ ହିଁ ସେ ବସିବେ ।

ଯେତେ ବାଳକଙ୍କ ପାଇଁ ହାତୁଣୀ ଉପରେ ବସିବାର ସ୍ଥାନ ହୋଇପାରିଲା ସେମାନେ ବସିଲେ ମାତ୍ର କ୍ରମଶଃ ବାଳକ ବାଳିକାଙ୍କର ସଂଖ୍ୟା ମଧ୍ୟ ବଢ଼ିବାକୁ ଲାଗିଲା । ଅମିତାଙ୍କର ଜିଦ୍ ଲାଗି ମହାମାତ୍ୟ, ମହାସେନାପତି ଓ ଅନ୍ୟାନ୍ୟ ପାର୍ଷଦଙ୍କର ହସ୍ତୀ ଏପରିକି ରଥ ଏବଂ ପାଲିଙ୍କିମାନଙ୍କ ଉପରେ ବି ପିଲାମାନଙ୍କୁ ବସାଗଲା । ତାପରେ ଯାଇଁ ମହାରାଣୀ ଆପଣା ଆହୁଦାରେ ଆରୋହଣ କଲେ ।

ମହାମାତ୍ୟଙ୍କ ଆଦେଶରେ ଏହି ଶୋଭାଯାତ୍ରା ନଗରର ଅନ୍ୟାନ୍ୟ ପଥରେ ନ ଯାଇ ରାଜପ୍ରାସାଦକୁ ପ୍ରତ୍ୟାବର୍ତ୍ତନ କଲା । ଶୋଭାଯାତ୍ରାର ଏଭଳି ଅସ୍ୱାଭାବିକ ବିଘ୍ନ ହେତୁ ରାଜଗୁରୁ, ଧର୍ମସ୍ଥ, କୋଷାଧ୍ୟକ୍ଷ, ଶ୍ରେଷ୍ଠୀ ସୌମିତ୍ର ଆଦି ମହାମାତ୍ୟଙ୍କ ଆଗରେ ଚିନ୍ତା ପ୍ରକାଶ କଲେ ।

ମହାମାତ୍ୟ ସେମାନଙ୍କୁ ସାନ୍ତ୍ୱନା ଦେଲେ । 'ଆପଣମାନେ ଚିନ୍ତା କରନ୍ତୁ ନାହିଁ । ଦେବଗଣ କଳିଙ୍ଗ ପ୍ରତି କୃପାଳୁ ହୋଇଛନ୍ତି । ଦେବତାମାନଙ୍କର ଇଚ୍ଛା ବିଧାନ ହେତୁ ହିଁ ଏଭଳି ଅସାଧାରଣ ଘଟଣା ସବୁ ଘଟୁଛି ।' ସେ ମନେ ମନେ ଦେବକୃପା ଲାଗି କୃତଜ୍ଞତାରେ ପ୍ରଣାମ କଲେ । ପ୍ରଜାମାନେ ଏହା ପୂର୍ବରୁ

କେବେହେଲେ ରାଜସତ୍ତା ପ୍ରତି ଏତେ ପରିମାଣରେ ଶ୍ରଦ୍ଧା ପ୍ରଦର୍ଶନ କରି ନ ଥିଲେ । ସ୍ନେହ ଓ ମମତ୍ୱର ଅନୁଭବ କରି ନ ଥିଲେ ।

× × × × ×

ମହାମହିମାମୟୀ କଳିଙ୍ଗ ରାଜେଶ୍ୱରୀ ଅମିତାଙ୍କର ପ୍ରତାପ ଏବଂ ମହାମାତ୍ୟ ଆଚାର୍ଯ୍ୟ ସୁକଣ୍ଠଙ୍କର ଆୟୋଜନ ଫଳରେ ରାଜ୍ୟ ଓ ନଗରର ପ୍ରଜାମାନଙ୍କ ନିମନ୍ତେ ପ୍ରତ୍ୟେକ ଦିନ ସମାରୋହ ଓ ପ୍ରତ୍ୟେକ ରାତ୍ରି ଉତ୍ସବରାତ୍ରିରେ ପରିଣତ ହେବାକୁ ଲାଗିଲା । ପ୍ରଜା ଜାଣିପାରିଲେ ନାହିଁ ଯେ କେତେବେଳେ ମହାରାଣୀଙ୍କର ରାଜ୍ୟାଭିଷେକ ଉତ୍ସବ ସମାପ୍ତ ହେଲା ଏବଂ କେତେବେଳେ ଚଣ୍ଡ ଅଶୋକଙ୍କୁ ପ୍ରତିରୋଧ କରିବାଲାଗି 'ବିଜୟ ଅଭିଯାନ'ର ସମାରୋହ ଆରମ୍ଭ ହେଲା । ରାଜପଥ ଏବଂ ବୀଥୀମାନଙ୍କରେ ରାଜତିଳକ ସମାରୋହ ପାଇଁ ସଜ୍ଜିତ ଚୂତପତ୍ର ତୋରଣ ଶୁଖିବା ପୂର୍ବରୁ ବିଜୟ ଅଭିଯାନ ସମାରୋହର ଧ୍ୱଜା ସ୍ଥାନେ ସ୍ଥାନେ ଫରଫର ହେଲା ଏବଂ ନିଶାଣ, ଭେରୀ, ନରସିଂହା ନିନାଦିତ ହେବାକୁ ଲାଗିଲେ ।

ମହାମାତ୍ୟ ପ୍ରଜାମାନଙ୍କର ଉତ୍ସାହରେ ବିରାମ ନ ଦେଇ ଶତ୍ରୁର ଆତଙ୍କ ଓ ତ୍ରାସ ଅନୁଭବ କରିବାର ଅବସର ପ୍ରଜାମାନଙ୍କୁ ନ ଦେବାକୁ ଇଚ୍ଛା କରୁଥିଲେ । ବାସ୍ତବ ସ୍ଥିତିର ଜ୍ଞାନ କେବଳ ମାତ୍ର ମହାମାତ୍ୟ, ମହାସେନାପତି ଓ ରାଜ୍ୟ ପରିଷଦର ଥିଲା । ଦୁଇମାସ ପୂର୍ବେ ହିଁ ସେନାପତି ସାମନ୍ତ ସୁବନ୍ଧୁ ଓ ସାମନ୍ତ ଦୁର୍ଜୟ ସେନା ନେଇ ଚଣ୍ଡ ଅଶୋକଙ୍କୁ ରାଜ୍ୟର ସୀମାରେ ହିଁ ଅବରୋଧ କରିନେବା ଉଦ୍ଦେଶ୍ୟରେ ପ୍ରସ୍ଥାନ କରି ସାରିଥିଲେ । ଦୂତମାନେ ପ୍ରତିଦିନ ସମାଚାର ନେଇ ଆସୁଥିଲେ । କଳିଙ୍ଗର ଏହି ସେନାପତିମାନଙ୍କୁ ଶତ୍ରୁପକ୍ଷର ଅପରିମିତ ବଳର ଚାପରେ ପଛଘୁଞ୍ଚା ଦେବାକୁ ପଡୁଥିଲା ।

ମହାସେନାପତି ରାଜ୍ୟାଭିଷେକ ଅନୁଷ୍ଠାନ ସମ୍ପନ୍ନ ହେବା ପରେ ପରେ ବିଶାଳ ସୈନ୍ୟଦଳ ନେଇ ସୀମାନ୍ତ ପ୍ରଦେଶକୁ ପ୍ରସ୍ଥାନ କରିଥିଲେ । ଆତ୍ମରକ୍ଷା ନିମନ୍ତେ ଯୁଦ୍ଧ ପ୍ରସ୍ତୁତିର ଯେଉଁ ଉତ୍ସାହ ରାଜଧାନୀରେ ଥିଲା ତାହା ମଗଧ ବିଜୟ ଅଭିଯାନ ଭଳି ମନେ ହେଉଥିଲା । ଯୁଦ୍ଧଯାତ୍ରା ନିମନ୍ତେ ନଗରର ଚତୁଷ୍ପଥମାନଙ୍କରେ ପ୍ରଜାମାନଙ୍କୁ ନିଃଶୁଳ୍କ ଭୋଜନ, ବସ୍ତ୍ର ଓ ଅସ୍ତ୍ରଶସ୍ତ୍ର ବିତରିତ ହେଉଥିଲା । ନଗର ଓ ରାଜ୍ୟରେ ଦୁନ୍ଦୁଭି ନାଦ କରି ମଝିରେ ମଝିରେ ଘୋଷଣା ହେଉଥିଲା –

'ପରମ ଭଗବତୀ ମହାରାଣୀଙ୍କର ଜୟ ହେଉ । ପ୍ରଜା ଓ ପୌରଜନ ସାବଧାନ ହୋଇ ଶୁଣନ୍ତୁ ! ଧର୍ମ ଓ ରାଜ୍ୟର ରକ୍ଷାପାଇଁ ତଥା ଦେବାଳୟମାନଙ୍କର ସମୁଚିତ ବ୍ୟବସ୍ଥା ହେତୁ ବାଳକ-ବୃଦ୍ଧ, ରୋଗୀ, ସ୍ତ୍ରୀ ଏବଂ ସନ୍ୟାସୀମାନଙ୍କ ବ୍ୟତୀତ ସମସ୍ତ ସବର୍ଣ୍ଣ, ଧନୀ-ଦରିଦ୍ର କଳିଙ୍ଗର ମହାରାଣୀଙ୍କ ନିମନ୍ତେ ଶସ୍ତ୍ରଧାରଣ କରନ୍ତୁ ।

ସବୁ ଧନୀ ଆପଣାର ଅନ୍ନର ଏକ ତୃତୀୟାଂଶ ଭାଗ ଏବଂ ମହାଧନୀ ଗଚ୍ଛିତ ସୁବର୍ଣ୍ଣର ଦଶ କିମ୍ବା ଆଠଭାଗ ସ୍ୱେଚ୍ଛାରେ ରାଜ୍ୟାଧୀନ କରନ୍ତୁ । ଯେଉଁ ଋଣୀ ଏବଂ ଦାସ ସ୍ୱେଚ୍ଛାରେ ଶସ୍ତ୍ରଧାରଣ କରି ସୈନିକ ହେବେ ସେମାନେ ଋଣ ଏବଂ ଦାସତ୍ୱ ମୁକ୍ତ ହେବେ । ...' କଳିଙ୍ଗର ପ୍ରଜା ମହାରାଣୀଙ୍କୁ ମହାଶକ୍ତିଙ୍କର ବାଳିକା ଅବତାର ମନେକରି କଳିଙ୍ଗ ରାଜେଶ୍ୱରୀଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତିରେ ଯୁଦ୍ଧ ଘୋଷ କରି, ନିଶାଣ, ଭେରୀ, ଝାଞ୍ଜ ବଜେଇ ନାଚିନାଚି ଉନ୍ମତ୍ତ ପ୍ରାୟ ରାଜ୍ୟର ଉତ୍ତର-ପଶ୍ଚିମ ସୀମା ଅଭିମୁଖରେ ନିରତ ପ୍ରବାହ ଭଳି ଅଗ୍ରସର ହେବାକୁ ଲାଗିଲେ ।

ମହାମାତ୍ୟ ଆଚାର୍ଯ୍ୟ ସୁକଣ୍ଠ କଳିଙ୍ଗର ରାଜେଶ୍ୱରୀ ଅମିତାଙ୍କ ନାମରେ ବିରାଟ ଯୁଦ୍ଧର ଆୟୋଜନ କରୁଥିଲେ । କଳିଙ୍ଗର ମର୍ଯ୍ୟାଦାର ରକ୍ଷାକରିବା ଅଭିପ୍ରାୟରେ ସେ ଚଣ୍ଡ ଅଶୋକଙ୍କର ପ୍ରତିରୋଧ କରିବା ପାଇଁ ରାଜ୍ୟର ଭୂମି, ପ୍ରଜା ଏବଂ ସ୍ୱୟଂ ନିଜକୁ ମଧ୍ୟ ଯୁଦ୍ଧ-ଯଜ୍ଞରେ ଆହୁତି ରୂପରେ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ହୋଇ ରହିଥିଲେ, ମାତ୍ର ସେ ବାଳିକା ମହାରାଣୀ ସୂର୍ଯ୍ୟ-ତାପରେ ଦୁଃଖୀ ହୋଇଥିବା ସମାଚାରରେ ବି ଚିନ୍ତିତ ଓ ବିଚଳିତ ହୋଇ ଯାଉଥିଲେ । ବାଳିକା ଅମିତା ହିଁ ସଂପ୍ରତି କଳିଙ୍ଗ ରାଜସତ୍ତାର ବୀଜ ଓ ପ୍ରତୀକ ଥିଲେ । ଭବିଷ୍ୟତରେ ଅମିତା କର୍ତ୍ତୃକ ହିଁ କଳିଙ୍ଗର ରାଜବଂଶ ବୃକ୍ଷର ପ୍ରସ୍ଫୁଟିତ ହେବାର ସମ୍ଭାବନା ଥିଲା ।

ଆଚାର୍ଯ୍ୟ ପ୍ରାସାଦର କର୍ମାନ୍ତାଧିଷ୍ଠାୟକ ସାମନ୍ତ ପ୍ରତାପଙ୍କ ନିକଟରୁ ସେ ନିତ୍ୟ ମହାରାଣୀଙ୍କର ଶାରୀରିକ ତଥା ମାନସିକ ଅବସ୍ଥା ବିଷୟରେ ସଂବାଦ ପାଇବାକୁ ଉତ୍କଣ୍ଠିତ ହୋଇ ରହୁଥିଲେ । ପ୍ରତାପ ମଧ୍ୟ ଏ ପ୍ରସଙ୍ଗରେ ବାରମ୍ବାର ହିତାକୁ ପଚାରି ବୁଝୁଥିଲେ । ଚିନ୍ତାର ମୁଖ୍ୟ କାରଣ ଥିଲା— ଅମିତା ପ୍ରାୟ ମାତାଙ୍କୁ ସ୍ମରଣ କରି ଅଧୀର ହୋଇପଡୁଥିଲେ । କର୍ମାନ୍ତାଧିଷ୍ଠାୟକଙ୍କ ଠାରୁ ପ୍ରାସାଦର ନାୟକ, ପ୍ରହରୀ, କଞ୍ଚୁକୀ, ଯବନୀ ଓ ଦାସଦାସୀ ପର୍ଯ୍ୟନ୍ତ କେବଳମାତ୍ର ଏଇ ଚେଷ୍ଟାରେ ରହୁଥିଲେ ଯେମିତି ମହାରାଣୀ କ୍ରୀଡ଼ା ବିନୋଦ ଭିତରେ ବୁଡ଼ି ରହିବେ ଏବଂ ତାଙ୍କୁ ମାତାଙ୍କୁ ସ୍ମରଣ କରିବାକୁ ଅବସର ମିଳିବ ନାହିଁ । ଉଦ୍ଧାଳ ଓ ହିତାର କୌଶଳ ହେତୁ ଅମିତା ପ୍ରାୟ କ୍ରୀଡ଼ାରେ ବୁଡ଼ି ରହୁଥିଲେ ମଧ୍ୟ ବାଳିକାକୁ କେବେହେଲେ ମାଆ ମନେ ନ ପଡ଼ିବା କ'ଣ ସମ୍ଭବ ?

ମହାରାଣୀ ନନ୍ଦା ସକାଳେ ଚୈତ୍ୟରେ ପୂଜା ସାରି ଆସି ଝିଅକୁ ପୂଜାର ପବିତ୍ର ଜଳ ଆଚମନ କରାଉଥିଲେ ଓ ଆଶୀର୍ବାଦ ଦେଉଥିଲେ । ସେହି ପ୍ରଭାତ କାଳରେ ଅମିତା ପ୍ରାୟତଃ ମାତାଙ୍କୁ ସ୍ମରଣ କରୁଥିଲେ ଓ ହିତାକୁ ତାଙ୍କୁ ଆଚମନ କରାଇ ଆଶୀର୍ବାଦ ଦେବାକୁ ଅନୁରୋଧ କରୁଥିଲେ ।

କୋହରେ ସେତେବେଳେ ହିତାର କଣ୍ଠ ବାଷ୍ପରୁଦ୍ଧ ହୋଇ ଉଠୁଥିଲା । ସେ ଲୁହ ପିଇ ଅମିତାଙ୍କର ଇଚ୍ଛା ପୂରଣ କରୁଥିଲା । ଭୋଜନ ପାଇଁ ଅନୁରୋଧ କଲାବେଳେ, ଶୟନ ପାଇଁ ପଲଙ୍କ ଉପରକୁ ଯିବାବେଳେ ଆଉ ଉଠିବା ବେଳେ ଅମିତା ମାତାଙ୍କୁ ମନେପକେଇ ପଚାରୁଥିଲେ 'ମାଆ ତୀର୍ଥଯାତ୍ରାରୁ କେବେ ଫେରିବେ ? ତୀର୍ଥ କୋଉଠି, କେତେ ଦୂରରେ ଅଛି ?'

ସାମନ୍ତ ପ୍ରତାପଙ୍କର ପରାମର୍ଶକ୍ରମେ ହିତା ଅମିତାଙ୍କୁ ବୁଝେଇ ଦେଇଥିଲା ଯେ ରାଜମାତା ରାଜ୍ୟ ଏବଂ ପୁତ୍ରୀର ମଙ୍ଗଳ କାମନା କରି ତୀର୍ଥଯାତ୍ରା କରିଛନ୍ତି । ଏହି ଯାତ୍ରା ଶୀଘ୍ର ସମାପ୍ତ କରି ଫେରିଆସିବେ । ଅମିତାଙ୍କର ମାତୃ ସ୍ମୃତିରେ ଅଧୀର ହେବାବେଳେ ହିତା କେତେବେଳେ ଖେଳନା ଦେଇ, କେତେବେଳେ ପ୍ରମୋଦ ଉଦ୍ୟାନକୁ ନେଇଯାଇ, କେତେବେଳେ ରାଜପ୍ରାସାଦର ଛାତ ଉପରୁ ନଗରର ଦୃଶ୍ୟ ଦେଖାଇ ଅଥବା କେତେବେଳେ ହସ୍ତୀ କିମ୍ବା ପାଲିଙ୍କିପୃଷ୍ଠରେ ନଗର ବିହାରପାଇଁ ନେଇ ଯାଉଥିଲା । ନଗରକୁ ଗଲେ ହିତାର ମଧ୍ୟ ଆଶା ଜାଗରିତ ହେଉଥିଲା; କାଳେ ମୋଦକୁ ଦେଖିପାରିବାର ଅବସର ଆସିବ । ଆପଣାର ଅନୁପସ୍ଥିତିରେ ବାଳିକା ମହାରାଣୀ ଅଧୀର ହେବାର ଆଶଙ୍କା କରି ତାଙ୍କୁ ବାପୀର ତତ୍ତ୍ୱାବଧାନରେ ଛାଡ଼ି ମୋଦ ସହିତ ସାକ୍ଷାତ ହେବାର ଅଭିପ୍ରାୟରେ ନଗରକୁ ଯିବାର ଅବସର ମଧ୍ୟ ହିତାକୁ ମିଳୁ ନ ଥିଲା ।

ମହାମାତ୍ୟଙ୍କର ଆଦେଶକ୍ରମେ ରାଜ୍ୟର ସର୍ବୋତ୍ତମ ଅନ୍ନ ସୈନିକମାନଙ୍କୁ ଦିଆ ହେଉଥିଲା । ତାପରେ ବିଶେଷ ଭାଗ ସେହି ସୈନିକମାନଙ୍କ ପାଇଁ ଉତ୍ତର-ପଶ୍ଚିମ ସୀମାନ୍ତକୁ ପଠା ଯାଉଥିଲା । ସାଧାରଣ ପ୍ରଜା ଏବଂ ବିଶେଷତଃ ରାଜ୍ୟର ଉତ୍ତର-ପଶ୍ଚିମ ଭାଗରୁ ଆସୁଥିବା ଶରଣାର୍ଥୀମାନଙ୍କ ପାଇଁ ସାଧାରଣ ଅନ୍ନ ଦିଆ ଯାଉଥିଲା । ବେଳେ ବେଳେ ସେହି ଅନ୍ନ ଖାଇ ସେମାନେ ନାନା ଉଦର ବ୍ୟାଧି ଭୋଗ କରୁଥିଲେ ।

ସର୍ବସାଧାରଣରେ ଏହି ଭୟ ଖେଳିଗଲା ଯେ ଉତ୍ତର-ପଶ୍ଚିମ ସୀମାନ୍ତରୁ ଆସୁଥିବା ଲୋକଙ୍କ ଉପରେ ଦେବତାଙ୍କର କୋପ ଅଛି । ସେମାନଙ୍କ ସହିତ ସମ୍ପର୍କ ହିଁ ରୋଗର କାରଣ । ମହାରାଣୀଙ୍କର ଅଭିଷେକ ଓ ବିଜୟ ଅଭିଯାନ ପର୍ବରେ ଯେତେବେଳେ ବେଦୀମାନଙ୍କରେ ବିନାମୂଲ୍ୟରେ ବଳିପ୍ରସାଦ ଏବଂ ମଦିରା ବିତରିତ ହେଲା ସେତେବେଳେ ରାଜଧାନୀରେ ଏହି ରୋଗ ଅଧିକ ବିକରାଳ ରୂପ ଧାରଣ କଲା । ନଗରରେ ବିସୂଚିକା ବ୍ୟାଧି ତ୍ରସ୍ତ କଲା । ଲୋକେ ଏହି ରୋଗଗ୍ରସ୍ତ ହୋଇ ମରିବାକୁ ଲାଗିଲେ । ପ୍ରଜା ଏହି ଅଦୃଶ୍ୟ ଶତ୍ରୁ ଭୟରେ ଅଥବା ଦୈବୀ ପ୍ରକୋପ ହେତୁ ଭୟରେ ଥରିବାକୁ ଲାଗିଲେ । ବିହାରର ଭିକ୍ଷୁ ନାଗରିକଙ୍କ

ପ୍ରତି କ୍ରୋଧ ଭୁଲି, ସ୍ୱୟଂ ରୋଗପ୍ରତି ଭୟ ନ ରଖି ରୋଗୀମାନଙ୍କର ସେବା କରିବାକୁ ଲାଗିଲେ । ବୃଦ୍ଧା ଓ ମାତାମାନେ ଆତଙ୍କିତ ହୋଇ ଆପଣାର ସନ୍ତାନମାନଙ୍କୁ ସମ୍ଭାବିତ ଭୟରୁ ରକ୍ଷା କରିବା ନିମନ୍ତେ ଭିକ୍ଷୁଙ୍କର ଆଶୀର୍ବାଦ କାମନାରେ ବିହାରକୁ ଆସିବାକୁ ଲାଗିଲେ । ଭିକ୍ଷୁ ସେମାନଙ୍କୁ ଆଶୀର୍ବାଦ ଓ ଅଭିମନ୍ତ୍ରିତ ଜଳର ଆଚମନ କରେଇ ଅଭୟ ବିଶ୍ୱାସ ଦେବା ସମୟରେ ଏହା ବଳି ହିଂସାର ପାପ ବୋଲି କହିବାକୁ ଭୁଲୁ ନ ଥିଲେ । ମନୁଷ୍ୟ ତାର କର୍ମ ହେତୁ ହିଁ ଏଭଳି ଦୁଃଖ ଭୋଗ କରିଥାଏ ।

ଧନୀ ବୈଶ୍ୟ କୁଳରେ ଏହି ରୋଗର କାରଣ ଭାବରେ ଭିନ୍ନ ଅନୁମାନ କରାଯାଉଥିଲା । ସେମାନେ ରହସ୍ୟମୟ ସ୍ୱରରେ କହୁଥିଲେ– ନଗରର ପାପରେ ରୁଷ୍ଟ ହୋଇ ମହାରାଣୀଙ୍କର ନଗର ପରିତ୍ୟାଗ କରି ଚାଲିଯିବାହିଁ ଏହି ରୋଗର କାରଣ । ଏଭଳି ଲୋକ ମତରେ ସୂଚନା ମହାମାତ୍ୟଙ୍କ ନିକଟରେ ନିୟମିତ ପହଞ୍ଚୁଥିଲା ।

ମହାମାତ୍ୟ ବିଚାର କରି ଆଦେଶ ଦେଲେ– 'ରୋଗ ପାପ ଅଟେ । ପାପକୁ ନଷ୍ଟ କରିବାର ଏକମାତ୍ର ଶକ୍ତି ବୈଶ୍ୱାନରର ଅଗ୍ନିଙ୍କ ପାଖରେ ରହିଛି । ନଗରର ଯେଉଁ ଗୃହ ବା ଅଞ୍ଚଳରେ ରୋଗର ପ୍ରକୋପ ହେବ ସେହି ଅଞ୍ଚଳର ଲୋକେ ଗୃହ ଛାଡ଼ି ଅରଣ୍ୟକୁ ଚାଲିଯାଆନ୍ତୁ ଏବଂ ପାପଯୁକ୍ତ ସେହି ସ୍ଥାନକୁ ବୈଶ୍ୱାନରଙ୍କର ତୁଷ୍ଟି ପାଇଁ ଅର୍ପଣ କରାଯାଉ ।'

ରାଜପୁରୁଷମାନେ ରୋଗାକ୍ରାନ୍ତ ସମସ୍ତ ଅଞ୍ଚଳ ଦାହ କରିବାକୁ ଲାଗିଲେ । ବୈଶ୍ୱାନର ଦେବତା ତୃପ୍ତ ହେବା ପରେ ଏକ ସପ୍ତାହ ମଧ୍ୟରେ ନଗର ରୋଗର ପ୍ରକୋପ ମୁକ୍ତ ହୋଇଗଲା ।

ଜନସାଧାରଣଙ୍କ ମଧ୍ୟରେ ଜ୍ଞାନୀ ଆଚାର୍ଯ୍ୟଙ୍କର ବୈଶ୍ୱାନର-ସିଦ୍ଧି ଅଛି ବୋଲି ପ୍ରଚାରିତ ହେଲା । ସେ ଦେବତାଙ୍କୁ ସନ୍ତୁଷ୍ଟ କରି ରାଜ୍ୟକୁ ରୋଗରୁ ରକ୍ଷା କରିଛନ୍ତି ଏବଂ ଦେବୀ ସ୍ୱରୂପିଣୀ ମହାରାଣୀଙ୍କର ପ୍ରତାପ ଓ ଆଚାର୍ଯ୍ୟଙ୍କର ତପ ଅଶୋକଙ୍କର ସୈନ୍ୟଦଳକୁ ମଧ୍ୟ ଭସ୍ମୀଭୂତ କରିଦେବ ।

# ସୌମିତ୍ରଙ୍କର ସୂତ୍ର

ଶ୍ରେଷ୍ଠୀ ସୌମିତ୍ର ରାଜତିଳକ ଏବଂ ବିଜୟ ଅଭିଯାନର ଉତ୍ସବରେ ସଂପୂର୍ଣ୍ଣ ସହଯୋଗ ଦେଉଥିଲେ । ମହାରାଣୀଙ୍କର ରାଜ୍ୟାଭିଷେକ ଅବସରରେ ତାଙ୍କର ତୋରଣଦ୍ୱାରରେ ଏକପକ୍ଷ ଯାବତ୍ ନିରନ୍ତର ମଙ୍ଗଳବାଦ୍ୟ ବାଜୁଥିଲା । ଏକ ପକ୍ଷ ଧରି ନୃତ୍ୟ-ସଂଗୀତର ଆସର ଚାଲିଥିଲା । ତାଙ୍କର ପ୍ରାସାଦରେ ନିତ୍ୟ ଏକ ସହସ୍ର ଲୋକଙ୍କୁ ପ୍ରସାଦ ବଣ୍ଟନ ହେଉଥିଲା । ଶ୍ରେଷ୍ଠୀ ମହାରାଣୀଙ୍କର ଉତ୍ତରଦିଶାର ବିଜୟ ଅଭିଯାନରେ ମଧ୍ୟ ଏକହଜାର ଶଗଡ଼ ଖାଦ୍ୟାନ୍ନ ଦେଇ ସହଯୋଗ କରିଥିଲେ । ଏକ ସହସ୍ର ଖଡ୍‌ଗ, ଢାଲ ଏବଂ ବର୍ଚ୍ଛାର କ୍ରୟ ମୂଲ୍ୟ ଏବଂ ସୈନିକମାନଙ୍କର ସେବା ହେତୁ ଏଗାରଜଣ ଦାସ ପ୍ରଦାନ କରିଥିଲେ । ଶ୍ରେଷ୍ଠୀ ମଝିରେ ମଝିରେ ମହାମାତ୍ୟଙ୍କୁ ସାକ୍ଷାତ କରି ରାଜ୍ୟ-ସେବା ହେତୁ ଆପଣାର ତତ୍ପରତା ପ୍ରଦର୍ଶନ କରୁଥିଲେ । ଏହି ବ୍ୟସ୍ତତା ହେତୁ ବେଳେବେଳେ ଶ୍ରେଷ୍ଠୀଙ୍କୁ ରାତ୍ରିର ଦ୍ୱିତୀୟ ପ୍ରହର ପର୍ଯ୍ୟନ୍ତ ବିଶ୍ରାମ କରିବାର ଅବସର ମିଳୁ ନ ଥିଲା । ରାତ୍ରିର ଦ୍ୱିତୀୟ ପ୍ରହର ଆଗତପ୍ରାୟ । ଶ୍ରେଷ୍ଠୀ ସେତେବେଳେ ତାଙ୍କର ପ୍ରାସାଦର ଅନ୍ତଃପୁରର ପ୍ରାଙ୍ଗଣରେ ଏକ ଉଜ୍ଜ୍ୱଳ କକ୍ଷରେ ଥିଲେ । ଗୋଟାଏ କୋମଳ ଆସନରେ ବସିଥିଲେ । ସାମନାରେ ଏକ ଧଳା ସ୍ଫଟିକ ପଥରର ଉଚ୍ଚ ଆସନ ଉପରେ ରୁପା ପାତ୍ରମାନଙ୍କରେ ନାନାଦି ଭୋଜ୍ୟ ପଦାର୍ଥ ସଜ୍ଜିତ ହୋଇ ରହିଥିଲା । ଥାଳିରେ ଅନ୍ନ । ଶ୍ରେଷ୍ଠୀଙ୍କର ଦୁଇପୁତ୍ରଙ୍କର ମାତା ତାଙ୍କର ପାଖରେ ବସି ସେବକମାନଙ୍କୁ ଶ୍ରେଷ୍ଠୀଙ୍କର ରୁଚି ଅନୁମାନ କରି ପରଷି ଦେଉଥିବାର ଆଦେଶ ଦେଉଥିଲେ । ସେତେବେଳେ ସହସା ଶ୍ରେଷ୍ଠୀଙ୍କର ପ୍ରୌଢ଼ାଦାସୀ ମାଉସୀ କକ୍ଷ ମଧ୍ୟକୁ ହସି ହସି ପ୍ରବେଶ କଲା ଏବଂ ଆସି ଶ୍ରେଷ୍ଠୀଙ୍କର ସମୀପରେ ଭୂମି ଉପରେ ବସିଗଲା । ମାଉସୀ ନିଃସଂକୋଚ ଭାବରେ ଶ୍ରେଷ୍ଠୀଙ୍କର ଥାଳିକୁ ଅନେଇ କହିଲା– 'ସ୍ୱାମିନୀ, ଏ କ'ଣ ? ବଡ଼ି ତିଆରି କରାଉ ନାହଁ ? ସେଇ ତ ସ୍ୱାମୀଙ୍କର ସର୍ବାଧିକ ପ୍ରିୟ !

'ଏବକୁ ସ୍ୱାମୀଙ୍କୁ ଆଉ ବଡ଼ି ରୁଚୁ ନାହିଁ । ସେ ପ୍ରତିଦିନ ଭୋଜନର ପରିମାଣ କମ କରି ଚାଲିଛନ୍ତି ।' ଶ୍ରେଷ୍ଠାଣୀ ଚିନ୍ତା ପ୍ରକାଶ କଲେ ।

ମାଉସୀ ଆଦରପୂର୍ଣ୍ଣ ସ୍ୱରରେ ଅଭିଯୋଗ କଲା– 'ଏହା କିପରି ହେବ ସ୍ୱାମୀ, ଆପଣ ମାଂସ ଭୋଜନ ପରିତ୍ୟାଗ କଲେ, କଲେ । ମାତ୍ର କିଛି ତ ଖାଇବେ, ଯାହା ପୁଷ୍ଟିକର !'

ଶ୍ରେଷ୍ଠୀ ମୁରୁକି ହସି ମାଉସୀକୁ ଦେଖି ଭୋଜନ ବିରତ ହେଲେ ।

ମାଉସୀ ଧରିନେଲା, ସ୍ୱାମୀ ଦାସୀର କଥା କାହିଁକି ରଖିବେ ?

ଗୋଟାଏ ଦାସୀ ଜଳପାତ୍ର ଓ ହାତପୋଛା ବସ୍ତ୍ର ନେଇ ଏବଂ ଆଉ ଜଣେ ତାମ୍ବୂଳ ସାମଗ୍ରୀ ନେଇ ପହଞ୍ଚିଲା । ତାମ୍ବୂଳ ମଞ୍ଜୁଷା ଶ୍ରେଷ୍ଠାଣୀଙ୍କ ପାଖରେ ରଖିଦେଲା ।

ମାଉସୀ ହାତ ଭରାଦେଇ ଉଠି ଦାସୀ ହାତରୁ ହାତ ପୋଛା ନେଇ ନେଲା ଆଉ ସ୍ୱାମିନୀଙ୍କୁ ଦେଖି କହିଲା – 'ସ୍ୱାମିନୀ, ଆପଣ ଅନୁମତି ଦେଲେ ମୁଁ ସ୍ୱାମୀଙ୍କ ନିମନ୍ତେ ତାମ୍ବୂଳ ପ୍ରସ୍ତୁତ କରିଦେବି !'

ଶ୍ରେଷ୍ଠାଣୀ କିଛି କହିବା ପୂର୍ବରୁ ଶ୍ରେଷ୍ଠୀ କହି ପକେଇଲେ – 'ହଁ, ଅନେକ ଦିନ ହେଲା ମାଉସୀ ହାତର ଭଙ୍ଗା ପାନ ଖାଇ ନାହିଁ । ମାଉସୀକୁ ଏଇନେ ତାର ବିଜୟାର ଦୋକାନ ପ୍ରତି ମୋହ ଆସିଯାଇଛି ।

ଶ୍ରେଷ୍ଠୀ ବୁଝିସାରିଥିଲେ ଯେ ମାଉସୀ କିଛି ସମ୍ବାଦ ନେଇ ଆସିଛି ଏବଂ ଏକାନ୍ତରେ କହିବାକୁ ଇଚ୍ଛା କରୁଛି ।

ଶ୍ରେଷ୍ଠୀ ହାତ ଧୋଇ ପୋଛି ନେଇ ଅନ୍ୟ କକ୍ଷକୁ ଚାଲିଗଲେ । ମାଉସୀ ମଧ୍ୟ ତାଙ୍କ ପଛେ ପଛେ ତାମ୍ବୂଳ ମଞ୍ଜୁଷା ନେଇ କକ୍ଷମଧ୍ୟରେ ପ୍ରବେଶ କଲା । ଯେଉଁ ସମୟରେ ମାଉସୀ ସାଙ୍ଗରେ କଥା ହୁଅନ୍ତି ସେତେବେଳେ କୌଣସି ସେବକ ବାଧା ଦେଇ ନ ଥିଲା ।

ଶେଠ ସୌମିତ୍ରଙ୍କଠାରୁ ଦାସୀ ମାଉସୀର ବୟସ ବର୍ଷେ ଦୁଇବର୍ଷ ସାନ । ଏକଦା ମାଉସୀ ନାଆଁ କଳିକା ଥିଲା । ଥରେ କଳିକା ମାଉସୀ ବୋଲାଇବାର ଅହଂକାର ପ୍ରଘଟ କଲା ଓ ସେଇ ଦିନରୁ ଶ୍ରେଷ୍ଠୀ ତାକୁ ମାଉସୀ ବୋଲି ଡାକୁଥିଲେ । ଦାସୀର କଳିକା ନାଆଁକୁ ସମସ୍ତେ ଧୀରେ ଧୀରେ ଭୁଲିଗଲେ ଏବଂ ଶ୍ରେଷ୍ଠୀଙ୍କର ମାଉସୀ ବୋଲାଇ ସେ ଅନ୍ୟମାନଙ୍କର ମଧ୍ୟ ମାଉସୀରେ ପରିଣତ ହୋଇଗଲା ।

ବୟସ ବଢ଼ିବା ସାଙ୍ଗକୁ ମାଉସୀର କେତୋଟି ଛାମୁଦାନ୍ତ ପଡ଼ିଯାଇ ଓଠ ମଧ୍ୟ କିଛି ପରିମାଣରେ ଭିତରକୁ ପଶି ଯାଇଥାଏ । ବିଶାଳ ଆଖି ଉପରକୁ କିଛି ପରିମାଣରେ ଭ୍ରୂଲତା ଲଦିହୋଇ ଆସିଥାଏ । ମାତ୍ର ଏବେ ମଧ୍ୟ ଓଠରେ ତାମ୍ବୂଳର ଲାଳିମା, ନେତ୍ରରେ ଚଞ୍ଚଳତା, ମୁଖମଣ୍ଡଳରେ କୋମଳତା ଓ ଲାବଣ୍ୟର ଅବଶେଷ ରହିଥାଏ । କଥା କହିବା ବେଳେ ସେ ଏବେ ମଧ୍ୟ ମୁଗ୍ଧା ଓ ଯୁବତୀ ଭଳି ଅଧର ବା ଗଣ୍ଡଦେଶରେ ଆଙ୍ଗୁଳି ରଖି ବିସ୍ମୟ ଓ କୃତ୍ରିମ

ଆତଙ୍କର ଭାବ ପ୍ରଦର୍ଶନ କରୁଥାଏ । ପରିବାରର ଆବାଳବୃଦ୍ଧବନିତା ତାହା ସହିତ କଥା ହେବାକୁ ଆଗ୍ରହ ପ୍ରକାଶ କରୁଥିଲେ । ସେ ସେହି ନଗରଶ୍ରେଷ୍ଠୀଙ୍କର ପରିବାରରେ ଚାଳିଶ ବର୍ଷରୁ ଅଧିକ କାଳ ହେଲା ରହିଥିବା ଫଳରେ ପରିବାରରେ ତା'ର ସ୍ଥାନ, ମର୍ଯ୍ୟାଦା ଓ ଅଧିକାର ରହିଥିଲା । ତାକୁ ମାଉସୀ ଡାକିଲାବେଳେ ଯେଉଁଭଳି 'ଭାଉଜ'ର ଧ୍ୱନିଟି ଗୋପନରେ ରହିଥିଲା ।

ଯେଉଁ ସମୟରେ ସୌମିତ୍ରଙ୍କର ପିତା ଚାରୁକଙ୍କର ଆୟୁ ଅଠତିରିଶ ବର୍ଷ ସେ କଳିକାର ରୂପଲାବଣ୍ୟ ଦେଖି ତାକୁ ବିଶେଷ ଦାସୀ ଭାବରେ କିଣି ନେଇଥିଲେ । ସେତେବେଳେ କଳିକାର ବୟସ ପନ୍ଦର ବର୍ଷ । କଳିକାର ମାତା ଜଣେ ନିର୍ଦ୍ଧନ ଗଣିକା । ସେ ଝିଅକୁ ନଗରଶ୍ରେଷ୍ଠୀଙ୍କୁ ଦେଇ ଭାଗ୍ୟବତୀ କରିଥିଲା । ସେତେବେଳେ ସୌମିତ୍ର ଷୋହଳ ସତର ବର୍ଷର କିଶୋର । ଦିନେ ସୌମିତ୍ର କିଶୋରାବସ୍ଥାର ଚଞ୍ଚଳତାରେ ପିତାଙ୍କର ସେହି ବିଶେଷ ଦାସୀପ୍ରତି କିଞ୍ଚିତ ଅଶାଳୀନ ବ୍ୟବହାର ପ୍ରଦର୍ଶନ କରିବା ଫଳରେ କଳିକା ଦାସୀ ହୋଇଥିଲେ ହେଁ ସ୍ୱାମୀ କୃପା ବଳରେ ରୁଷ୍ଟ ହୋଇ ସ୍ୱାମୀ-ପୁତ୍ରର ଭର୍ତ୍ସନା କଲା । କହିଲା— 'ଭାବି ଦେଖ, ମୁଁ ତମର ପିତାଙ୍କର ବିଶେଷ ଦାସୀ । ତମର ମାଉସୀ ଭଳି । ମୁଁ ତମର ପିତାଙ୍କର ଆଦରର ପାତ୍ରୀ ବୋଲି ସମସ୍ତଙ୍କର ଆଦରଣୀୟା, ତେଣୁ ମୋର ଅନାଦର ତମର ପିତାଙ୍କର ଅବଜ୍ଞା ହିଁ ହେବ !'

ସୌମିତ୍ର ମନେ ମନେ ଚିଡ଼ିଯାଇ ଦାସୀର ଅହଂକାରର ବିଦ୍ରୂପ କରିବାକୁ ମନସ୍ଥ କରି ମାଉସୀ ଡାକିବା ଆରମ୍ଭ କରିଦେଲା । ମାଉସୀ, ସ୍ୱାମୀପୁତ୍ର ନବଯୁବକ ସୌମିତ୍ରର ବାସନା ତୁଷ୍ଟି କରୁ ନ ଥିଲେ ହେଁ କଥାରେ, ସଂକେତରେ କାମ-କେଳିର ଗୋପନ ରହସ୍ୟର ଶିକ୍ଷା ଦେଉଥିଲା ଏବଂ ସୌମିତ୍ରର ବିଶ୍ୱାସପାତ୍ରୀ ହୋଇ ପ୍ରଭାବ ବିସ୍ତାର କରି ରହିଥିଲା । କ୍ରୀତଦାସୀ ହୋଇ ମଧ୍ୟ ତା'ର ଚାତୁର୍ଯ୍ୟ ହେତୁ ସମସ୍ତଙ୍କର ଆଦରଣୀୟା ଥିଲା ।

ସୌମିତ୍ରର ପିତା ଅଣଷଠି ବର୍ଷର ସାଧାରଣ ଆୟୁରେ ଦେହତ୍ୟାଗ କଲେ । ମାଉସୀର ଗର୍ଭରୁ ଗୋଟିଏ ପୁତ୍ର ଏବଂ ଦୁଇଟି କନ୍ୟା ଜନ୍ମଗ୍ରହଣ କରିଥିଲେ । ଶ୍ରେଷ୍ଠୀ ଚାରୁକ ଆପଣାର ଜୀବନକାଳରେ ଦାସୀପୁତ୍ରକୁ ଆପଣାର ବ୍ୟବସାୟ କର୍ମୀ କରିଥିଲେ ଏବଂ ଯଥେଷ୍ଟ ଧନ ଦେଇ ଧନହୀନ କ୍ଷତ୍ରିୟ କୁଳରେ ଝିଅମାନଙ୍କର ବିବାହ କରାଇଥିଲେ ।

ଶ୍ରେଷ୍ଠୀ ଚାରୁକର ମୃତ୍ୟୁ ପରେ ମାଉସୀ ଶୃଙ୍ଗାର ଓ ଆଭୂଷଣ ତ୍ୟାଗ କରିଥିଲେ । ସ୍ୱାମୀ ଶୋକରେ କୁଳନାରୀଙ୍କ ଭଳି ସେ ଶ୍ୱେତବସ୍ତ୍ର ହିଁ ପରିଧାନ କରୁଥିଲା । ସେ ସେଭଳି ବେଶରେ ମଧ୍ୟ ଯୁବତୀମାନଙ୍କର ରୂପକୁ ଲଜ୍ଜିତ କରୁଥିଲା ।

ସେ ଶ୍ରେଷ୍ଠୀକୁଳର ସନ୍ତାନମାନଙ୍କର ଲାଳନ ପାଳନ ଆପଣାର ସନ୍ତାନମାନଙ୍କ ଭଳି କରୁଥିଲା । ସୌମିତ୍ର ତା' ସହିତ ହାସ-ପରିହାସ ମଧ୍ୟ କରୁଥିଲେ । ଶ୍ରେଷ୍ଠୀଙ୍କର ପ୍ରକୃତି ଗମ୍ଭୀର ହେବା ପରେ ସେ ତାଙ୍କୁ କେବଳମାତ୍ର କାମ-କେଳି ନୁହେଁ ଅନ୍ୟାନ୍ୟ ରହସ୍ୟ ଓ ଅଭିସନ୍ଧିରେ ମଧ୍ୟ ମନ୍ତ୍ରଣା ଦେବାକୁ ଲାଗିଲା ।

ମାଉସୀ ପ୍ରୌଢ଼ା ହେବା ପରେ ନିଃସଂକୋଚ ଓ ନିର୍ଭୟରେ ନଗର ବୀଥି ବିପଣୀରେ ବୁଲି ଆସୁଥିଲା । ମାଉସୀର ବ୍ୟବହାରରେ କୁଳନାରୀଙ୍କର ସୌମ୍ୟତା ଏବଂ ଦାସୀର ନିଃସଂକୋଚ ଭାବର ଆକର୍ଷଣ ସମାନ ଅନୁପାତରେ ରହିଥିଲା । ହାସପରିହାସର ସ୍ୱଭାବ ହେତୁ ନାଗରିକମାନେ ତାହା ସହିତ ପ୍ରତ୍ୟେକ ପ୍ରସଙ୍ଗରେ ଆତ୍ମୀୟତା ସହିତ ଆଳାପ କରୁଥିଲେ । ମାଉସୀ ସୌମିତ୍ର ପାଇଁ ନଗର ସମାଚାରର ବାର୍ତ୍ତାବାହିକା ଥିଲା ।

ମହାମାତ୍ୟ ମହାରାଣୀଙ୍କର ନଗର ପରିକ୍ରମା ସମୟରେ ତାଙ୍କର ପାଲିଙ୍କି ନିକଟକୁ ଯିବା ଏବଂ ସାଧାରଣ ଲୋକଙ୍କର ରାଜପ୍ରାସାଦକୁ ପ୍ରବେଶ ପାଇଁ ନିଷେଧାଜ୍ଞା ଦେଇଥିଲେ । ତେଣୁ ସୌମିତ୍ର ରାଜପ୍ରାସାଦ ଆଗରେ ମାଉସୀ ଲାଗି ଭାଙ୍ଗ ବାଟି ପ୍ରପାନ, ମୁଢ଼ି ଓ ମିଷ୍ଟାନ୍ନର ଦୋକାନଟିଏ ଖୋଲି ଦେଇଥିଲା ।

ମାଉସୀ ରାଜପ୍ରାସାଦର ପ୍ରହରୀ, ଦାସ-ଦାସୀଙ୍କୁ ଆସୁଥିବା ଦେଖିଲେ ସୁଯୋଗ ଦେଖି ତା'ର ଦୋକାନରେ ପାଦ ପକେଇବାକୁ ନିମନ୍ତ୍ରଣ ଦେଉଥାଏ । ମାଉସୀ କରଜ ଦେବାରେ ବେଶ ଉଦାର, ତଦୁପରି ତା'ର ରସାଳ କଥା । ସେଇ କାରଣରୁ ଲୋକେ ତା ପାଖରେ ଦି' ଘଡ଼ି ବସିଯିବାକୁ ଇଚ୍ଛା କରୁଥିଲେ । ସେହି ସୂତ୍ରରୁ ମାଉସୀକୁ ରାଜପ୍ରାସାଦର ଗତିବିଧିର ଅନେକ ସମାଚାର ମିଳୁଥାଏ । କେଉଁ ଦାସୀ ମହାରାଣୀଙ୍କର ଅତି ପାଖର, ଯୁବରାଜ୍ଞୀ କେଉଁସବୁ ଖେଳ ଖେଳନ୍ତି, ଦଣ୍ଡକର କେଉଁ ଦାସ ପ୍ରତି କ୍ରୋଧ, ହିତାର ଶାସନ ହେତୁ ଦଣ୍ଡକ ହାତରେ ପଡ଼ିବା ଓ ଚମତ୍କାର ଢଙ୍ଗରେ ରକ୍ଷା ପାଇବା, ହିତା ଓ ମୋଦର ସମ୍ବନ୍ଧ ଆଦି ପ୍ରତ୍ୟେକ କଥା ତାକୁ ଜଣା ଥିଲା ।

ଦିନେ ମାଉସୀ ହିତାକୁ ତାର ଦୋକାନ ଆଗ ଦେଇ ଯାଉଥିବା ଦେଖି ଡାକିଲା ଓ ମମତାପୂର୍ଣ୍ଣ ଢଙ୍ଗରେ ସହାନୁଭୂତି ଦେଖେଇ କହିଲା – 'କା'ର ପ୍ରଣୟ ପ୍ରସଙ୍ଗରେ ଈର୍ଷା କରୁଥିବା ଲୋକ ଉପରେ ମନ୍ମଥ ବଜ୍ରପାତ କରନ୍ତୁ ।' ମାଉସୀ ହିତାକୁ ଜଣେ ତାନ୍ତ୍ରିକଙ୍କ ସମ୍ବନ୍ଧରେ କହିଲା । ତା'ର କବଚ ଗଳାରେ ଧାରଣ କରିବା ପରେ ମନୋବାଞ୍ଛା ପୂରଣ ପ୍ରତି ସନ୍ଦେହ ଆଦୌ ରହିପାରିବ ନାହିଁ । ତା'ପରେ ମାଉସୀ ସହାନୁଭୂତିରେ ହିତାକୁ ବୁଝେଇଦେଲା – 'ଝିଅ, ମୁଁ ବିରହର ଦୁଃଖ କ'ଣ ଜାଣେ ନାହିଁ ! ତୁ ବିଚାରୀ ବିଟ୍‌ଠକର କର୍ମଶାଳା ପର୍ଯ୍ୟନ୍ତ ଦଉଡ଼ି ଯାଉଛୁ । ତୁ ଯେତେବେଳେ ଯାହା ସନ୍ଦେଶ

ଦେବୁ ମୁଁ ତା' ପାଖରେ ପହଞ୍ଚେଇ ଦେବି । ମୋଦକୁ କହିଦେବି ସେ ଯେମିତି ବରାବର ଏଠାକୁ ଆସିବ ।

ମାଉସୀ ଜାଣିଥିଲା ଯେ ରାଜପ୍ରାସାଦର ଆନ୍ତରିକ ଭେଦ ହିତାଠାରୁ ହିଁ ଅଧିକ ଜାଣିହେବ ।

ରାଜପ୍ରାସାଦରୁ ମହାରାଣୀଙ୍କର ଯିବା ପରେ ବାଳିକା ମହାରାଣୀଙ୍କୁ ଭୁଲେଇ ରଖିବାର କାର୍ଯ୍ୟ ହିତା ପକ୍ଷରେ ଅତ୍ୟନ୍ତ କଠିନ ହୋଇଥିଲା । ଅମିତା ମୁହୂର୍ତ୍ତକ ଲାଗି ରୁଷି ବସିଲେ ସାମନ୍ତ ପ୍ରତାପ ହିତା ଉପରେ କ୍ରୁଦ୍ଧ ହୋଇ ଯାଉଥିଲା । ସେଭଳି ଅବସ୍ଥାରେ ମୋଦକୁ ଭେଟିବା ଲାଗି ରାଜପ୍ରାସାଦରୁ ବାହାରକୁ ଯିବା ହିତା ପକ୍ଷରେ କଠିନ ଥିଲା । ହିତା ମାଉସୀର କୃପା ଏବଂ ସହାୟତା ଲାଗି ଅତି ଅନୁଗ୍ରହିତା ଥିଲା । ତୃତୀୟ ପ୍ରହରରେ ମହାରାଣୀଙ୍କର ନିଦ୍ରାକାଳରେ ହିତା କେତେ କେତେ ବେଳେ ଅତି ଅଳ୍ପ ସମୟ ଲାଗି ମାଉସୀ ପାଖକୁ ଆସି ମୋଦ ଥିଲେ କିଛି କଥା ହୋଇ ଯାଇପାରୁଥିଲା । ସେହି କାରଣରୁ ହିତା ମାଉସୀକୁ ମାଆଠୁ ବଳି ଭରସା କରୁଥିଲା ଓ ତା'ପ୍ରତି ତା'ର ମମତା ଥିଲା ।

ମାଉସୀ ହିତାର କଠିନ ଉତ୍ତର-ଦାୟିତ୍ୱ ପ୍ରତି ଚିନ୍ତାଗ୍ରସ୍ତ ଥିବା ଛଳନା କରି ରହସ୍ୟପୂର୍ଣ୍ଣ ରୀତିରେ ଯାହା କହିଲା ତାହା ପରୋକ୍ଷରେ ଶ୍ରେଷ୍ଠୀ ସୌମିତ୍ରର ଜିଜ୍ଞାସା । ସେ କହିଲା– 'ବାଳିକା ମହାରାଣୀ ଏବେ ଆଉ କ'ଣ ରାଜମାତାଙ୍କୁ ମନେ ପକଉଥିବେ ? ପିଲାମାନେ ଚଞ୍ଚଳ ଭୁଲିଯାଆନ୍ତି ।'

ହିତା ବିଶ୍ୱାସରେ ଉତ୍ତର ଦେଲା– 'କ'ଣ କହିବି ମାଉସୀ, କହିବା ଉଚିତ ନୁହେଁ ବି । ଏହା କ'ଣ ସମ୍ଭବ ଯେ ମନେ ପକେଇବେ ନାହିଁ ? ମାଉସୀ, ମୁଁ ଜାଣେ ମୁଁ ତାଙ୍କୁ କେମିତି ଭୁଲେଇ ରଖୁଛି । ଏତିକି ଯଦି କରିବି ନାହିଁ ତାହେଲେ ରାଜପ୍ରାସାଦ ଓ ନଗରୀରେ ହାହାକାର ଭରିଯିବ .... ।

ମାଉସୀ ରାତି ଦ୍ୱିତୀୟ ପ୍ରହରରେ ଶ୍ରେଷ୍ଠୀଙ୍କର ଜିଜ୍ଞାସାର ଉତ୍ତର ଦେବାକୁ ଆସିଥିଲା । ମାଉସୀ, ବାଳିକା ମହାରାଣୀଙ୍କର ସମ୍ବନ୍ଧରେ ସ୍ୱାମୀଙ୍କର କୌତୂହଳର କାରଣ ଅନୁମାନ କରି ରହସ୍ୟମୟ ସ୍ୱରରେ ମାତା ଲାଗି ବାଳିକା ମହାରାଣୀଙ୍କର ବିହ୍ୱଳତା, ହିତା ପାଖରେ ତାଙ୍କର ପାଳିତ ଜୀବ ଭଳି ବଶୀଭୂତ ହୋଇ ରହିବା ତଥା ହିତା ଓ ମୋଦର ପ୍ରଣୟ ପ୍ରସଙ୍ଗ ବଖାଣି କହିଲା– 'ଟୋକୀ ବିଟ୍‌ଠଳର ଦାସ ମୋଦ ପାଇଁ ପାଗଳ । ତାକୁ ପାଇବା ଲାଗି ନିଆଁକୁ ଡେଇଁ ପଡ଼ିବାକୁ ବି ପଛେଇବ ନାହିଁ ।

ଶ୍ରେଷ୍ଠୀ ମାଉସୀର କଥା ମନ ଦେଇ ଶୁଣିଲା । କିଛି ବେଳ ନୀରବ ରହି ସେ ମାଉସୀକୁ ଆଦେଶ ଦେଲା– 'ଦାସୀ ହିତା ସାଙ୍ଗରେ ବରାବର ସଂପର୍କ ରଖିଥିବୁ । ଆଉ ଯାହା ଜାଣିବୁ ସମାଚାର ଦେବୁ ।'

ମାଉସୀଙ୍କୁ ବିଦାକରି ଶ୍ରେଷ୍ଠୀ ଶଯ୍ୟାରେ ପଡ଼ିରହି ବହୁ ବେଳ ପର୍ଯ୍ୟନ୍ତ ବିଚାର କଲା । ସେ ନିଜେ ଯାଇ ରାଜପ୍ରାସାଦରୁ ଦେଖିଆସିବ ନାହିଁ କାହିଁକି ବୋଲି ମନେ ମନେ ସ୍ଥିର କଲା ।

× × × × ×

ପ୍ରଥମ ପ୍ରହରର କୋମଳ ସୂର୍ଯ୍ୟକିରଣ ରାଜପ୍ରାସାଦର ପ୍ରମୋଦ ଉଦ୍ୟାନର ବୃକ୍ଷଗୁଡ଼ିକରୁ ଛାଣି ହେଲାଭଳି ଭୂମି ଉପରେ ବିଛେଇ ହୋଇ ପଡ଼ିଥାଏ । ପ୍ରୌଢ଼ା ଦାସୀ ବାପୀ ଏବଂ ଦାସୀ ହିତା ମହାରାଣୀ ଅମିତାଙ୍କୁ ବୃକ୍ଷଶାଖାରେ ବନ୍ଧା ହୋଇଥିବା ଦୋଳିରେ ବସେଇ ଝୁଲେଇ ଝୁଲେଇ ଭୁଲେଇ ରଖିଥାନ୍ତି । ମହାମାତ୍ୟ ଏବଂ ମହାସେନାପତିଙ୍କର ପୌତ୍ର-ପୌତ୍ରୀମାନେ ବି ମହାରାଣୀଙ୍କର ବିନୋଦର ସାଥୀ ହେବାକୁ ପହଞ୍ଚି ଥାଆନ୍ତି । ଶ୍ୱାନ ବଭ୍ରୁ କିଛି ଦୂରରେ ବସି ମହାରାଣୀଙ୍କର ଝୁଲନ୍ତ ଦୋଳିକୁ ଦେଖୁଥାଏ ।

ସହସା ବଭ୍ରୁ ଉଚ୍ଚୈସ୍ୱରରେ ଭୁକିବା ଆରମ୍ଭ କରି ଏକ କଦମ୍ବ ବୃକ୍ଷ ନିକଟକୁ ଦଉଡ଼ିଗଲା । କୁକୁରର ଭୁକିବା ଫଳରେ ଅମିତାଙ୍କର ଦୃଷ୍ଟି ମଧ୍ୟ ବୃକ୍ଷ ଦିଗକୁ ଆକର୍ଷିତ ହୋଇଗଲା । ବିରାଡ଼ିଟିଏ ଅଗଣାରୁ ଆସୁଛି । ବିରାଡ଼ିଟି ଡେଇଁ କଦମ୍ବ ଗଛଟି ଉପରକୁ ଚଢ଼ିଗଲା । ବଭ୍ରୁ ବିରାଡ଼ିକୁ ଧରି ନ ପାରି ନିଷ୍ଫଳ କ୍ରୋଧ ଓ ଉତ୍ତେଜନାରେ ବୃକ୍ଷତଳେ ଡେଇଁବାକୁ ଲାଗିଲା । ବିରାଡ଼ିଟି ବୃକ୍ଷର ଊର୍ଦ୍ଧ୍ୱ ଶାଖାରେ ବସି ଭୟରେ ଥରୁଥାଏ ।

ଅମିତା ହୃଦୟରେ କାତର ବିରାଡ଼ିଟି ପାଇଁ କରୁଣା ଭରିଗଲା । ତାଙ୍କର ଦୋଳି ଝୁଲିବା ବନ୍ଦ ହୋଇଗଲା । ସେ ବଭ୍ରୁକୁ ଗାଳି ଦେବାକୁ ଲାଗିଲେ– 'ଦୁଷ୍ଟ, ସେ ନିରୀହ ବିରାଡ଼ିକୁ କାହିଁକି ଡରଉଛୁ ! ମାତା କହନ୍ତି କାହାରିକୁ ମଧ୍ୟ ଡରେଇବା ଭଲ ନୁହଁ । ...'

ଅମିତା ଆପଣା କଥା ପୂରା ନ କରି ହିତାକୁ ସଂବୋଧିତ କରି କହିଲେ– 'ହିତୁ, ମାତା ତୀର୍ଥରୁ କେବେ ଫେରିବେ ! ତୁ କହୁଥିଲୁ ନା ମାଆ ତୀର୍ଥରୁ ଅନେକ କଣ୍ଢେଇ ଆଣି ଶୀଘ୍ର ପହଞ୍ଚିବେ !'

ହିତା ଅମିତାଙ୍କୁ ଭୁଲେଇବା ଲାଗି ପାରାମାନଙ୍କୁ ଦାନା ଦେବାର ଖେଳ କଥା କହିଲା ମାତ୍ର ବାଳିକା ମହାରାଣୀଙ୍କର ମନକୁ ପାଇଲା ନାହିଁ । କହିଲେ– 'ମୁଁ ସେ ଖେଳ ଖେଳିବି ନାହିଁ । ମୁଁ ମାଆଙ୍କ ପାଖକୁ ଯିବି ।'

ହିତା ଅନ୍ୟ କୌଣସି ଖେଳର ସୂଚନା ଦେବାକୁ ମହାମାତ୍ୟଙ୍କର ପୌତ୍ର ଆଦିତ୍ୟକୁ ସମ୍ବୋଧନ କରି କହିଲା– 'ଆଜି କଣ୍ଢେଇମାନଙ୍କର, ରାଜସଭାରେ କୁମାର ଆଦିତ୍ୟ

ମହାସେନାପତି ହେବେ । ... ଆରେ ...' ହିତା ତାର ଚିବୁକ ଉପରେ ଆଙ୍ଗୁଳି ରଖି ଚିନ୍ତା ବ୍ୟକ୍ତ କଲା 'କିନ୍ତୁ, କୁମାର ଆଦିତ୍ୟଙ୍କ ପାଖରେ ଖଡ଼୍ଗ ନାହିଁ ! ମହାସେନାପତି ମହାରାଣୀଙ୍କର ଅଭିବାଦନ କିପରି କରିବେ ?'

ତା'ପରେ ହିତା ଅମିତା ଆଗରେ ଚିନ୍ତିତ ମୁଦ୍ରାରେ ବ୍ୟକ୍ତ କଲା – 'ମହାରାଣୀ, ବିଚାରୀ କଣ୍ଢେଇର ରାଜସଭା ତ ହେଲା ନାହିଁ । କଣ୍ଢେଇ ମହାରାଣୀଙ୍କର ଶୋଭାଯାତ୍ରା ନିମନ୍ତେ ଦାସୀ, ବଣିକ ବିଟ୍‌ଠଳ ପାଖରୁ ହାତୀ ପର୍ଯ୍ୟନ୍ତ ନେଇଆସିଛି ।'

ଅମିତା ନୂଆ କଣ୍ଢେଇର ରାଜସଭାର ଖେଳ ଖେଳିବାକୁ ରାଜି ହୋଇଗଲେ । ସବୁ ବାଳକ ହିତାକୁ ଘେରି ସଭାଭବନକୁ ଆସିଲେ । ସେତେବେଳେ କଳିଙ୍ଗ ରାଜପ୍ରାସାଦର ସଭାଭବନ ଅନେକ ପ୍ରକାର କଣ୍ଢେଇ, ଖେଳନା ଓ ଫଳପୁଷ୍ପରେ ପରିପୂର୍ଣ୍ଣ ରହୁଥିଲା ।

ଅମିତା ନୂଆ କଣ୍ଢେଇକୁ ସିଂହାସନରେ ବସେଇବାକୁ ଯାଉଥିବାବେଳେ ଅଳିନ୍ଦରୁ ଯବନୀର ଡାକରା ଶୁଣାଗଲା – 'ପରମ ଭଗବତୀ ରାଜେଶ୍ୱରୀଙ୍କର ଜୟ ହେଉ ! ଦାସୀକୁ ଅଭୟ ପ୍ରଦାନ କରନ୍ତୁ । ଦାସୀ ନିବେଦନ କରୁଛି ଯେ ଶ୍ରେଷ୍ଠୀମାନଙ୍କ ମଧ୍ୟରେ ଜ୍ୟେଷ୍ଠ ସୌମିତ୍ର ରାଜଦର୍ଶନ ନିମନ୍ତେ ରାଜଦ୍ୱାରରେ ଉପସ୍ଥିତ ହୋଇଛନ୍ତି ।'

ହିତାର ଆଶଙ୍କା ହେଲା, କଣ୍ଢେଇମାନଙ୍କର ରାଜସଭା ଖେଳରେ ମନ ଲାଗିଥିବା ଅମିତାଙ୍କର ମନ ଭାଙ୍ଗିଗଲେ ପୁଣିଥରେ ଭୁଲେଇବା କଠିନ ହେବ । ମାତ୍ର ସେ ଏହା ମଧ୍ୟ ଜାଣିଥିଲା ଯେ ରାଜସଖା ଶ୍ରେଷ୍ଠୀ ସାମନ୍ତ ପ୍ରତାପଙ୍କର ଅନୁମତି ନେଇ ଆସିଛି । ତେଣୁ ତା'ର ରାଜଦର୍ଶନ ଇଚ୍ଛାର ଅବହେଳା ଆଦୌ ଉଚିତ ହେବ ନାହିଁ ।

ହିତା ଅମିତାଙ୍କ ପକ୍ଷରୁ ଯବନୀକୁ ଉତ୍ତର ଦେଲା – 'ରାଜସଖା ଶ୍ରେଷ୍ଠୀଙ୍କୁ ରାଜେଶ୍ୱରୀଙ୍କର ସେବାରେ ଉପସ୍ଥିତ କର !'

ସୌମିତ୍ର ସଭାଭବନରେ ପ୍ରବେଶ କରି ଭୂମି ସ୍ପର୍ଶ କରି ଅମିତାଙ୍କୁ ପ୍ରଣାମ କଲା । ଶ୍ରେଷ୍ଠୀଙ୍କ ଅନୁଗମନ ପୂର୍ବକ ସେବକ ମଞ୍ଜୁଷା ନେଇ ଆସିଥିଲା । ଶ୍ରେଷ୍ଠୀଙ୍କ ପଟକୁ ପିଠି କରି ଅମିତା ବସିଥିଲେ । ସେ ନୂତନ ପୁତ୍ତଳିକାକୁ ସିଂହାସନରେ ବସେଇ ନିଜେ ଆପଣା ହାତରେ ତାକୁ ମୁକୁଟ ପିନ୍ଧେଇ ଦେଉଥିଲେ ।

ଅମିତା ପୁତ୍ତଳିକାକୁ ମୁକୁଟ ପିନ୍ଧେଇ ସାରିବା ପରେ ମଧ୍ୟ ସୌମିତ୍ରକୁ ଦେଖିଲେ ନାହିଁ । ସେ ବାଳକମାନଙ୍କର ରାଜସଭାକୁ ସମ୍ବୋଧିତ କରି କହିଲେ – 'ସମସ୍ତେ ମହାରାଣୀଙ୍କୁ ପ୍ରଣାମ କରନ୍ତୁ ।'

ସେତେବେଳେ ସଭାଭବନରେ ଗୋଟାଏ କୋଣରେ ଠିଆ ହୋଇଥିବା ପ୍ରୌଢ଼ ସୌମିତ୍ରଙ୍କୁ ଅମିତା ଦେଖିଲେ । ସେ ମଧ୍ୟ ସେତେବେଳେ ଆଦେଶାନୁସାରେ ସବୁ ବାଳକମାନଙ୍କ ସହିତ ଭୂମି ସ୍ପର୍ଶ କରି ପ୍ରଣାମ କରୁଥିଲେ । ପ୍ରୌଢ଼ ଶ୍ରେଷ୍ଠୀଙ୍କୁ ମଧ୍ୟ ବାଳକମାନଙ୍କ କ୍ରୀଡ଼ାରେ ସମ୍ମିଳିତ ହୋଇଥିବା ଦେଖି ବାଳିକା ମହାରାଣୀ ପ୍ରସନ୍ନ ହେଲେ । ସୌମିତ୍ର ଗୋଟାଏ କୋଣକୁ ଠିଆ ହୋଇ ବାଳିକା ମହାରାଣୀଙ୍କ କ୍ରୀଡ଼ା କୌତୁକ ଆଦରରେ ଦେଖିବାକୁ ଲାଗିଲେ ।

ଯୁବତୀ ହିତାକୁ ଜଣେ ବୟସ୍କଙ୍କର ଉପସ୍ଥିତିରେ ବାଳବତ୍ ଖେଳିବାରେ ସଂକୋଚ ବୋଧ ହେଉଥିଲା । ମାତ୍ର ମହାରାଣୀଙ୍କ କ୍ରୀଡ଼ା ବିନୋଦ ମଧ୍ୟ ତା'ର କର୍ତ୍ତବ୍ୟ, ସେହି ଦୃଷ୍ଟିରୁ ସେ ସୌମିତ୍ରଙ୍କର ଉପସ୍ଥିତି ଅଦେଖା କରି, ସଂକୋଚରେ ମଥା ନୁଆଁଇ ଗୋଟାଏ ବାଳକର ହାତ ଧରି କଣ୍ଢେଇ ମହାରାଣୀଙ୍କ ସମ୍ମୁଖରେ ଉପସ୍ଥିତ କରାଇ ପ୍ରାର୍ଥନା କଲା– 'ଅନ୍ନଦାତା, ଏ ଦୁଷ୍ଟ ଚୋର । ଏ ନାଗରିକମାନଙ୍କର ଧନ ଲୁଣ୍ଠନ କରି ହତ୍ୟା କରେ । ତାକୁ ନଗରପାଳ ବିଚାର ନିମନ୍ତେ ରାଜଦ୍ୱାରକୁ ପଠେଇଛନ୍ତି ।'

ଅମିତା କଣ୍ଢେଇ ମହାରାଣୀ ମୁଣ୍ଡ ହଲେଇ ଦେଇ ମହାରାଣୀଙ୍କ ପକ୍ଷରୁ ଆଜ୍ଞା ଦେଲେ– 'ମହାରାଣୀଙ୍କର ଆଜ୍ଞା, ଅନ୍ୟର ଅପହରଣକାରୀ, ଭୟ ପ୍ରଦର୍ଶନକାରୀ, ହତ୍ୟାକାରୀର ଧର୍ମସ୍ଥ ଦଣ୍ଡ ବିଧାନ କରନ୍ତୁ ।'

ତା'ପରେ ହିତା ଘୋଷଣା କଲା– 'ସାବଧାନ, ସଭାସଦ୍ ଶୁଣିବା ହୁଅନ୍ତୁ, ବର୍ତ୍ତମାନ ମହାରାଣୀଙ୍କର ସମ୍ମୁଖରେ ନୃତ୍ୟ ପ୍ରଦର୍ଶନ ହେବ ।'

ସୌମିତ୍ରଙ୍କର ଉପସ୍ଥିତି ପ୍ରତି ଦୃଷ୍ଟି ନ ଦେଇ ହିତା ତାର କର୍ତ୍ତବ୍ୟ ନିର୍ବାହ କରିଚାଲିଥିଲା । ସୌମିତ୍ରଙ୍କ ପଟକୁ ପଛକରି ସେ ସିଂହାସନରେ ରହିଥିବା କଣ୍ଢେଇ ଆଗରେ ସାମନ୍ୟ ନାଚି ଭୂମି ସ୍ପର୍ଶ କରି କହିଲା– 'ପରମ ଭଗବତୀ ରାଜେଶ୍ୱରୀଙ୍କର ଜୟ ହେଉ । ଅନ୍ନଦାତା, ଦାସୀ ନର୍ତ୍ତକୀକୁ ପୁରସ୍କାର ପ୍ରଦାନ କରନ୍ତୁ ।'

ଅମିତା ସ୍ୱୀକୃତିରେ କଣ୍ଢେଇ ମହାରାଣୀଙ୍କର ମଥା ହଲେଇଦେଇ କହିଲେ– 'ମହାରାଣୀ ନୃତ୍ୟ ହେତୁ ପ୍ରସନ୍ନ ହେଲେ । ତାକୁ ପୁରସ୍କୃତ କରୁଛନ୍ତି ।' ଆଉ ପାଖରେ ଥିବା ମାଳିଟି ଉଠେଇ ନର୍ତ୍ତକୀ ହାତକୁ ଫିଙ୍ଗି ଦେଲେ ।

ନର୍ତ୍ତକୀକୁ ପୁରସ୍କାର ଦେଇସାରି ତର୍ଜନୀ ଉଠେଇ କଣ୍ଢେଇ ମହାରାଣୀଙ୍କୁ ସମ୍ବୋଧିତ କରି କହିଲା– 'ପରମ ଭଗବତୀ, ରାଜେଶ୍ୱରୀ ରାଜସଭାରେ ନୃତ୍ୟ କରିବେ ନାହିଁ । ଅନ୍ୟଥା ଆଚାର୍ଯ୍ୟକାକା ଓ ମହାସେନାପତି କାକା ରୁଷ୍ଟ ହେବେ । ରାଜେଶ୍ୱରୀ ସମାଜ ସମ୍ମୁଖରେ ନୃତ୍ୟ କରନ୍ତି ନାହିଁ ।'

ଅମିତାଙ୍କର ବାଳସୁଲଭ କଥନ ଶୁଣି ସୌମିତ୍ରର ମୁଖମଣ୍ଡଳ ସହସା ଗମ୍ଭୀର ହୋଇଉଠିଲା । ତାଙ୍କର ଦୃଷ୍ଟି ହିତାର ଦୃଷ୍ଟି ସହ ମିଳିତ ହେଲା । ହିତା ଶ୍ରେଷ୍ଠୀଙ୍କର ନେତ୍ର ସଂକେତ ପାଇ ସଙ୍କୁଚିତ ହୋଇଗଲା; ସତେ ଯେପରି ବାଳିକା ମହାରାଣୀଙ୍କର ଏଭଳି କହିବା ଦାସୀର ଅପରାଧ !

ଅମିତାଙ୍କର ଧ୍ୟାନ ଶ୍ରେଷ୍ଠୀ ଏବଂ ହିତା ଉଭୟଙ୍କ ପ୍ରତି ନ ଥିଲା । ସେ ଆପଣା କ୍ରୀଡ଼ାରେ ବ୍ୟସ୍ତ ଥିଲେ । ସେ ମହାମାତ୍ୟ ଆସନରେ ବସିଥିବା ମହାମନ୍ତ୍ରୀଙ୍କର ପୌତ୍ରକୁ ସମ୍ବୋଧିତ କରି କହିଲେ– 'ଆଚାର୍ଯ୍ୟ, ଏ କଣ୍ଢେଇ ମହାରାଣୀ ଭଲ ନୁହେଁ । ସେ ଭିକ୍ଷୁମାନଙ୍କୁ ଅଧିକ ଭିକ୍ଷା ଦେଉଛି । ଏ ଯଜ୍ଞ ଉତ୍ସବ ପାଳନ କରୁ ନାହିଁ । ତାଙ୍କୁ ପାଲିଙ୍କିରେ ବସେଇ ତୀର୍ଥଯାତ୍ରାରେ ପଠେଇ ଦିଅନ୍ତୁ । ତା'ର ପୁତ୍ରୀ ମହାରାଣୀ ହେବ ଏବଂ ମାତାର ସ୍ମରଣ କଲେ, ମହାରାଣୀ କଣ୍ଢେଇ ଖେଳନା ନେଇଆସିବେ । ଆଉ ମୁଁ ମାତାଙ୍କ ସହିତ କଥା ହେବି ନାହିଁ ।

ଅମିତାଙ୍କର କଥା ଶୁଣି ସୌମିତ୍ରର ନେତ୍ର ବିସ୍ଫାରିତ ହୋଇଉଠିଲା । ସେ ଦୀର୍ଘନିଶ୍ୱାସ ନେଇ ଆନତ ଦୃଷ୍ଟିରେ କିଛିକ୍ଷଣ ଚିନ୍ତା କଲେ ।

ହିତା ବାରମ୍ବାର ଶ୍ରେଷ୍ଠୀର ଦୃଷ୍ଟି ଅନ୍ତରାଳରେ ଶ୍ରେଷ୍ଠୀଙ୍କୁ ଦେଖୁଥାଏ । ଶ୍ରେଷ୍ଠୀର ବିସ୍ମିତ ହେବା ଏବଂ ବିଚାରମଗ୍ନ ହେବା ଦେଖି ସେ ଆତଙ୍କ ଅନୁଭବ କରୁଥାଏ । ସେ ପ୍ରସଙ୍ଗ ପରିବର୍ତ୍ତନ ଉଦ୍ଦେଶ୍ୟରେ ଅମିତାଙ୍କୁ ପ୍ରାର୍ଥନା କଲା– 'ମହାରାଣୀ, ଏ ତ ବେଶ ସୁନ୍ଦର କଣ୍ଢେଇଟିଏ !'

ସୌମିତ୍ର ତୁରନ୍ତ ହାତ ଯୋଡ଼ି ଅମିତାଙ୍କ ନିକଟରେ ନିବେଦନ କଲା । 'ପରମ ଭଗବତୀ ରାଜେଶ୍ୱରୀ, ଅଭୟଦାନ କରନ୍ତୁ । ଚତୁର ରାଜଦାସୀର କଥନ ଯଥାର୍ଥ । ଏ କଣ୍ଢେଇ ଅବଶ୍ୟ ଲକ୍ଷଣଯୁକ୍ତ ଓ ସୁନ୍ଦର । ମାତ୍ର ସେବକ ମହାରାଣୀଙ୍କ ସେବାନିମନ୍ତେ ଆହୁରି ତିନୋଟି ନେଇଆସିଛି ।'

ଶ୍ରେଷ୍ଠୀ ସେବକ ଧରିଥିବା ମଞ୍ଜୁଷାରୁ ଗୋଟାଏ କଣ୍ଢେଇ ବାହାର କରି ନିବେଦନ କଲା– 'ପରମ ଭଗବତୀ, ଏ ଚାଲୁକ୍ୟ ଦେଶର ରାଜକୁମାରୀ । କଳିଙ୍ଗର ରାଜେଶ୍ୱରୀଙ୍କୁ ପ୍ରଣାମ କରିବେ ବୋଲି ଆସିଛନ୍ତି ।

ଶ୍ରେଷ୍ଠୀ ଦ୍ୱିତୀୟ ପୁତ୍ତଳିକା ବାହାର କରି କହିଲେ– 'ଏ ଗୌଡ଼ ଦେଶର ରାଜକୁମାରୀ' ଏବଂ ତୃତୀୟଟିକୁ ଦେଖାଇ କହିଲା ଏ ମଦ୍ର ଦେଶର... । ସେମାନେ ମଧ୍ୟ ମହାରାଣୀଙ୍କୁ ପ୍ରଣାମ କରୁଛନ୍ତି ।' ଏହା କହି ସେ ପୁତ୍ତଳିକାକୁ ସିଂହାସନ ଆଗରେ ନତମସ୍ତକ କରାଇଲେ ।

ଅମିତା କିଛିକ୍ଷଣ ପାଇଁ ସେ ପୁତ୍ତଳିକାମାନଙ୍କୁ ଅନେଇ ରହିଲେ ଏବଂ ତା'ପରେ କୌତୂହଳ ସହକାରେ ପ୍ରଶ୍ନ କଲେ– 'ଏମାନଙ୍କର ମାତାମାନେ କାହାନ୍ତି ? ଏମାନେ କ'ଣ ସେମାନଙ୍କର ମାତାମାନଙ୍କୁ ସ୍ମରଣ କରନ୍ତି ନାହିଁ ?'

ସୌମିତ୍ର ଉଚିତ ଉତ୍ତର କ'ଣ ଦେବେ ଚିନ୍ତା କରୁଥିବା ସମୟରେ ଅମିତା ପୁଣି ପ୍ରଶ୍ନ କଲେ– 'କ'ଣ ଏମାନଙ୍କର ମାତାମାନେ ତୀର୍ଥାଟନ ଓ ତପସ୍ୟା ଲାଗି ଯାଇଛନ୍ତି !'

ଶ୍ରେଷ୍ଠୀ, ବାଳିକା ମହାରାଣୀ ମାତୃବିଚ୍ଛେଦ ହେତୁ ଦୁଃଖିନୀ ବୋଲି ବୁଝିଗଲା । ତାକୁ ମାଉସୀର କଥା ସ୍ମରଣ ହେଲା । ହିତା କହୁଥିଲା– ଯଦି ସେ ମହାରାଣୀଙ୍କୁ ଭୁଲେଇ ସମ୍ଭାଳି ରଖିବ ନାହିଁ ତେବେ ପ୍ରାସାଦ ଓ ନଗରୀ ହାହାକାରରେ ଭରିଯିବ । ଦାସୀ ହିତା ହିଁ ସେ ସ୍ଥିତି ସମ୍ଭାଳି ରଖିଛି ।

ଅମିତା ଶ୍ରେଷ୍ଠୀଙ୍କୁ ପ୍ରଶ୍ନ କଲେ– 'କାକା, ମାତା ତୀର୍ଥାଟନରୁ କେବେ ଫେରି ଆସିବେ !'

ବାଳିକାର ପ୍ରଶ୍ନ ଗୂଢ଼ ଚିନ୍ତାମଗ୍ନ ଶ୍ରେଷ୍ଠୀଙ୍କର ମସ୍ତିଷ୍କର ତନ୍ତୁମାନଙ୍କୁ ଝଂକୃତ କରିଦେଲା । ଏକସଙ୍ଗରେ ଅନେକ ବିଚାର ଜାଗରିତ ହେଲା । ମହାମାତ୍ୟଙ୍କର ଛଳ ବାଳିକା ମହାରାଣୀଙ୍କ ଆଗରେ ପ୍ରକଟିତ ହୋଇଯାଉ ! କିନ୍ତୁ ବାଳିକାର ସାମର୍ଥ୍ୟ ବା କ'ଣ ? କେହି ମହାମାତ୍ୟଙ୍କର କୋପଭାଜନ ହେଲେ ବାଳିକା ମହାରାଣୀ ତାକୁ ରକ୍ଷା କରିପାରିବେ ନାହିଁ । ମହାମାତ୍ୟଙ୍କର ଛଳନାର ଭିତ୍ତିକୁ ଧକ୍କାଦେଇ ଭାଙ୍ଗିଦେଲେ ହୋଇପାରେ ସେ ସ୍ୱୟଂ ତା' ତଳେ ଦବି ପ୍ରାଣ ପର୍ଯ୍ୟନ୍ତ ହରେଇ ବସିବ ।

ଶ୍ରେଷ୍ଠୀ ବିଚାର କରି ମଥାନତ କରି ଉତ୍ତର ଦେଲା– 'ପରମ ଭଗବତୀ ରାଜେଶ୍ୱରୀ ! ଆପଣ ଧୈର୍ଯ୍ୟଧାରଣ କରନ୍ତୁ । ରାଜମାତା ଶୀଘ୍ର ତୀର୍ଥାଟନରୁ ଫେରି ଆସିବେ । ମହାମାତ୍ୟ ଆଚାର୍ଯ୍ୟ ସ୍ୱୟଂ ତାଙ୍କୁ ଡକେଇ ନେବେ ।'

ଅମିତାଙ୍କୁ ଉତ୍ତର ଦେଇସାରି ଶ୍ରେଷ୍ଠୀ ସୌମିତ୍ରର ନେତ୍ର ହିତାର ନେତ୍ର ସହ ମିଳିତ ହେଲା । ହିତାର ଦୃଷ୍ଟିର କାତରତା ଓ ମୌନ ପ୍ରାର୍ଥନାକୁ ଶ୍ରେଷ୍ଠୀ ପଲକମାତ୍ରକେ ବୁଝିଗଲା । ଦାସୀର ନେତ୍ର ପ୍ରାର୍ଥନା କରୁଥିଲେ ... 'ଶ୍ରେଷ୍ଠୀ ଦୟାକରି ମହାରାଣୀଙ୍କର ମାତାଙ୍କ ଲାଗି କାତରତାର ରହସ୍ୟ ଗୋପନ ରଖିବେ !'

ଅମିତାଙ୍କର ଭାବମୁଦ୍ରା ଉଦାସ ହୋଇ ଉଠିଲା । ସେ କହିଲେ– 'ଆଚାର୍ଯ୍ୟ କାକାଙ୍କୁ ମାତାଙ୍କୁ ଡକେଇ ନିଅନ୍ତୁ ବୋଲି କହିଦେବେ ।'

ଅମିତାଙ୍କର ଆଖି ସଭାଭବନ ବାହାରେ ଅଳିନ୍ଦ ଉପରେ ପଡ଼ିଲା ଏବଂ ସେ ଆନନ୍ଦରେ କୁରୁଳି ଉଠି ଡାକିଲେ– 'ବାମନ ତାମ୍ବୁଳ ! ବାମନ ତାମ୍ବୁଳ ଆସିଗଲା ! ତାକୁ ଘୋଡ଼ା କରିବା !'

ବାଳିକା ମହାରାଣୀ ତାଙ୍କ ପାଖରେ ଠିଆ ହୋଇଥିବା ଅନ୍ୟ ଏକ ବାଳିକାର ହାତ ଧରି ଦଉଡ଼ିଗଲେ । ଅନ୍ୟାନ୍ୟ ପିଲାମାନେ ମଧ୍ୟ ଆନନ୍ଦଧ୍ୱନି କରି ତାଙ୍କର ପଛେ ପଛେ ବାହାରି ଆସିଲେ ।

ହିତା ମହାରାଣୀଙ୍କ ସାଙ୍ଗରେ ଯିବାପାଇଁ ବାଳକବାଳିକାଙ୍କୁ ବାଟ ଛାଡ଼ିବାକୁ ଆଡ଼େଇଯାଇ ସିଂହାସନ ନିକଟରେ ଠିଆ ହୋଇ ରହିଲା । ସଭାଭବନର ଦ୍ୱାରଦେଶରେ ଠିଆ ହୋଇଥିବା ବାପୀ ଏବଂ ଅନ୍ୟ ଦାସୀ ମଧ୍ୟ ପିଲାଙ୍କ ପଛରେ ଚାଲିଗଲେ । ଶ୍ରେଷ୍ଠୀଙ୍କର ସମ୍ମୁଖରେ ହିତା ଏକାକିନୀ ରହିଗଲା । ସେ ମଧ୍ୟ ଦ୍ୱାର ଦିଗକୁ ଆଗେଇ ଯାଉଥିଲା ମାତ୍ର ଶ୍ରେଷ୍ଠୀ ସୌମିତ୍ରର ସଂକେତକ୍ରମେ ଅପ୍ରତିଭ ହୋଇ ରହିଗଲା ।

ଶ୍ରେଷ୍ଠୀ ରହସ୍ୟମୟ ଅଥଚ କୋମଳ କଣ୍ଠରେ ହିତାକୁ ସମ୍ବୋଧିତ କରି କହିଲା– 'ତୁମର ପରମ ସୌଭାଗ୍ୟ ଯେ ତୁମକୁ ଦେବୀଙ୍କର ପରମ ଅବତାର ସ୍ୱରୂପିଣୀ ରାଜେଶ୍ୱରୀଙ୍କର ବାଳିକା ସ୍ୱରୂପର ସେବା-ଅବସର ମିଳିଛି । ତମେ ତାଙ୍କର ବିଶ୍ୱାସପାତ୍ରୀ ହୋଇଛ । ତୁମେ ମାତୃବିଚ୍ଛେଦ ଦୁଃଖିନୀ ମହାରାଣୀଙ୍କୁ ସାନ୍ତ୍ୱନା ଦେଉଛ । ତୁମଭଳି ରାଜସେବକଙ୍କର ଦର୍ଶନରେ ପୁଣ୍ୟଫଳ ମିଳିଥାଏ । ରାଜଭକ୍ତ ପ୍ରଜାମାନଙ୍କର ତୁମେ ପରମ ଆଦରଣୀୟା । ପ୍ରଜା ତମର ଏହି ରାଜସେବାର କି ମୂଲ୍ୟ ଦେଇପାରିବ ?' କହି ଶ୍ରେଷ୍ଠୀ ତାର ବାମ କରର ରତ୍ନଜଡ଼ିତ ସୁବର୍ଣ୍ଣ କଙ୍କଣ ଖୋଲି ହିତା ଆଡ଼କୁ ବଢ଼େଇ ଦେଲା ।

ଶ୍ରେଷ୍ଠୀର ଅପ୍ରତ୍ୟାଶିତ ବ୍ୟବହାରରେ ହିତା ରୋମାଞ୍ଚିତା ହୋଇଉଠିଲା । ସଂକୋଚରେ ହାତ ଯୋଡ଼ି କହିଲା– 'ଆର୍ଯ୍ୟସ୍ୱାମୀ, ଦାସୀ କଙ୍କଣ ନେଇ କ'ଣ କରିବ ? ଦାସୀ ପ୍ରତି ଆପଣଙ୍କର ଦୟା ଭାବ ରହିଥାଉ !'

'ଝିଅ, ଆଦରର ପ୍ରତ୍ୟାଖ୍ୟାନ କରିବା ଅନୁଚିତ ।' ଶ୍ରେଷ୍ଠୀ ତାକୁ ବୁଝେଇ ଦେଲେ । ତାଙ୍କର ନେତ୍ରରେ ଆଦର ଏବଂ କଣ୍ଠସ୍ୱରରେ ଅଧିକାରର ଭାବ ଫୁଟି ଉଠୁଥିଲା ।

ହିତା ଭାବିଲା ଶ୍ରେଷ୍ଠୀକୁ ରୁଷ୍ଟ କରିବା ଉଚିତ ହେବ ନାହିଁ । ଯଦି ଶ୍ରେଷ୍ଠୀ ବାଳିକା ମହାରାଣୀଙ୍କ ମୁଖରୁ ରାଜମାତାଙ୍କର ବିଚ୍ଛେଦରେ ଦୁଃଖୀ ହୋଇଥିବା ପ୍ରସଙ୍ଗ ପ୍ରାସାଦର କର୍ମାନ୍ତାଧିଷ୍ଠାୟକ ଯୂଥପ ଅଥବା ମହାମାତ୍ୟଙ୍କୁ କହିଦେବ ... !

ଏହା ଭାବି ହିତାର ଯୋଡ଼ହସ୍ତ ଅଞ୍ଜଳିରେ ରୂପାନ୍ତରିତ ହେଲା । ତଥାପି ମଧ ଦାସୀ ପ୍ରାର୍ଥନା କରି କହିଲା 'ଦାସୀର ସୁବର୍ଣ୍ଣ ପ୍ରାପ୍ତି ଓ ଧାରଣ ଉଭୟର ଅଧିକାର ନାହିଁ । ଏ ଆଭୂଷଣ ଦାସୀର କେଉଁ ପ୍ରୟୋଜନରେ ଆସିବ ?'

ସୌମିତ୍ର ମୁହୂର୍ତ୍ତକ ପାଇଁ ଚିନ୍ତା କଲେ । ଅଧରରେ ସ୍ମିତ ହସ ଖେଳିଗଲା । ସେ ରହସ୍ୟମୟ ସ୍ୱରରେ ଉତ୍ତର ଦେଲେ– 'ଭାଗ୍ୟ ଯାହାକୁ ରାଜେଶ୍ୱରୀଙ୍କର ସ୍ନେହ ଏବଂ ବିଶ୍ୱାସର ପାତ୍ରୀ କରିଛି, ତାର ଭାଗ୍ୟ ଏବଂ ଭବିଷ୍ୟତ କ'ଣ କିଏ କହିପାରିବ ? କୌଣସି କୁଳଦନ୍ତ କୋଉ ଦିନ ତୋ'ଭଳି ଏକ ସୁଲକ୍ଷଣାକୁ ଯେ ବରଣ କରିନେବ ନାହିଁ, କିଏ ଜାଣେ ! ଭାଗ୍ୟର ଲୀଳାରେ ଶୂଦ୍ର ଏବଂ ଦାସ ମଧ ସିଂହାସନ ଆରୋହଣ କରିଥାନ୍ତି । ଭାଗ୍ୟଲେଖ ଲାଗି ରାଜେଶ୍ୱରୀ ପର୍ଯ୍ୟନ୍ତ ଅସହାୟ ହୋଇ ନିର୍ବାସିତ ହୋଇଥା'ନ୍ତି । ଅନ୍ୟର କ୍ରୀଡ଼ା ପୁତ୍ତଳିକା ହୋଇଥା'ନ୍ତି ।'

ସୌମିତ୍ର କହିସାରି କିଛି ସମୟ ଅର୍ଥପୂର୍ଣ୍ଣ ଆଖିରେ ହିତାକୁ ଅନେଇଲା ଏବଂ ଦ୍ୱାର ଦିଶାରେ ଚାଲିଗଲା ।

ହିତାକୁ ଆପଣା ହାତରେ ରତ୍ନଜଡ଼ିତ ସୁବର୍ଣ୍ଣ କଙ୍କଣର ଭାର ଅସହ୍ୟ ମନେ ହେଉଥିଲା । ସେ ମନେ ମନେ ବ୍ୟାକୁଳ ହୋଇ ଉଠୁଥିଲା । ଅନ୍ୟ ଦାସ-ଦାସୀ ଦେଖି କ'ଣ ମନେ କରିବେ, କ'ଣ କହିବେ ? ସେ କଙ୍କଣ ନେଇ କ'ଣ କରିବ କିଛି ବୁଝି ପାରୁ ନ ଥାଏ    କୋଉଠି ନେଇ ଲୁଚେଇ ରଖିବ ? ଅନ୍ୟ କୌଣସି ଉପାୟ ନ ପାଇ ସେ କଙ୍କଣକୁ ବକ୍ଷ ଦେଶରେ ବନ୍ଧା ହୋଇଥିବା କଞ୍ଚୁକୀ ବସ୍ତ୍ରରେ ଲୁଚେଇ ନେଲା ଏବଂ ମହାରାଣୀଙ୍କ ନିକଟକୁ ଚାଲିଗଲା ।

× × × × ×

ରାଜ୍ୟ ଏବଂ ନଗରରେ ଶ୍ରେଷ୍ଠୀ ସୌମିତ୍ରର ରାଜଭକ୍ତି, ଦାନଶୀଳତା ଏବଂ ରାଜଦ୍ୱାରରେ ତାଙ୍କର ପ୍ରଭାବର କୀର୍ତ୍ତି ଦିନୁଦିନ ବଢ଼ି ଚାଲିଥାଏ । ରାଜଦ୍ୱାରରୁ ବିଶେଷ କୃପାକାଂକ୍ଷୀମାନେ ସୌମିତ୍ରର ଦ୍ୱାରକୁ ରାଜଦ୍ୱାରର ମାର୍ଗ ମନେ କରିବା ଆରମ୍ଭ କରିଥିଲେ । ଶ୍ରେଷ୍ଠୀଙ୍କର ଆବାସକୁ କେବଳ ନ୍ୟାୟ ପ୍ରାର୍ଥୀ ନୁହନ୍ତି ଅନ୍ୟାନ୍ୟ ପ୍ରତ୍ୟେକ ବର୍ଗର ଲୋକେ ଆସୁଥିଲେ । ଶ୍ରେଷ୍ଠୀଙ୍କ ନିକଟକୁ ଉତ୍ତର ସୀମାର ନଗରମାନଙ୍କରୁ ଅଶୋକଙ୍କର ସୈନ୍ୟଦଳର ଭୟରେ ଘରଦ୍ୱାର ଭୂମି ଛାଡ଼ି ଲୋକେ ଚାଲି ଆସୁଥିଲେ । ସେମାନେ ଆପଣା ସହିତ କେବଳ ସୁବର୍ଣ୍ଣ ଓ ବହୁମୂଲ୍ୟ ରତ୍ନ ହିଁ ନେଇ ପଳେଇ ଆସୁଥିଲେ । ସେମାନେ କେବଳମାତ୍ର ଭୋଜନ, ବସ୍ତ୍ର ଏବଂ ଅନ୍ୟାନ୍ୟ ଅତ୍ୟନ୍ତ ଆବଶ୍ୟକ ଦ୍ରବ୍ୟ ପାଇଁ ହିଁ ସୁବର୍ଣ୍ଣ ବିକ୍ରୟ କରିଦେବାର ଇଚ୍ଛା କରୁଥିଲେ । ସେଭଳି ଲୋକେ ମଧ ଶ୍ରେଷ୍ଠୀଙ୍କ ପାଖକୁ ଆସୁଥିଲେ ଯେଉଁମାନେ

ଆକ୍ରମଣ ଭୟରେ ଦକ୍ଷିଣକୁ ପଳାୟନ କରିବାକୁ ଚାହୁଁଥିଲେ । ସେମାନେ ଆପଣାର ଘରଦ୍ୱାର, ଜମିବାଡ଼ି, ଗୃହପାଳିତ ପଶୁ ଆଦିଙ୍କୁ ବିକ୍ରୟ କରିଦେଇ ସାଙ୍ଗରେ ସୁବିଧାରେ ନେଇଯିବାକୁ ସୁନା କିଣିବାକୁ ଚାହୁଁଥିଲେ । ଏହି ଉଭୟ ପ୍ରକାର ଲୋକଙ୍କର ଆବଶ୍ୟକତା ପୂରଣ ଶ୍ରେଷ୍ଠୀ କରିପାରୁଥିଲେ ହେଁ ତାର ସବୁ ବ୍ୟବସାୟ କେନ୍ଦ୍ରମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା ଏବଂ ଏହି ଦୁଇପ୍ରକାର ବ୍ୟବସାୟର ଦର ମଧ୍ୟ ଭିନ୍ନ ଥିଲା । ସୁବର୍ଣ୍ଣ ଓ ରତ୍ନ ବିକ୍ରୟକାରୀଙ୍କୁ ମୂଲ୍ୟ ସାମାନ୍ୟ ମିଳୁଥିଲା କାରଣ ଯୁଦ୍ଧ ବିଗ୍ରହର ଆଶଙ୍କା କାଳରେ ସୁବର୍ଣ୍ଣ ଓ ରତ୍ନ କିଣିବାକୁ ଗ୍ରାହକ ନ ଥିଲେ ! ଅନ୍ୟାନ୍ୟ ପଦାର୍ଥ ବିକ୍ରୟ କରି ସୁବର୍ଣ୍ଣ ଓ ରତ୍ନ କିଣିବା ଲୋକଙ୍କୁ ଅତି ଅଧିକ ମୂଲ୍ୟ ଦେବାକୁ ପଡୁଥିଲା କାରଣ ଯୁଦ୍ଧ ବିଗ୍ରହର ଆଶଙ୍କା କାଳରେ ସୁବର୍ଣ୍ଣ ଓ ରତ୍ନର ବିପଣୀ ହେଲେ କେଉଁଠି ଥିଲା ? ଏପରି ଭାବରେ ସୌମିତ୍ର ପାଖକୁ ବିନିମୟ ପାଇଁ ଯିଏ ବି ଆସୁଥିଲା ତାକୁ ଦ୍ରବ୍ୟମୂଲ୍ୟର କିଛି ଅଂଶ ହରେଇବାକୁ ପଡୁଥିଲା ।

ବିନିମୟର ଯୋଗସୂତ୍ରକାରୀ ଭାବରେ ବ୍ୟବସାୟ କରୁଥିବା ଗୋପ, ଅଗନ୍ଧ ଏବଂ ସୁବୀରକୁ ନେଇ ସୌମିତ୍ର ପାଖରେ ପହଞ୍ଚିଥିଲା । ବିଶାଳ କକ୍ଷରେ ବାମ ଓ ଦକ୍ଷିଣ ପଟେ ଶ୍ରେଷ୍ଠୀଙ୍କର କର୍ମଚାରୀମାନେ ଦେବା ନେବାର କେନ୍ଦ୍ର ଖୋଲିଥିଲେ । ଉଭୟଧରଣର ଗ୍ରାହକଙ୍କର ଭିଡ଼ ଥାଏ । ଗୋପ ଏବଂ ତା' ସହିତ ଆସିଥିବା ଲୋକମାନେ ସୌମିତ୍ର ଠାରୁ ପରାମର୍ଶ ନେବାକୁ ଆସିଥିଲେ, ତେଣୁ ସେମାନେ ପ୍ରତୀକ୍ଷା କରୁଥିଲେ ।

ସୌମିତ୍ର ତିନିଜଣଯାକ ଅତିଥିଙ୍କୁ ଉଚିତ ଆସନ ଦେଲେ । ସାଧାରଣ କ୍ରୟ ବିକ୍ରୟ କରୁଥିବା ଲୋକଙ୍କୁ ଭିତର କକ୍ଷକୁ ଡକା ଯାଉ ନ ଥିଲା । ସୁବୀର ସାମନ୍ତ ବଂଶର ହୋଇଥିବା ହେତୁ, ସାହାଯ୍ୟ କାମନା କରି ଆସିଥିଲେ ହେଁ ସମ୍ମାନର ଅଧିକାରୀ ଥିଲା । ସୌମିତ୍ର ତାକୁ କକ୍ଷରେ ପ୍ରବେଶ କରୁଥିବା ଦେଖି ଆପଣା ଆସନରୁ ଓହ୍ଲେଇ ଆସିଲା ଓ ଆପଣା ଭଳି ସମାନ ଆସନ ଦେଇ ପାଖରେ ବସେଇଲା । ଅଗନ୍ଧକୁ ଶ୍ରେଷ୍ଠୀ ଆପଣା ପାଖରେ ବାମ ପଟେ ବସେଇଲା । ଗୋପ ତା' ଆଗରେ ହାତେ ଛାଡ଼ି ଆସନ ଗ୍ରହଣ କଲା । ସେବକମାନେ ସେମାନଙ୍କ ଆଗରେ ନେଇ ସୁଗନ୍ଧ, ତାମ୍ବୂଳ ମଦିରାଦି ରଖି ଆସିଲେ ।

ସୁବୀର ଶ୍ରେଷ୍ଠୀର ପ୍ରତୀକ୍ଷାର ବିଳମ୍ବ ହେତୁ ବ୍ୟସ୍ତ ହୋଇ ସାରିଥିଲା । କହିଲା – 'ଆମେ ଆପଣଙ୍କର ସତ୍କାର ହେତୁ କୃତାର୍ଥ ହୋଇଛୁଁ । ଆମେ ଏଇ ସଂକଟ କାଳରେ ଜ୍ୟେଷ୍ଠଙ୍କର ପରାମର୍ଶ ନେବାକୁ ଆସିଛୁ । ଆପଣ କହନ୍ତୁ ଆମମାନଙ୍କର ରକ୍ଷା କେଉଁପରି ଭାବରେ ହେବ !'

ସୌମିତ୍ର ତୁରନ୍ତ ଉତ୍ତର ଦେଲେ– 'ଯୁଦ୍ଧର ସଂକଟରେ ଦେବତାମାନଙ୍କର ଆଶୀର୍ବାଦ, କଳିଙ୍ଗ ରାଜେଶ୍ୱରୀଙ୍କର ପ୍ରତାପ, ମହାମାତ୍ୟଙ୍କର ବୁଦ୍ଧି, ମହାସେନାପତିଙ୍କର ଶୌର୍ଯ୍ୟ ଏବଂ ପ୍ରଜାମାନଙ୍କର ରାଜଭକ୍ତି ସହାୟକ ହେବ । ସଂକଟ ସମୟରେ ବ୍ରାହ୍ମଣର ତପ ଏବଂ ଜ୍ଞାନ, କ୍ଷତ୍ରିୟର ବାହୁବଳ ଏବଂ ବଣିକର ଦାନଶୀଳତା ସାହାଯ୍ୟ କରିଥାଏ ।'

ଗୋପ ଉତ୍ସାହ ସହକାରେ ସୌମିତ୍ରର ସମର୍ଥନ କଲା । 'ସାଧୁ...ସାଧୁ... ଶ୍ରେଷ୍ଠୀମାନଙ୍କର ଅଗ୍ରଣୀ ଯଥାର୍ଥ କହୁଛନ୍ତି । ଯେ ଯଥାର୍ଥର ଜ୍ଞାତା ସେ ଏହାହିଁ କହିବ ।

ସୁବୀର ଧୀରକଣ୍ଠରେ ସନ୍ଦେହ ପ୍ରକାଶ କଲା– 'ଜ୍ୟେଷ୍ଠ ସତ୍ୟ କହୁଛନ୍ତି, ଯୁଦ୍ଧରେ ତ ମହାମାତ୍ୟ ଓ ମହାସେନାପତି ଅବଶ୍ୟ ରକ୍ଷା କରିବେ । ଆମେ କିନ୍ତୁ ଯୁଦ୍ଧ ହେତୁ ରାଜ କର ପାଇଁ ତ୍ରସ୍ତ ।'

ସୌମିତ୍ର ବିସ୍ମୟ ପ୍ରକାଶ କଲେ– 'କ'ଣ କହୁଛନ୍ତି ସାମନ୍ତ ! ଯୁଦ୍ଧ ପାଇଁ ରାଜକର ତ ଯୁଦ୍ଧ-ବଳି; ଦାନ ପରି ।'

ଅଗନ୍ଧ କହିଲା– 'ଦାନ ତ ଶ୍ରଦ୍ଧା ଓ ସାମର୍ଥ୍ୟ ଅନୁସାରେ ହୋଇଥାଏ । ସମ୍ପତ୍ତିର ଦଶଭାଗରୁ ଆଠ ଭାଗ ଦେବା ପରେ ଧନିକ ପାଖରେ ଆଉ କେଉଁ ସାମର୍ଥ୍ୟ ବାକି ରହିବ ? ସେତେବେଳେ ତା'ର ରକ୍ଷାର ଆବଶ୍ୟକତା ପର୍ଯ୍ୟନ୍ତ ରହିବ ନାହିଁ । ଧନୀର ତିନି କିମ୍ବା ଆଠୋଟି ଶରୀର ତ ନାହିଁ ! ସେ ତା'ର ରକ୍ଷା ନିମନ୍ତେ ଏତେ ମୂଲ୍ୟ କାହିଁକି ଦେବ ? ଜ୍ୟେଷ୍ଠ ରାଜଦ୍ୱାରରେ ଏଥି ନିମନ୍ତେ ପ୍ରାର୍ଥନା କରନ୍ତୁ ।

ସୁବୀର ଅଗନ୍ଧର ସମର୍ଥନ କରି କହିଲା– ଶ୍ରେଷ୍ଠୀମାନଙ୍କର ଅଗ୍ରଗଣ୍ୟ, ଧନୀର ଯଦି ସବୁକିଛି ରାଷ୍ଟ୍ରାୟତ୍ତ ହୋଇଯିବ ତାହେଲେ ଧନିକର କୋଉ କଥାକୁ ରାଷ୍ଟ୍ର ରକ୍ଷା କରିବ ?

ସୌମିତ୍ର ଏ କଥାରେ ଚିନ୍ତିତ ମନେ ହେଲେ । ସେ ଗମ୍ଭୀର ହୋଇ ଉତ୍ତର ଦେଲେ– ମିତ୍ର, ଏହା ଅଧର୍ମ ବୁଦ୍ଧି । ଏଭଳି କଥା ଦ୍ୱିଜଙ୍କୁ ଶୋଭା ଦିଏ ନାହିଁ । ଧନ ତ ରାଜ୍ୟ ଏବଂ ଜନର । ତାହା ରାଜ୍ୟ ଏବଂ ଜନର ଆବଶ୍ୟକତା ପାଇଁ ରହିଛି । ଯେଭଳି ସୂର୍ଯ୍ୟ ପୃଥିବୀରୁ ଜଳ ନେଇ ପୃଥିବୀ ଉପରେ ବର୍ଷା କରିଥାଏ, ସେଇଭଳି ଧନୀର ଧର୍ମ । ଦ୍ୱିଜ ରାଜଭକ୍ତିର ରକ୍ଷାକରିବାକୁ ହିଁ ଆପଣାର ଧର୍ମ ନିର୍ବାହ ମନେ କରେ । ସେହି ତାର ପରମ ଧର୍ମ ।

ଗୋପ ସାଧୁ ସାଧୁ କହି ସୌମିତ୍ରର ସମର୍ଥନ କଲା । ଅଗନ୍ଧ ଏବଂ ସୁବୀର ଦୀର୍ଘ ନିଃଶ୍ୱାସ ପକେଇ ନୀରବ ହେଲେ ।

ସୌମିତ୍ର ସେମାନଙ୍କୁ ଆଶ୍ୱାସନା ଦେଇ କହିଲା – 'ଦେବୀରୂପିଣୀ ମହାରାଣୀଙ୍କର ପ୍ରତାପ ଏବଂ ଆଚାର୍ଯ୍ୟ ମହାମାତ୍ୟଙ୍କର ନ୍ୟାୟରେ ଅନ୍ୟାୟର ଭୟ କେମିତି ରହିବ ? ଏହି ଶରୀରର ଧର୍ମ କେବଳ ରାଜ୍ୟ ଏବଂ ବନ୍ଧୁ ସେବା !'

ସୁବୀର ସାହସ ପାଇ କହିଲା – ଜ୍ୟେଷ୍ଠ, ରାଜାଜ୍ଞା ତ ସବୁରି ଶିରୋଧାର୍ଯ୍ୟ । ଆମେ କେବଳ ରାଜଦ୍ୱାରରୁ ନ୍ୟାୟ ଚାହୁଁଛୁ । ବର୍ତ୍ତମାନ ଆମ ପାଖରେ ଯେଉଁ ଅଳ୍ପକିଛି ଅଛି ତାହା ନିବାସ ଓ ଭୂମି । ଧନୀକୁ ସୁବର୍ଣ୍ଣର ଦଶଭାଗରୁ ଆଠଭାଗ ରାଜକୋଷକୁ ଦେବାର ଆଜ୍ଞା ଅଛି । ଆପଣ ଦେଖନ୍ତୁ ଓ ରାଜପୁରୁଷମାନେ ମଧ ଦେଖନ୍ତୁ । ସୁବୀର ପାଖରେ ସୁବର୍ଣ୍ଣ ନାହିଁ । ରାଜପୁରୁଷ ଯଦି ଭୂମିର ନାହିଁ ନ ଥିବା ମୂଲ୍ୟାଙ୍କନ କରି ଚାଳିଶସହସ୍ର ମୁଦ୍ରା ଦାବି କରନ୍ତି ତେବେ ସୁବୀର କରିବ କ'ଣ ?

ସୌମିତ୍ର ଗୋପକୁ ସମର୍ଥନ ପାଇବା ଆଶାରେ ଦେଖିଲା । – 'ଭୂମି ଗର୍ଭରୁ ତ ଧନ ଓ ସୁବର୍ଣ୍ଣ ଉତ୍ପନ୍ନ ହୁଏ । ଭୂମି ହିଁ ତ ଧନ ! ସୁବର୍ଣ୍ଣ ତ ଧନର ପ୍ରତୀକ ମାତ୍ର । ସୁବର୍ଣ୍ଣ ଉପରେ ରାଜସ୍ୱ ନୁହେଁ, ରାଜସ୍ୱ ଧନର । ଶ୍ରେଷ୍ଠୀ ଅଗନ୍ଧ ଓ ସୁବୀରକୁ ପ୍ରଶ୍ନ କଲା – 'କିନ୍ତୁ ରାଜଦ୍ୱାରରେ ମହାମାତ୍ୟଙ୍କଠାରୁ କେହି ନ୍ୟାୟ ବଞ୍ଚିତ ହୋଇ ରହିଛି କି ?'

ଶ୍ରେଷ୍ଠୀ ପୁଣି ଗୋପକୁ ଦେଖିଲା – 'ସ୍ୱର୍ଣ୍ଣରୁ ଯଦି ଭୂମି ମିଳୁଛି ତାହେଲେ ଭୂମିରୁ ସୁବର୍ଣ୍ଣ ମିଳିବା ଉଚିତ ।

ସୁବୀର ଖିନ୍ନ ସ୍ୱରରେ ଉତ୍ତର ଦେଲା – 'ତା'ହେଲେ ଜ୍ୟେଷ୍ଠ, ଆପଣ ମୋର ଭୂମିର ଏକଭାଗ ବନ୍ଧକ ସୂତ୍ରରେ ଗ୍ରହଣ କରି ମୋତେ ଏ ସଂକଟରୁ ଉଦ୍ଧାର କରନ୍ତୁ ।'

ସୌମିତ୍ର ସଂକୋଚରେ ସ୍ମିତ ହସି ଉତ୍ତର ଦେଲା – 'ଏ ଘରେ ଯାହା କିଛି ଅଛି ତାହା ପ୍ରଥମେ ରାଜସେବା ପାଇଁ ଉଦ୍ଦିଷ୍ଟ । ଏ ସମୟରେ ମୋ ପାଖରେ ଚାଳିଶ ସହସ୍ର ମୁଦ୍ରା କେଉଁଠାରୁ ଆସିବ ! ଯଦି କୌଣସି ସୂତ୍ରରୁ ଆସେ ତେବେ ରାଜାଜ୍ଞା ପୂର୍ତ୍ତି ନିମନ୍ତେ ମୁଁ ସାମନ୍ତଙ୍କର ସେବା କରିପାରିଲେ ପରମ ସନ୍ତୋଷ ଲାଭ କରିବି । ସାମନ୍ତ ଦୟାକରି କିଛି କାଳ ପରେ ବୁଝିବାକୁ ଅନୁରୋଧ ।'

ସୁବୀରକୁ ଉତ୍ତର ଦେଇ ସୌମିତ୍ର ଆସନ ଉପରେ ହାତ ଭରାଦେଇ ଉପଧାନ ଉପରକୁ ଆଉଜି ଆସିଲା । ଅଲକ୍ଷ୍ୟରେ ତାର ହାତରେ ଅଗନ୍ଧର ଉତ୍ତରୀୟର ଅଞ୍ଚଳ ଦବି ରହିଥିବା ଫଳରେ ଗୋପ, ଅଗନ୍ଧ ଏବଂ ସୁବୀର ବିଦାୟ ନେବାକୁ ଠିଆ ହେଲାବେଳେ ଟାଣି ହେଲା ।

ଚତୁର ବୈଶ୍ୟ ଅଗନ୍ଧ ଶ୍ରେଷ୍ଠୀର ସଂକେତ ବୁଝିଗଲା ଏବଂ କିଛି ସମୟ ପରେ ଏକାକୀ ଫେରିଆସିଲା । ସେତେବେଳେ ସୌମିତ୍ର ତାର ଭର୍ତ୍ସନା କଲା । – 'ଏଇ ବୁଦ୍ଧିରେ ତମେ ବାଣିଜ୍ୟ କରୁଛ ନା ? ପ୍ରଥମେ ତୁମେ ଯୁଦ୍ଧର ବଳି-ରାଜସ୍ୱ ବଞ୍ଚେଇବା ଉଦ୍ଦେଶ୍ୟରେ ପୂରା ତିନିଗ୍ରାମ ଭୂମି କ୍ରୟ କରିନେଲ । ସତରେ ଯେମିତି ସୁବର୍ଣ୍ଣକୁ ମାଟିତଳେ ପୋତିଦେଇ ରାଜସ୍ୱ ଅଧିକାରୀଙ୍କ ଆଖିରେ ଧୂଳି ଦେଇପାରିବ । ତା'ପରେ, ଯେତେବେଳେ ଆସିଲ, ଗୋପକୁ ସାଙ୍ଗରେ ନେଇ ଆସିଲ । ତମେ ଜାଣି ନାହଁ ସେ ବୈଶ୍ୟ କୁଳରେ ଜନ୍ମ ହୋଇ ମଧ୍ୟ ନୀଚ । ସେ ମହାମାତ୍ୟଙ୍କର ଗୁପ୍ତଚର । ମହାମାତ୍ୟଙ୍କଠାରୁ କୃପାର ଆଶାରେ ସେ ସ୍ଥାନ ସ୍ଥାନରୁ ତଥ୍ୟନେଇ ମହାମାତ୍ୟଙ୍କ ଆଗରେ ମିଛ ସତ କହିବା ତାର ବୃତ୍ତି । ମୁଁ ତ ସାମନ୍ତ ସୁବୀରଙ୍କୁ ମନା କରିଦେଇ ନାହିଁ ! ସାମନ୍ତ କୁଳର ସେତିକି ଆଦର ତ ଅବଶ୍ୟ କରଣୀୟ ! ତାଙ୍କୁ ପୁଣି ଏକାନ୍ତରେ ଆସିବାକୁ କହିଦେବ ।'

ସୁବୀର ପୁଣିଥରେ ଆସିଲାରୁ ସେ ତାର ଆତିଥ୍ୟ ପୂର୍ବାପେକ୍ଷା ଅଧିକ କଲା ଆଉ ବୁଝେଇ ଦେଲା – 'ଆମ ମଣ୍ଡଳରେ ବାଣିଜ୍ୟ ପାଇଁ ଗୋଟାଏ ଯୋଗାଯୋଗକାରୀ ସୂତ୍ରଧରର କ'ଣ ଆବଶ୍ୟକତା ଅଛି ? ଜାଣୁଛି ଅଧିକ ନୁହେଁ ଚାରିଶତ ଧରଣ (ମୁଦ୍ରା) ଦାବି କରିବ । କିନ୍ତୁ ଆପଣ ବା କାହିଁକି ଚାରିଶତ ଧରଣର କ୍ଷତି ସହିବେ ? ଯେହେତୁ ସାମନ୍ତ ରକ୍ତ ଆପଣ ବୈଶ୍ୟଭଳି ଚିନ୍ତା କରିପାରିଲେ ନାହିଁ ।' ସୌମିତ୍ର ହସିଲା – 'ସାମନ୍ତ, ଚାରିଶତ ମୁଦ୍ରାରେ ଗୋଟାଏ ସାଧାରଣ ପରିବାର ଗୋଟାଏ ବର୍ଷ ପାଇଁ ପ୍ରତିପାଳିତ ହୋଇଯିବ । ଗୋଟାଏ ସୁନ୍ଦର ସୁସ୍ଥ ଦାସୀ ମିଳିଯିବ ।

ସୁବୀର ଚାଳିଶ ସହସ୍ର ମୁଦ୍ରାର ଋଣ ପାଇଁ ପ୍ରାର୍ଥନା କରିବାରେ ସୌମିତ୍ର ଆଶ୍ୱାସନା ଦେଇ କହିଲା – 'କଠିନ କଥା ମାତ୍ର ଯତ୍ନ କଲେ ହୋଇଯିବ ।'

ସୌମିତ୍ର ଚାଳିଶ ସହସ୍ର ଧରଣ ଋଣ ଦେଇ ବିନିମୟରେ ନିଃସଂକୋଚ ସୁବୀରର ସଂପୂର୍ଣ୍ଣ ଭୌତିକ ସଂପତ୍ତି ବନ୍ଧକ ଏବଂ ଋଣ କାଳରେ ଭୂମିର ଆୟର ଅର୍ଦ୍ଧେକ ତଥା ଚକ୍ରବୃଦ୍ଧି ହାରରେ ସୁଧ ମିଶେଇ ଷାଠିଏ ସହସ୍ର ମୁଦ୍ରାର ଋଣପାଇଁ ତାଳପତ୍ର ଲେଖିଦେବାର ପରାମର୍ଶ ଦେଲା ।

ସୁବୀରର ଚକ୍ଷୁ ବିସ୍ମୟ ବିସ୍ଫାରିତ ହୋଇଉଠିଲା । ସେ ଅଧୀର ସ୍ୱରରେ ପ୍ରଶ୍ନକଲା – 'ଏ କ'ଣ ମୋତେ ସାହାଯ୍ୟ ହେଲା ? ଲକ୍ଷ ଲକ୍ଷ ମୂଲ୍ୟର ଭୂମି ମାତ୍ର ଚାଳିଶ ସହସ୍ରରେ ! ଏହାର ଅର୍ଥ ହେଲା ଭୂମିକୁ ତୁମକୁ ସଂକଳ୍ପ କରି ରାଜସ୍ୱ ପୂରା କରିଦେବା । ଅଗନ୍ଧ ସତରେ କେଉଁଭଳି ବିପଦଗ୍ରସ୍ତ କଲା ନାହିଁ ?'

ସୌମିତ୍ର ସୁବୀରର ଅଧୀରତାକୁ ଉପେକ୍ଷିତ କରି ବର୍ତ୍ତମାନ କଳିଙ୍ଗରେ ଭୂମି ବନ୍ଧକ ରଖ୍ ଋଣ ଦେବା ଗର୍ଜୁଥିବା ମେଘ ତଳେ ବଡ଼ି ଶୁଖେଇବା ଭଳି । ଆଜି ଆଉ ଭୂମିର କ'ଣ ମୂଲ୍ୟ ? ଯୁଦ୍ଧର ପରିଣାମ କ'ଣ ହେବ କିଏ ଜାଣେ ! ଚାରି ଛଅ ମାସ ପରେ ଏ ଭୂମି ଆମର ତୁମର ହୋଇଥିବ ନା ଚଣ୍ଡ ଅଶୋକର, କୌଣସି ସାମନ୍ତର ? ସେତେବେଳେ ସୁବୀର ପାଖରୁ ସୌମିତ୍ର ପାଇବ କ'ଣ ? ସୌମିତ୍ର କହିଚାଲିଥାଏ 'ସାମନ୍ତ ଜାଣିଛନ୍ତି, ବ୍ୟବସାୟରେ କେବଳ ଲାଭକ୍ଷତିର ହିସାବ କରାଯାଏ । ମୁଁ ଏକଥା ଲୋଭ କରି କହୁ ନାହିଁ ! ଲୋଭ କରି କ'ଣ କରିବି ? ଏ ସବୁ ଯୁଦ୍ଧ ପରେ କେଜାଣି କା'ର ହେବ, କିନ୍ତୁ ବ୍ୟବସାୟ ତ ରୀତିରେ ହିଁ କରିବାକୁ ହେବ ।'

ସୁବୀର ପୁଣି ଅନୁନୟୀ ସ୍ୱରରେ କହିଲା— ଶ୍ରେଷ୍ଠୀ ଜ୍ୟେଷ୍ଠଙ୍କର ଦାନଶୀଳତା ଓ ଉଦାରତାର କୀର୍ତ୍ତି ଅଛି । ମୁଁ ବର୍ତ୍ତମାନ ବ୍ୟବସାୟ ଲାଗି ଋଣ ମାଗୁ ନାହିଁ । ସଂକଟକାଳରେ ସାହାଯ୍ୟ ମାଗୁଛି । ରାଜକ୍ରୋଧରୁ ପରିତ୍ରାଣ ନିମନ୍ତେ ଶ୍ରେଷ୍ଠୀଙ୍କର ସାହାଯ୍ୟ କାମନା କରୁଛି ।

ସୌମିତ୍ର ଉପେକ୍ଷାରେ ଉତ୍ତର ଦେଲା— 'ଦେଖନ୍ତୁ ମୋର ସୁଧପାଇଁ ଆଦୌ ଲୋଭ ନାହିଁ ମାତ୍ର ଋଣ ହେଲେ ତା ସାଙ୍ଗରେ ସୁଧ ଅବଶ୍ୟ ରହିବ ଯେମିତି ପ୍ରକାଶ ସାଙ୍ଗରେ ଛାୟା । ସାମନ୍ତ ବ୍ୟବସାୟର କଥା ନ ହୋଇ ଯଦି ସହାୟତା କିମ୍ବା ପରାମର୍ଶର କଥା କହିବେ ତେବେ ମୋର ପ୍ରଶ୍ନ ହେବ ରାଜକୋପରୁ ଉଦ୍ଧାର ପାଇଁ କ'ଣ ଋଣ ନେବା ଏକାନ୍ତ ଆବଶ୍ୟକ ? ଭାବନ୍ତୁ ଭାବିଲେ ବଳେ ଉପାୟ ଦିଶିବ ।'

ସୁବୀର ଉତ୍ସାହିତ ହୋଇ କହିଲା— 'ଏପରି ବୁଦ୍ଧି ଆମର କାହିଁ ? ସେଭଳି କିଛି ପରାମର୍ଶ ପାଇଁ ତ ମୁଁ ଶ୍ରେଷ୍ଠୀମାନଙ୍କର ଅଗ୍ରଣୀଙ୍କ ପାଖକୁ ଆସିଛି । ଶ୍ରେଷ୍ଠୀ ଉପାୟ କହି ସାହାଯ୍ୟ କରନ୍ତୁ ।

ସୌମିତ୍ର ସେବକକୁ ଦେଖିଲା । ସେବକ ମଦ୍ୟର ଆଉ ଏକ ଚଷକ ସୁବୀର ସମ୍ମୁଖରେ ରଖିଦେଲା । ଇଚ୍ଛା ନ ଥିଲେ ମଧ୍ୟ ଶ୍ରେଷ୍ଠୀପ୍ରତି ବିନୟ ପ୍ରଦର୍ଶନ ପାଇଁ ସୁବୀର ପାତ୍ର ଉଠେଇନେଲା । ପିଇନେଇ ଆଶାପୂର୍ଣ୍ଣ ଆଖିରେ ଶ୍ରେଷ୍ଠୀକୁ ଅନେଇ ରହିଲା ।

ଶ୍ରେଷ୍ଠୀ ସୁବୀର ଆଡ଼କୁ ଗ୍ରୀବା ନତ କରି ଧୀରସ୍ୱରରେ କହିଲା— 'ଧର୍ମକାର୍ଯ୍ୟ ନିମନ୍ତେ ସଂକଳ୍ପିତ ସଂପତ୍ତି ଉପରେ ରାଜସ୍ୱ ନିଷେଧ କରାଯାଇଛି । ଆପଣ ଆପଣଙ୍କର ସମସ୍ତ ଭୂସଂପତ୍ତି ମହାବୋଧି ବିହାର କିମ୍ବା ଅନ୍ୟ ଦେବସ୍ଥାନ ନାମରେ

ସଂକଳ୍ପିତ କରି ଦିଅନ୍ତୁ । ତାହେଲେ ରାଜପୁରୁଷ ଆପଣଙ୍କ ଠାରୁ କ'ଣ ନେଇ ପାରିବେ ?'

ସୌମିତ୍ରର କଥାରେ ସୁବୀର ମାନସିକ ସ୍ତରରେ ଆହତ ହେଲେ । ସେ ବିସ୍ମିତ ହୋଇ ପଚାରିଲେ– 'କ'ଣ... ? ସଂପୂର୍ଣ୍ଣ ଭୂସଂପତ୍ତି ଦେବସ୍ଥାନ ଅଥବା ସଂଘାରାମକୁ ଅର୍ପଣ କରିଦେବି ? ଶ୍ରେଷ୍ଠୀ, ଆପଣ ମୋତେ ମୋର ରକ୍ଷାର ଉପାୟଭାବରେ କହୁଛନ୍ତି ଯେ ରାଜସ୍ୱର ଚାଳିଶ ସହସ୍ର ମୁଦ୍ରାପାଇଁ ମୁଁ ମୋର ସର୍ବସ୍ୱ ସ୍ୱାହା କରିଦେବି ?'

ସୌମିତ୍ର ସୁବୀର ପଟକୁ ଅଧିକ ନଇଁଆସି ଆଶ୍ୱାସନା ଦେବାକୁ କହିଲା– 'ବୈଶ୍ୟ କେବେହେଲେ ସର୍ବସ୍ୱ ସ୍ୱାହା କରିଦେବାକୁ କହିପାରିବ ନାହିଁ । ମୁଁ ତ ଏ ପର୍ଯ୍ୟନ୍ତ ଏହି ଭୂମି ଅର୍ପଣର ବିଧି ସମ୍ବନ୍ଧରେ ଆପଣଙ୍କୁ କିଛି କହି ନାହିଁ ? ସାମନ୍ତ ଧ୍ୟାନପୂର୍ବକ ଶୁଣନ୍ତୁ । ସାମନ୍ତ ଗ୍ରାମ ଏବଂ ଭୂସଂପତ୍ତି ବୋଧିବିହାର କିମ୍ବା ଅନ୍ୟ କୌଣସି ଦେବସ୍ଥାନ ନିମନ୍ତେ ସଂକଳ୍ପ କରିଦେବେ ଏବଂ ଆପଣଙ୍କର ଜୀବନକାଳ ଭିତରେ ଆପଣ ସ୍ୱୟଂ ତଥା ସାମନ୍ତଙ୍କ ପରେ ଆପଣଙ୍କର ଉତ୍ତରାଧିକାରୀ ଦେବସ୍ଥାନ ପକ୍ଷରୁ ସଂପତ୍ତିର ପ୍ରବନ୍ଧକ ଅଥବା କର୍ମାନ୍ତାଧିଷ୍ଠାୟକ ନିଯୁକ୍ତ ହେବେ । କର୍ମାନ୍ତାଧିଷ୍ଠାୟକ ନିର୍ବାହ ମାତ୍ର ପାଇଁ କିଛି ଧନ ଆପଣା ପାଖରେ ରଖି ଅବଶିଷ୍ଟ ଲାଭ ଦେବତାଙ୍କୁ ଅର୍ପଣ କରିବେ । ସାମନ୍ତ ବୁଝିପାରିଲେ ତ ? ସମ୍ପତ୍ତିରୁ କ'ଣ ଲାଭ ହେଲା ତାହାର ଗଣନା ତ କେବଳ କର୍ମାନ୍ତ ସାମନ୍ତଙ୍କର ପାଖରେ ରହିବ । ସେତେବେଳେ ସାମନ୍ତଙ୍କର ସମ୍ପତ୍ତିର ସ୍ୱାମୀ ରାଜ୍ୟ ନୁହେଁ ଦେବତା; ଅନ୍ତର କେବଳମାତ୍ର ଏତିକି... ହଁ ସେତେବେଳେ ଦେବତାଙ୍କର ପ୍ରଭାବ ସାମନ୍ତଙ୍କର ସମ୍ପତ୍ତିର ରକ୍ଷକ ହେବ । ସାମନ୍ତ ଦେବତାଙ୍କ ନାମରେ, ଦେବତାଙ୍କର ପ୍ରତିନିଧି ଭାବରେ ଆପଣା ସମ୍ପତ୍ତିର ସ୍ୱାମୀ ହୋଇଥିବେ ।'

ସାମନ୍ତ ସୁବୀର ସୌମିତ୍ରର ଚତୁରତାରେ ଚକିତ ହୋଇ କିଛି କାଳ ମୌନ ହୋଇ ଅନେଇ ରହିଲା । ମନେ ମନେ ତଉଲି ଦେଖୁଥାଏ ସତରେ ଏହା କ'ଣ ସମ୍ଭବ ? ଅବିଶ୍ୱାସରେ ସେ ଶଙ୍କା ପ୍ରକାଶ କଲା– 'କ'ଣ ରାଜସ୍ୱ ପୁରୁଷ ଏବଂ ମହାମାତ୍ୟ ଏଥିରେ ଆପତ୍ତି କରିବେ ନାହିଁ ?

ସୌମିତ୍ର ଆପଣା ମସ୍ତକର ଶୁଭ୍ରାୟିତ କେଶରେ ଆଙ୍ଗୁଳି ଚାଳନା କରୁକରୁ ସ୍ୱୀକାର କଲା– 'ଅବଶ୍ୟ ! ସେ ତ ସମସ୍ତ ଧର୍ମକାର୍ଯ୍ୟରେ ଆପତ୍ତି କରିବେ ! କିନ୍ତୁ ମହାରାଣୀଙ୍କ ଆଜ୍ଞାରେ ଧର୍ମ ନିମନ୍ତେ ସଂକଳ୍ପିତ ସମ୍ପତ୍ତିକୁ ଯୁଦ୍ଧ ନିମନ୍ତେ ବ୍ୟବହାର ନ କରିବାକୁ ହିଁ ନୀତି ପ୍ରଣୟନ ହୋଇଛି ।'

ସୁବୀର ବିହ୍ୱଳ ହୋଇ କହିଲା– 'ବର୍ତ୍ତମାନ ରାଜମାତା ମହାରାଣୀ କେଉଁଠି ଅଛନ୍ତି ? ସେ ତ ତୀର୍ଥ ତପ କରିବା ଲାଗି ରାଜ୍ୟରୁ ଅନେକ ଦୂରରେ ଅଛନ୍ତି ଏବଂ ରାଜେଶ୍ୱରୀ ପୁତ୍ତଳିକା ନେଇ ଖେଳୁଛନ୍ତି ବୋଧହୁଏ !'

ଶ୍ରେଷ୍ଠୀ ଚାରିପଟକୁ ଦେଖି ଧୀର କଣ୍ଠରେ କହିଲା– 'ସମର୍ଥ ଲୋକଙ୍କର ଲୀଳା ସମର୍ଥ ଲୋକେ ହିଁ ଜାଣନ୍ତି । ରାଜମାତା ମଧ୍ୟରାତ୍ରରେ ତୀର୍ଥଯାତ୍ରା କଲେ । ଲୋକେ ଏହା ମଧ୍ୟ କହୁଛନ୍ତି ଯେ ରାଜମାତା ଯୁଦ୍ଧଜନିତ ହିଂସା ଲାଗି କ୍ଷୁବ୍ଧ ଏବଂ ସେ ରାଜପ୍ରାସାଦ ଏବଂ ରାଜ୍ୟାଡ଼ମ୍ବର ପ୍ରତି ବିରକ୍ତ ।' ତେଣୁ ଏହି ନଗର ମଧ୍ୟରେ ହିଁ କେଉଁଠାରେ ଏକାନ୍ତ ବାସ କରି ତପ କରୁଛନ୍ତି ମାତ୍ର ତାଙ୍କୁ ପ୍ରଜା ଏବଂ ନଗରର ଅବସ୍ଥା ସମ୍ବନ୍ଧରେ କ'ଣ ଜଣା ! ଯଦି ସମର୍ଥ ଆଚାର୍ଯ୍ୟ ଏବଂ ସାମନ୍ତମାନେ ମହାରାଣୀଙ୍କର ଦର୍ଶନ କରି ପ୍ରଜାଙ୍କର ଅବସ୍ଥା ପ୍ରସଙ୍ଗରେ କହିବେ ... । ସାମନ୍ତ, କିଛି କଲେ– କହିଲେ ସିନା କିଛି ଫଳ ହେବ ? ହାତ ବାନ୍ଧି ବସିଗଲେ ତ କିଛି ହୋଇପାରିବ ନାହିଁ !

ସୁବୀର ଉଭୟ କରାଙ୍ଗୁଳି ଜଡ଼େଇ ଧରି ବହୁବେଳ ପର୍ଯ୍ୟନ୍ତ ଶୂନ୍ୟଦୃଷ୍ଟିରେ କକ୍ଷ ପ୍ରାଚୀରକୁ ଅନେଇ ରହି କହିଲା– 'ଆଚାର୍ଯ୍ୟ କ'ଣ ଦେବ ଆୟତ୍ତ ସମ୍ପତ୍ତିକୁ ରାଜ୍ୟାୟତ୍ତ କରିବାକୁ ସଂକୋଚ କରିବେ ?'

ସୌମିତ୍ର କହିଲା– 'ପ୍ରଜା ତ ଜାଣିଯିବେ ଯେ ଆଚାର୍ଯ୍ୟ ଦେବ-ସମ୍ପତ୍ତି ପର୍ଯ୍ୟନ୍ତର ଆଦର କରନ୍ତି ନାହିଁ । କୃଷକ ତାର କ୍ଷେତରେ ବାଉଁଶଖଣ୍ଡକୁ ବସ୍ତ୍ର ପିନ୍ଧେଇ ହାଣ୍ଡିରେ ମୁଣ୍ଡ ତିଆରି କରି ରକ୍ଷକ ଜଗେଇ ଦିଏ । ତା'ର ମଧ୍ୟ କିଛି ପ୍ରଭାବ ପଡ଼େ । ଆଚାର୍ଯ୍ୟ ଦେବସ୍ୱ ଅପହରଣ କରି ପାପଭାଗୀ ହେବେ ତ ? ଅସହାୟ ଯେତେବେଳେ କିଛି କରିପାରେ ନାହିଁ ସେତେବେଳେ ଦେବତାର ଆଶ୍ରୟ ନିଏ !'

ସୁବୀର ବିଚାର କରି କହିଲା– 'ମୁଁ ସାମନ୍ତ ଜୟନ୍ତଙ୍କ ସାଙ୍ଗରେ କଥା ହେବି ଏବଂ ମୋର ପତ୍ନୀଙ୍କର ମାତୁଳଙ୍କ ସହିତ ମଧ୍ୟ ବିଚାର ବିମର୍ଷ କରିବି । ତା'ପରେ ପୁଣି ଆସି ଆପଣଙ୍କୁ ସାକ୍ଷାତ କରିବି ।'

ସୌମିତ୍ର ତା' କଥାର ସମର୍ଥନ କଲା । 'ତାହାହିଁ ଉଚିତ । ଚାରିଜଣ ଅନୁଭବୀଙ୍କର ମତ ନେବା କଥା । ଏହାହିଁ ମହାପୁରୁଷଙ୍କର ମତ ।'

ସୌମିତ୍ର ଚାହୁଁଥିଲା ଯେ ସାମନ୍ତ ବଂଶର ଲୋକଙ୍କ ଭିତରେ ମହାମାତ୍ୟଙ୍କର ଅନ୍ୟାୟ ଏବଂ ମହାରାଣୀଙ୍କୁ ଫେରାଇ ଆଣିବା ପ୍ରସଙ୍ଗରେ ଆଲୋଚନା ହେଉ ।

# ଦାସୀର ବୁଦ୍ଧି

ରାଜପ୍ରାସାଦର ଦ୍ୱାରଦେଶରେ ପ୍ରହରୀ ରାତ୍ରିର ପ୍ରଥମ ପ୍ରହର ସମାପ୍ତିର ଘୋଷଣା କରି ସାରିଥିଲା । ବାଳିକା ମହାରାଣୀଙ୍କୁ ପଲଙ୍କରେ ଶୁଏଇ ଦିଆ ଯାଇଥିଲା କିନ୍ତୁ ସେ ପର୍ଯ୍ୟନ୍ତ ସେ ନିଦ୍ରାଗତ ହୋଇ ନ ଥିଲେ । ଶୋଇବା ପୂର୍ବରୁ ମାତାଙ୍କର ଶୟନକକ୍ଷକୁ ଯାଇ ଆଶୀର୍ବାଦ ନେବାର ଅଭ୍ୟାସ ଥିବା ହେତୁ ସେ ପଲଙ୍କରେ ଶୋଇ ରହି ବାପୀଠାରୁ ରୋଚକ କଥା ଶୁଣିବା ଭିତରେ ମାତାଙ୍କର ଆସିବା ପଦଶବ୍ଦର ପ୍ରତୀକ୍ଷା କରୁଥିଲେ ।

ମହାରାଣୀ ନନ୍ଦାଙ୍କର ତୀର୍ଥଯାତ୍ରା ପରେ ରାଜମାତାମହୀ ଆପଣା କକ୍ଷରୁ ଆସି ପୌତ୍ରୀକୁ ଆଶୀର୍ବାଦ ଦେଇ ଯାଉଥିଲେ । ସେ ବାଳିକାକୁ ଭୁଲେଇ ରଖିବା ଅଭିପ୍ରାୟରେ କିଛି ସମୟ ପାଇଁ ବାଳିକା ମହାରାଣୀଙ୍କର ପଲଙ୍କରେ ବସି ରହୁଥିଲେ ମାତ୍ର ସ୍ୱୟଂ ବୃଦ୍ଧାବସ୍ଥାର କ୍ଳାନ୍ତି ଓ ବିଶ୍ରାମର ଇଚ୍ଛା ଅନୁଭବ କରି ତାଙ୍କୁ ଶୁଏଇ ଦେବାର ଭାର ହିତା ଓ ବାପୀ ଉପରେ ନ୍ୟସ୍ତ କରି ଆପଣା କକ୍ଷକୁ ଚାଲି ଯାଉଥିଲେ ।

ଶୟନ କକ୍ଷର ପ୍ରତ୍ୟେକ କୋଣରେ ରହିଥିବା ଉଚ୍ଚ ଦୀପଦାନୀମାନଙ୍କର ଦୀପ ଲିଭେଇ ଦିଆ ହୋଇଥିଲା । କେବଳ ମହାରାଣୀଙ୍କର ପଲଙ୍କ ସମୀପରେ ଥୁଆ ଦୀପଟି ଘୋଡ଼ଣୀ ଭିତରେ ରହି ଜଳୁଥିଲା । କକ୍ଷର ଚଟାଣରେ କେବଳ ମାତ୍ର ଏତିକି ପ୍ରକାଶ ଥିଲା ଯେମିତି ଅନ୍ଧାରରେ କେହି ଝୁଣ୍ଟିବ ନାହିଁ । କକ୍ଷ ବାହାରେ ଅଳିନ୍ଦରେ ବସି ଦୁଇଜଣ ବୀଣା ଓ ମୃଦଙ୍ଗ ମନ୍ଦ ସ୍ୱରରେ ବାଦନ କରି ନିଦ୍ରାନିମନ୍ତେ ବାଳିକା ମହାରାଣୀଙ୍କର ଧ୍ୟାନକେନ୍ଦ୍ରିତ କରିବାର ପ୍ରୟାସ କରୁଥିଲେ ।

ବାପୀ ପର୍ଯ୍ୟଙ୍କ ସମୀପରେ ଭୂମିରେ ବସି ନାଗଲୋକର ରାଜକନ୍ୟାଙ୍କର ଅନ୍ୱେଷଣରେ ଯାଇଥିବା ରାଜକୁମାରଙ୍କର ରୋମାଞ୍ଚକର କଥା ଶୁଣାଉଥିଲା । ସେ ଡାହାଣପଟେ ବସି କଥା ଶୁଣ୍‌ଉଥିଲା ଏବଂ ବାମପଟେ ହିତା ମହାରାଣୀଙ୍କ ପକ୍ଷର ହୁଁକାର ଦେଉଥିଲା । ବାପୀ ଏବଂ ହିତା ଦୁହିଁଙ୍କର ଦୃଷ୍ଟି ମହାରାଣୀଙ୍କର ପଲଙ୍କ ଉପରେ କେନ୍ଦ୍ରିତ ହୋଇ ରହିଥିଲା । ହିତା ଗୋଟାଏ ହାତରେ ମହାରାଣୀଙ୍କୁ ଆଉଁଶି ଦେଉଥିଲା ଏବଂ ଅନ୍ୟ ବାହୁ କୋମଳ ରେଶମୀ ତକିଆ ଉପରେ ଭରା ଦେଇ ରହିଥିଲା । ହିତାର ବାହୁର ସ୍ପର୍ଶ ଅମିତା ନିମନ୍ତେ କୋମଳ ରେଶମୀ ତକିଆଠାରୁ ଅଧିକ ସୁଖପ୍ରଦ ଓ ସାନ୍ତ୍ୱନାଦାୟକ ଥିଲା ।

ଅମିତାଙ୍କର ଆଖି ବୁଜି ହୋଇ ଆସିଲା । ବାଳିକା ମହାରାଣୀଙ୍କର ଶ୍ୱାସ ନିଦ୍ରାର ସମଗତିରେ ଚଳୁଥିବା ଦେଖି ବାପୀ ଦ୍ୱାରଦେଶରେ ରହିଥିବା ପ୍ରହରୀକୁ ସଂକେତ ଦେଲା । ପ୍ରହରୀଠାରୁ ସଂକେତ ପାଇ ବୀଣାବାଦନ ବନ୍ଦ ହେଲା । ହିତା ମହାରାଣୀଙ୍କର କଡ଼ ଲେଉଟାଇଦେଇ ଆପଣାର ବାହୁ ଖସେଇ ନେଉଥିବାର ପ୍ରୟାସ କରୁଥିଲା । ଅମିତା ସହସା ଆଖି ଖୋଲି ନେଇ କହିଲେ– 'ହିତୁ ଶ୍ରେଷ୍ଠୀକାକା କହୁଥିଲେ, ଆଚାର୍ଯ୍ୟକାକାଙ୍କୁ କହି ଅମ୍ମାଙ୍କୁ ଚଞ୍ଚଳ ଡକେଇ ନେବେ ।

'ହଁ, ମହାରାଣୀ, !' ହିତା ଅନୁମୋଦନ କଲା ।

'ମୁଁ ଆଚାର୍ଯ୍ୟକାକାଙ୍କ ନିକଟକୁ ଯିବି । ତାଙ୍କୁ କହିବି ସେ ଶୀଘ୍ର ମାଆଙ୍କୁ ଡକେଇ ଦେବେ ।' ଅମିତା କହିଲେ ।

'ହଁ, ମହାରାଣୀ ।' ହିତା ଅମିତାଙ୍କର ପିଠି ଥାପୁଡ଼େଇ ଆଶ୍ୱାସନା ଦେଲା– 'ଏଇନେ ରାଜପଥରେ ଅନ୍ଧାର ଅଛି । ମହାରାଣୀ ଶୋଇପଡ଼ନ୍ତୁ । କାଲି ସୂର୍ଯ୍ୟୋଦୟ ପରେ ତାଙ୍କୁ ଡକେଇ ନେବେ । ବର୍ତ୍ତମାନ ମହାରାଣୀଙ୍କର ବିଶ୍ରାମ ସମୟ ।'

ଅଳିନ୍ଦରୁ ପୁଣିଥରେ ବୀଣା ଓ ମୃଦଙ୍ଗର ମନ୍ଦ ଲୟ ଶୁଣାଗଲା ।

ଅମିତା ଆଗ୍ରହ ପ୍ରକାଶ କଲେ– 'ନା ମୁଁ ନିଜେ ଯିବି । ମୋର ମାତା ନାହାନ୍ତି ମୁଁ ସଖୀ ଲେଖାର ମାତାଙ୍କୁ ସାକ୍ଷାତ କରି ଆସିବି ।

'ହଁ ମହାରାଣୀ', ଅମିତାଙ୍କର ସନ୍ତୋଷ ପାଇଁ ହିତା ସ୍ୱୀକାର କରି ଦେଲା ଓ ତାଙ୍କର ପିଠି ଥାପୁଡ଼େଇ ଦେବାକୁ ଲାଗିଲା । କିଛି କ୍ଷଣ ପରେ ଅମିତାଙ୍କର ଆଖି ବୁଜି ହୋଇ ଆସିଲା । ବାଳିକାକୁ ଗଭୀର ନିଦ୍ରାରେ ଶୋଇ ଯାଇଥିବା ଦେଖି ହିତା ଉଠିଆସି ପଲଙ୍କ ସମୀପରେ ଭୂମିରେ ଶଯ୍ୟା କରି ଶୋଇଗଲା ।

ବାପୀ ଓ ହିତା ମହାରାଣୀଙ୍କର ପଲଙ୍କ ସମୀପରେ ଭୂମିରେ ଶୋଇ ଯାଉଥିଲେ । ନିଦ୍ରିତାବସ୍ଥାରେ ମଧ୍ୟ ସେମାନେ ସତର୍କ ରହୁଥିଲେ । ଅମିତା ସ୍ୱପ୍ନରେ ବି କିଛି କହିଲେ କିମ୍ବା କଡ଼ ଲେଉଟାଇଲେ ସେମାନେ ଚମକି ଉଠି ଥରେ ଦେଖି ନେଉଥିଲେ । କିଛି ସମୟ ପରେ ବାପୀ ମଧ୍ୟ ଉଠିଆସି ଝିଅ ସାଙ୍ଗରେ ଶୋଇଗଲା ।

ବାପୀ ମଧ୍ୟାହ୍ନ ସମୟରୁ ବିଚଳିତ ଥିଲା । ଚିନ୍ତିତ ଥିଲା । ସେ ହିତାର ଅନ୍ୟମନସ୍କ ଓ ବ୍ୟାକୁଳ ଥିବା ଅନୁଭବ କରୁଥିଲା । ମାତା ପକ୍ଷରେ ହିତାର ଏ ବ୍ୟାକୁଳତା ଓ ଅନ୍ୟମନସ୍କତାର କାରଣ ଅନୁମାନ କରିବା କଠିନ ନ ଥିଲା । ଏଭଳି ଦେଖିଲେ ସେ ସବୁବେଳେ ଝିଅ ନଗରକୁ ଯାଇ ଦାସ କଳାକାରକୁ ଭେଟିବ ବୋଲି ଚଞ୍ଚଳ ହେଉଛି ବୋଲି ଆଶଙ୍କା କରୁଥିଲା ଏବଂ ସେ ସେହି ଇଚ୍ଛାରେ ବାହାନା ଖୋଜୁଛି ବୋଲି ଭାବୁଥିଲା । ଏ ପୁଣି ଆପଣାକୁ ସଂକଟାପନ୍ନ

କରିଦେବ । ଝିଅର ଏଭଳି ବ୍ୟାକୁଳତା ଲାଗି ବାପୀର କ୍ରୋଧ ହୁଏ । ସେ ଭାବେ, ଏଭଳି ଉଚ୍ଛୃଙ୍ଖଳ ଝିଅ ସାଙ୍ଗରେ କଥା ପର୍ଯ୍ୟନ୍ତ ହେବ ନାହିଁ, ମାତ୍ର ଆପଣାର ଗର୍ଭଜାତ କନ୍ୟାର ବ୍ୟାକୁଳତାକୁ ଉପେକ୍ଷା କରିଦେବ କେଉଁଭଳି ? ଶଙ୍କା ହୁଏ, ଝିଅର ଶରୀରରେ ପୀଡ଼ା ନ ହେଉ । ଦୁଇଥର ଏକାନ୍ତ ଦେଖି ସେ ହିତା ସହିତ କଥା ହେବାର ଚେଷ୍ଟା କରିଛି ମାତ୍ର କେହି ନା କେହି ଆସିଯିବା କିମ୍ବା କୌଣସି କାର୍ଯ୍ୟ ହେତୁ ହିତାକୁ ଡାକରା ପଡ଼ିବା ଫଳରେ ସେ କଥା ହୋଇପାରି ନାହିଁ ।

ବାପୀ ଝିଅ ସାଙ୍ଗରେ ଶୋଇ ରହିଥିବା ବେଳେ ତାକୁ କିଛି ନ କହି ତା'ର ଶରୀରକୁ ଛୁଇଁ ଦେଖିଲା । ଶରୀରରେ କିଞ୍ଚିତ୍ ଉଷ୍ଣତା ଅନୁଭବ କଲା ସେ । ବାପୀ ରହିପାରିଲା ନାହିଁ; ଝିଅର କାନ ପାଖକୁ ମୁହଁ ନେଇ ଧୀର ଗଳାରେ ପଚାରିଲା – କ'ଣ ହେଲା ତୋ'ର ? ଦେହ ଭଲ ଅଛି ତ ?

ହିତାକୁ ମୌନ ଓ ନିଶ୍ଚଳ ରହିଥିବା ଦେଖି ସେ ତାକୁ ପାଖକୁ ଟାଣିନେଇ ଆଗ୍ରହରେ ପଚାରିଲା – 'କ'ଣ କିଛି ପୀଡ଼ା ଅଛି ?'

ହିତା ମୌନ ରହିଥାଏ, ମାତ୍ର କାଞ୍ଚଲା ବସ୍ତ୍ରରୁ କଙ୍କଣ ବାହାର କରି ମାଆ ହାତରେ ଧରେଇ ଦେଲା । ବାପୀ ହାତରେ ଧରିଥିବା ବସ୍ତୁକୁ ବସ୍ତ୍ରାଭରଣ ଭିତରୁ ବାହାର କରି ଆଣି ଦୀପର ଧୂମାଭ ପ୍ରକାଶରେ ଦେଖିଲା ।

ବାପୀର ଓଠ ବିସ୍ମୟରେ ମେଲା ହୋଇଗଲା । ଦୀର୍ଘଶ୍ୱାସ ନେଲା । ନିଜକୁ ନିଜେ ସମ୍ଭାଳି ନେଇ ସେ ଅସ୍ଫୁଟ ସ୍ୱରରେ ପ୍ରଶ୍ନ କଲା – 'କୋଉଠୁ ପାଇଲୁ ? ଯଦି ପାଇଲୁ ତେବେ ତୁରନ୍ତ କଞ୍ଚୁକୀ ମାମୁଙ୍କର ଜିମା ଦେଲୁ ନାହିଁ କାହିଁକି ? ମରିଯାଉନୁ କାହିଁକି, ଚୋରି ଅପରାଧରେ ଦେହର ଚମଡ଼ା ଉତୁରେଇହବୁ ? ତୁ କ'ଣ କରିବୁ ଯାକୁ ନେଇ । କାହିଁକି ନେଇଆସିଲୁ କୋଉଠୁ ? ଶୋଇଲା ସାପକୁ ହାତରେ ଉଠେଇନେଲୁ ତୁ ? ଏଇନେ ତାକୁ ଫିଙ୍ଗି ଦେଲେ ବି ତା'ର ଦଂଶନରୁ ବଞ୍ଚିପାରିବୁ ନାହିଁ ।' ବାପୀ ବ୍ୟାକୁଳ ହୋଇ କହି ଚାଲିଥାଏ !

ହିତା ତାର ଅବରୁଦ୍ଧ କଣ୍ଠ ଥରାଇ କହିଲା – 'ନଗର ଶ୍ରେଷ୍ଠୀ ଦେଇ ଯାଇଛନ୍ତି ।'

'ମଲୁନି କାହିଁକି ?' କ୍ରୋଧରେ କହିଲା ବାପୀ – 'ଶ୍ରେଷ୍ଠୀ ମହାରାଣୀଙ୍କୁ ଭେଟି ଦେଇଗଲା ଯଦି ତୁ ସେତେବେଳେ କଞ୍ଚୁକୀ ମାମୁଙ୍କୁ ଡାକି ତାରି ହାତରେ ରାଜକୋଷରେ ଜମା ଦେବାକୁ ଯୂଥପଙ୍କ ନିକଟକୁ ପଠେଇଦେବା ଉଚିତ । ପଠେଇ

ଦେଲୁ ନାହିଁ କାହିଁକି ? ତୁ ମରିବୁ ଆଉ ମୋତେ ବି ମାରିବୁ । ଏ ଜୀଇଁଲା ସାପକୁ ଛାତିରେ ଧରି ତୁ ବଞ୍ଚିବୁ କେମିତି ?...'

ହିତା ମାଆର ମୁହଁରେ ହାତଦେଇ କହିଲା– 'ଶ୍ରେଷ୍ଠୀ ମୋତେ ହିଁ ଏହା ଦେଇଛନ୍ତି ଆଉ କାହାକୁ ନୁହେଁ । ସେ କହୁଥିଲେ– ତୋର ରାଜସେବା ଧନ୍ୟ ଏବଂ ଏହା ତୋର ରାଜସେବା ନିମନ୍ତେ ପୁରସ୍କାର ।'

ବାପୀ କିଛି ସମୟ ଝିଅକୁ ନିରେଖି ଚାହିଁ ଆତଙ୍କିତ ସ୍ୱରରେ କହିଲା– 'କେଜାଣି ତୋର ଭାଗ୍ୟରେ କ'ଣ ଅଛି ? ଶ୍ରେଷ୍ଠୀର ମନରେ ଏପରି କଥା ଅଛି ଯଦି ସେ ଏହା ତୋତେ କାହିଁକି ଦେଲା ? ତୋତେ ପୁରସ୍କାର ବା ମୂଲ୍ୟ ଦେବା ଥିଲା ଯଦି ଯୂଥପକୁ ଦେଇଥାନ୍ତା ? ଶ୍ରେଷ୍ଠୀ ଜାଣେ ନାହିଁ ଯେ ରାଜପ୍ରାସାଦର ଦାସ-ଦାସୀଙ୍କର ବିକ୍ରି ହୁଏ ନାହିଁ । ରାଜାଙ୍କ ପାଇଁ ଯୋଗ୍ୟ ଉପହାର ଦାସୀକୁ ଦିଆଯାଏ ନାହିଁ । ଶ୍ରେଷ୍ଠୀ ଜାଣେ ଯେ ତୁ ସ୍ୱର୍ଣ୍ଣ ଧାରଣ କରିପାରିବୁ ନାହିଁ । ଏତେ ମୂଲ୍ୟବାନ ଅଳଙ୍କାର ଧାରଣ କରି ଜଣେ ଶିବିକା ବା ରଥରେ ହିଁ ଯାଇପାରିବ ! କେଜାଣି ଶ୍ରେଷ୍ଠୀର କି ଇଚ୍ଛା ? ଶ୍ରେଷ୍ଠୀ ତୋର ସର୍ବନାଶ କାହିଁକି କରୁଛି ?'

ହିତା କିଛି କ୍ଷଣ ମୌନ ରହି କହିଲା– 'ଏଇନେ ଯାଇ କୂଅରେ ପକେଇ ଦେବି କି ?' ବାପୀ କଙ୍କଣକୁ ଛାତିରେ ଚାପି ଧରି ଉତ୍ତର ଦେଲା– 'ଏହା ଦୁଇ ଚାରୋଟି ଦାସଙ୍କର ମୂଲ୍ୟଠାରୁ ବି ଅଧିକ ହେବ । କେଜାଣି ବିଧାତାର କି ଇଚ୍ଛା ?'

ହିତା କହିଲା– 'ଶ୍ରେଷ୍ଠୀ କହୁଥିଲା ଭଗବାନ୍ ଯାହାକୁ ରାଜେଶ୍ୱରୀଙ୍କର ବିଶ୍ୱାସ ପାତ୍ରୀ କରିଛନ୍ତି । କେଜାଣି ତା ଲାଗି ଧାତାଙ୍କର କ'ଣ ଇଚ୍ଛା ଅଛି ?'

ବାପୀ କହିଲା– 'ଶ୍ରେଷ୍ଠୀ ଏଭଳି କହୁଥିଲା ? ସେ ଚାହୁଁଛି କ'ଣ ? ଶ୍ରେଷ୍ଠୀ ପାଖରେ ଅପାର ଧନ ଅଛି କିନ୍ତୁ ରାଜପ୍ରାସାଦରୁ ଦାସ କିଣା ଯାଇ ପାରିବେ ନାହିଁ । କେଜାଣି ତୋର ଭାଗ୍ୟରେ କ'ଣ ଅଛି ? ଦେଖ, ମୁଁ କହି ରଖୁଛି ନିଜେ ସତର୍କ ରହିବୁ । କୌଣସି ଦୁଃସାହସ କରିବୁ ନାଇଁ । ହାୟ, ଆମ ଭାଗ୍ୟରେ କ'ଣ ଅଛି କେଜାଣି ?'

ଅନ୍ୟଦିନ ମହାରାଣୀ ଶଯ୍ୟାତ୍ୟାଗ କରିବା ପୂର୍ବରୁ ହିତା ଗଭୀର ଚିନ୍ତାମଗ୍ନ ଥିଲା । ଅସଂଲଗ୍ନ ମନେ ହେଉଥିଲା । ବାଳିକା ମହାରାଣୀଙ୍କର ପ୍ରାତଃଭୋଜନର ବ୍ୟବସ୍ଥା କରିସାରିବା ପରେ ତାଙ୍କୁ ଖେଳେଇବା ପାଇଁ ସଭାଭବନକୁ ନେଇଗଲା । ଅମିତା କଣ୍ଢେଇମାନଙ୍କର ବିବାହର ଖେଳ ଖେଳିବାକୁ ଚାହୁଁଥିଲେ । ହିତା ଗୌଡ଼ଦେଶର କଣ୍ଢେଇର ବିବାହ ପ୍ରସ୍ତାବ ଦେଲା ଆଉ ନୂଆ କଣ୍ଢେଇକୁ ବାଳିକାଙ୍କର କୋଳରେ ରଖିଦେଲା ।

ସହସା ଅନ୍ୟମନସ୍କ ହିତାର ଏଭଳି ଭୁଲ ହୋଇଗଲା ଯାହା ଆଗରୁ କେବେ ହୋଇ ନ ଥିଲା । ଅସାବଧାନ ହିତାର ହାତର ଆଘାତ ଲାଗି ହିତା ହାତରୁ କଣ୍ଢେଇଟି ଖସିପଡ଼ିଲା ଓ ପଥର ଚଟାଣରେ ପଡ଼ି ଖଣ୍ଡ ଖଣ୍ଡ ହୋଇଗଲା । ଅମିତାଙ୍କର ଓଠ ରୋଦନ ଆବେଗରେ ଥରିବାକୁ ଲାଗିଲା ।

ହିତା ତୁରନ୍ତ ତାଙ୍କୁ କୋଳକୁ ଉଠେଇନେଇ ଛାତିରେ ଭିଡ଼ି ଧରିଲା ଓ ଆଶ୍ୱାସନା ଦେଇ କହିଲା– 'ଅମ୍ଭେ ମହାରାଣୀ, ଆପଣ ଚିନ୍ତା କରନ୍ତୁ ନାହିଁ । ଦାସୀ ତୁରନ୍ତ ବିଟ୍‌ଠଳ ପାଖକୁ ଯାଇ ୟାଠାରୁ ସୁନ୍ଦର କଣ୍ଢେଇଟିଏ ନେଇ ଆସିବ ।'

ପାଖରେ ଠିଆ ହୋଇ ବାପୀ ସବୁ ଦେଖୁଥାଏ । ଝିଅର ସାହସ ଦେଖି ଆଶଙ୍କାରେ ତାର ଛାତି ଥରି ଯାଉଥାଏ । ସେ ଆଖିର ଇଙ୍ଗିତରେ ଚେତାବନୀ ଦେବାକୁ ହିତାକୁ ଏକଲୟରେ ଅନେଇ ରହିଥାଏ ।

ହିତା ମା'ର ଚାହାଣିକୁ ଅଦେଖା କରି ଦେଇ କହିଲା– 'ମା, ଭଗବତୀ ମହାରାଣୀଙ୍କୁ ଦେଖୁଥିବୁ । ମୁଁ ତୁରନ୍ତ ମହାରାଣୀଙ୍କ ନିମନ୍ତେ ନୂତନ କଣ୍ଢେଇ ନେଇଆସୁଛି ।'

ହିତା ମାଆକୁ କହିବାର କୌଣସି ଅବସର ନ ଦେଇ କଞ୍ଚୁକୀ ଉଦ୍ଧାଳର ଅନ୍ୱେଷଣରେ ଦଉଡ଼ି ଚାଲିଗଲା ।

ନଗରର ବ୍ୟବସ୍ଥା ଦିନୁ ଦିନ ବିଚିତ୍ର ହେଉଥିଲା । ଅନ୍ନ ଓ ବସ୍ତ୍ରର ଦିନୁ ଦିନ ମୂଲ୍ୟବୃଦ୍ଧି ହେଉଥିଲା । କୁଳୀନ ଲୋକେ ଆପଣାର ସମୀଚୀନ ପରିଧାନ ବ୍ୟବସ୍ଥାରେ କଠିନତା ଅନୁଭବ କରୁଥିଲେ । ପରମ୍ପରାଗତ ଏବଂ କ୍ରୀତଦାସଙ୍କୁ ଛାଡ଼ିଦେଲେ ଗୃହସେବା ନିମନ୍ତେ ସେବକ ମିଳୁ ନ ଥିଲେ । ସ୍ୱର୍ଣ୍ଣକାର ଏବଂ ଉତ୍ତମ ବସ୍ତ୍ର ବ୍ୟବସାୟୀ ହାତବାନ୍ଧି ବସି ରହିଥିଲେ । କିନ୍ତୁ ବିପଣୀମାନଙ୍କର ବୁଲିବା ଲୋକଙ୍କ ସଂଖ୍ୟା ବଢ଼ିଥିଲା । ଭଜା ଅନ୍ନ, ମଦ୍ୟ, ମିଷ୍ଟାନ୍ନ ଏବଂ ଫୁଲମାଳା ବିକ୍ରୟକାରୀଙ୍କ ସଂଖ୍ୟା ବଢ଼ିଥିଲା । ନଗରର ଚତୁର୍ଦ୍ଦିଗରେ ସ୍ଥାପିତ ଶିବିରମାନଙ୍କରେ, ବିଭିନ୍ନ ପ୍ରାନ୍ତରୁ ଆସିଥିବା ସୈନିକମାନେ ଯୁଦ୍ଧକ୍ଷେତ୍ରକୁ ଯିବା ପୂର୍ବରୁ କିଛି ସମୟ ନଗରରେ ରହି ମନୋବିନୋଦ କରିବାକୁ ଚାହୁଁଥିଲେ । ଅପରିଚିତଙ୍କ ସାମନାରେ ସେମାନଙ୍କର କୌଣସି ପ୍ରକାର ସଂକୋଚ ନ ଥିଲା । ଯେତେବେଳେ ସେମାନଙ୍କର ପ୍ରାଣର ଚିନ୍ତା ନ ଥିଲା, ସେତେବେଳେ ସେମାନେ ଆଚାର ବ୍ୟବହାରର ଚିନ୍ତା କିପରି କରନ୍ତେ ! ଏମାନଙ୍କର ଉଚ୍ଛୃଙ୍ଖଳତା ହେତୁ ସାଧାରଣ ଲୋକେ ଆତଙ୍କିତ ରହୁଥିଲେ ।

ମହାବଳି ଯଜ୍ଞର ତୋରଣ ନିର୍ମାଣ କରିସାରିବା ପରେ ମୋଦ ମହାରାଣୀଙ୍କର ରାଜ୍ୟାଭିଷେକର ତୋରଣ ନିର୍ମାଣରେ ଲାଗି ଯାଇଥିଲା । ରାଜ୍ୟାଭିଷେକର ତୋରଣ ଖୋଲିବା ପରେ ପରେ ବିଟ୍‌ଠଳ ବିଜୟ-ଅଭିଯାନ ସମାରୋହ ନିମନ୍ତେ ତୋରଣ ନିର୍ମାଣ ପାଇଁ ମିଳିଥିବା ନଗରପାଳଙ୍କର ଆଦେଶ ହେଲା । ଏହା ସମାପ୍ତ ହେବା ପରେ ବିଟ୍‌ଠଳ ତାକୁ ବୈଶାଳୀର ନର୍ତ୍ତକୀର ଶିବିକା ନିର୍ମାଣର ଦାୟିତ୍ୱ ଦେଇଥିଲା ମାତ୍ର ସେ କାର୍ଯ୍ୟ କରିବାକୁ ତାର ମନ ଆଦୌ ନ ଥିଲା । ରାଜପ୍ରାସାଦରେ ମନ୍ଦିରର ଶୃଙ୍ଗାର ପାଇଁ ଧାତୁ-ପାତ୍ରର ନିର୍ମାଣ ପାଇଁ ଯିବା ଏବଂ ହିତାର ସନ୍ନିଧତାରେ କିଛିକାଳ ରହିବାର ଇଚ୍ଛା-ପୂର୍ତ୍ତିର କୌଣସି ଆଶା ରହିଲା ନାହିଁ । ନଗରୀର ବିପଣୀ ଓ ପଥମାନଙ୍କରେ ସହସ୍ର ସଂଖ୍ୟାରେ ସଶସ୍ତ୍ର ବ୍ୟକ୍ତିଙ୍କର ଅଭିମାନରେ ନିତ୍ୟ ଘୂରିବୁଲୁଥିବା ଦେଖି ଏବଂ ବ୍ୟବସାୟୀ ସମୁଦାୟରେ ଗୋପନରେ ଚାଲିଥିବା ଆତଙ୍କମୟ ଆଲୋଚନା ଶୁଣି ସୈନିକ ବେଶ ଧାରଣ କରି ଦାସତ୍ୱରୁ ମୁକ୍ତ ହୋଇଯାଆନ୍ତା କି ବୋଲି ତା'ର ମଧ୍ୟ ଇଚ୍ଛା ହେଉଥିଲା । ନଗର ଓ ଜନପଦ ପାଇଁ ଭୟ ଓ ଆଶଂକାର ମୁକାବିଲା ଅସ୍ତ୍ରଧାରଣ କରି ସାହସ ସହକାରେ କରନ୍ତା ବୋଲି ତା'ର ମଧ୍ୟ ଇଚ୍ଛା ହୁଏ ମାତ୍ର ଯେତେବେଳେ ବି ସେ ମାଉସୀଠାରୁ ଖବର ପାଇ 'ବିଜୟା' ଦୋକାନକୁ ପହଞ୍ଚେ, ହିତା ଆଖି ଲୁହ ଛଳଛଳ କରି ଶପଥ କରେଇ କହେ— ନା' ତୁମେ ପ୍ରତୀକ୍ଷା କର । ମହାରାଣୀ ଫେରିଆସିବେ ଏବଂ ମହାସ୍ଥବିରଙ୍କର ଚମତ୍କାରୀ ଶକ୍ତିରେ ମଗଧର ଚଣ୍ଡରାଜାର ବିନାଶ ହେବ ।

ମୋଦ ଆପଣାର ବିକ୍ଷୁବ୍ଧ ମାନସିକ ଅବସ୍ଥାରେ କ'ଣ କରିବ କିଛି ସ୍ଥିର କରି ପାରୁ ନ ଥିଲା ।

ଅନୁଭବୀ ବିଟ୍‌ଠଳ ପାରିପାର୍ଶ୍ୱିକ ଅବସ୍ଥାରେ ମୋଦର ମନ ଉପରେ ପଡୁଥିବା ପ୍ରଭାବର ଅନୁଭବ କରୁଥିଲା । ସେ ସର୍ବଦା ତାର ଅଧୀନରେ ବନ୍ଧକ ସୂତ୍ରରେ ରହିଥିବା ଚତୁର କଳାକାରକୁ ସନ୍ତୁଷ୍ଟ ରଖିବାର ଚେଷ୍ଟା କରୁଥିଲା । ତାଙ୍କୁ ନାଗରିକଙ୍କ ଭଳି ବସ୍ତ୍ର ଏବଂ ମଦ୍ୟନିମନ୍ତେ କିଛି କାର୍ଷାପଣ ମଧ୍ୟ ଦେଉଥିଲା । ଏବେ ଏବେ କିଛି ଅଧିକ କୃପା ପ୍ରଦର୍ଶନ କରି ସେ ତାକୁ କିଛି ଅଧିକ ଅର୍ଥ ମଧ୍ୟ ପ୍ରଦାନ କରୁଥିଲା ।

ମୋଦ ବିରକ୍ତ ହେଉଥିଲେହେଁ କେତେବେଳେ ବି ସ୍ୱାମୀକୁ ଅପ୍ରସନ୍ନ କରିବାକୁ ଚାହୁଁ ନ ଥିଲା । ସେ କର୍ମଶାଳାରେ ବସି ଶିବିକାରେ ଧୀରେ ଧୀରେ ନିହାଣ ଚଳେଇ କିଛି ଏକ ସୂକ୍ଷ୍ମ କାର୍ଯ୍ୟ କରୁଥିଲା । କର୍ମଶାଳାର ଦ୍ୱାରଦେଶରେ ପାଦଶବ୍ଦ ଶୁଣି ଭାବିଲା, ସ୍ୱାମୀ ହୁଏତ ତା'ର କାର୍ଯ୍ୟ ତଦାରଖ କରିବାକୁ ଆସିଛନ୍ତି ।

କାର୍ଯ୍ୟରେ ତତ୍ପରତା ଓ ତନ୍ମୟଭାବ ଦେଖାଇବା ପାଇଁ ମଥା ତା'ର ଅଧିକ ନୁଆଁଇ ନେଲା ।

'ଶୁଣ ତ !' ଶୁଣି ମୋଦ ମଥା ଉଠେଇ ଦେଖିଲା, ସାମନାରେ ହିତା କଞ୍ଚୁକୀ ପାଳିତ ସାଙ୍ଗରେ ଠିଆ ହୋଇଥିଲା । ସେ ଦେଖିଲାମାତ୍ରକେ ହିତାର ବ୍ୟଗ୍ରତାର ଅନୁମାନ କରିନେଲା ।

ହିତା କହିଲା – 'ମହାରାଣୀଙ୍କର କଣ୍ଢେଇ ଭାଙ୍ଗିଯାଇଛି । ମହାରାଣୀ ଅତ୍ୟନ୍ତ ବ୍ୟଥିତ ।

ହିତା ବିଟ୍ଠଳ ପାଖକୁ କଣ୍ଢେଇ ନେବାକୁ ହିଁ ଆସୁଥିଲା, ଏହା ସମସ୍ତେ ଜାଣୁଥିଲେ ହେଲେ ସେତେବେଳେ ହିତା ଅତି ବ୍ୟସ୍ତ ଓ ବିବ୍ରତ ଜଣା ପଡୁଥାଏ । ମୋଦ ଭାବିଲା, ମାଉସୀର ଦୋକାନକୁ କଣ୍ଢେଇ ଆଣିବାକୁ ଖବର ଦେଇ ପାରିଥାନ୍ତା ମାତ୍ର ହିତା ଏତେ ଦୂର ଦଉଡ଼ି ଆସିଛି କାହିଁକି ?

ମୋଦ କହିଲା – 'ପରମ ଭଗବତୀଙ୍କ ପାଇଁ କଣ୍ଢେଇ କ'ଣ ଊଣା ଅଛି ? ଆରେ ଟିକିଏ ନିଃଶ୍ୱାସ ତ ମାର । ଜଣାପଡୁଛି ଯେମିତି ଦଉଡ଼ି ଆସିଛ । ରାଜପ୍ରାସାଦର ଲୋକଙ୍କର ସତ୍କାର କରିବାର ଅବସର କ'ଣ କେତେବେଳେ ସାଧାରଣ ପ୍ରଜାଙ୍କୁ ମିଳେ ?'

ମୋଦ ଅଣ୍ଟାରେ ଖୋଷିଥିବା କେତୋଟି କାର୍ଷାପଣ ବାହାର କରି କଞ୍ଚୁକୀକୁ ଦେଖିଲା –

'କଞ୍ଚୁକୀ ମାମୁଙ୍କ ପାଇଁ ଏକ ପାନ-ପାତ୍ର ତ ନେଇଆସେ... କି ମାମୁ ସ୍ୱୟଂ ଯାଇ ...'

କଞ୍ଚୁକୀ ପାଳିତର ମୋଦର ଉଦାରତା ସହିତ ପରିଚୟ ଥିଲା । ହିତା ଯେତେବେଳେ ବି ଆସେ ସୁରକ୍ଷା ନିମନ୍ତେ କଞ୍ଚୁକୀ ପାଳିତ କିମ୍ବା ଯବନୀ ଲିହାକୁ ସାଙ୍ଗରେ ନେଇ ଆସେ । ପାଳିତ ମୋଦର କଥା ସରିବା ପର୍ଯ୍ୟନ୍ତ ମଧ୍ୟ ଅପେକ୍ଷା କଲା ନାହିଁ । ସେ ତା'ର ଭଙ୍ଗା ଦାନ୍ତ ଦେଖେଇ ହସିଦେଲା ଆଉ କାର୍ଷାପଣ ପାଇଁ ହାତ ବଢ଼େଇଦେଲା ।

ମୋଦ କଞ୍ଚୁକୀ ହାତକୁ ଏକ ବଡ଼ ସୁରାପାତ୍ରର ମୂଲ୍ୟ, ଚାରି ଛଅ କାର୍ଷାପଣ ବଢ଼େଇ ଦେଲା ।

ପାଳିତ ମଦ୍ୟର ମୂଲ୍ୟ ପାଇବା ପରେ ମୋଦକୁ ଏକ ସଂପନ୍ନ ସ୍ୱାମୀ ଏବଂ ପ୍ରତିଷ୍ଠିତ ନାଗରିକ ପ୍ରତି ପ୍ରଯୁଜ୍ୟ ଅକ୍ଷୟ ସୁଖ ଏବଂ ବୈଭବର ଆଶୀର୍ବାଦ ଦେଇ ସମୀପସ୍ଥ ମଦ୍ୟ ଦୋକାନ ଅନ୍ୱେଷଣରେ ବାହାରିଗଲା ।

ଏକାନ୍ତ ହେଲାରୁ ମୋଦ ହିତାର ପାଖକୁ ଆସି ପଚାରିଲା– 'ଏତେ ବିବ୍ରତ କାହିଁକି ? ମାଉସୀ ହାତରେ ସନ୍ଦେଶ ନ ପଠେଇ ଏତେ ଦୂର ... !'

ବାସ୍ତବିକ ଚଞ୍ଚଳ ପାଦରେ ଚାଲି ଆସିଥିବା ହେତୁ ହିତା ରୁଦ୍ଧଶ୍ୱାସ ହୋଇ କଥା କହି ପାରୁ ନ ଥିଲା । ରହି ରହି କହିଲା, 'ରହ, ଟିକିଏ ନିଃଶ୍ୱାସ ନିଏ, ତା'ପରେ କହିବି ?'

ମୋଦ ସ୍ନେହରେ କହିଲା– 'ଏତେଦୂର ଦଉଡ଼ି ଆସିଲୁ, ମାଉସୀ ହାତରେ ଖବର ଦେଇଥାନ୍ତୁ !'

'ନା, ମୁଁ ଯେଉଁ କାରଣରୁ ଆସିଛି ନିଜେ ଆସିବା ନିହାତି ଆବଶ୍ୟକ ।' ହିତା ଏଣେ ତେଣେ ଅନେଇ ଉତ୍ତର ଦେଲା । ପୁଣି ଦୀର୍ଘଶ୍ୱାସ ନେଇ କହିଲା ଏବଂ ବକ୍ଷ ବନ୍ଧନୀରୁ କଙ୍କଣ ବାହାର କରି ମୋଦ ହାତକୁ ବଢ଼େଇଦେଲା ।

ଅଢ଼େଇ ତିନି ସହସ୍ର ଧରଣରୁ ବି ମୂଲ୍ୟବାନ ରତ୍ନଜଡ଼ିତ କଙ୍କଣ ଦେଖି ମୋଦର ଚକ୍ଷୁ ବିସ୍ମୟ ବିସ୍ଫାରିତ ହୋଇଉଠିଲା । ହିତାର ଦୃଷ୍ଟିରେ ଦୃଷ୍ଟି ନିବଦ୍ଧ କରି ପଚାରିଲା– 'ଏ କ'ଣ ?'' ଏତେ ଧନ ରାଜପ୍ରାସାଦର କୌଣସି ଦାସୀ ପକ୍ଷରେ ମଧ୍ୟ କେଉଁଠି ପଡ଼ିଥିବା ଓ ପାଇବା ସମ୍ଭବ ନୁହେଁ । ଏହି ଧନ ସକାଶେ ହିତା ଉପରକୁ ଅବଶ୍ୟ ସଂକଟ ଆସିବ, ସେହି ଚିନ୍ତାରେ ସେ ବିଚଳିତ ହୋଇ ପ୍ରଶ୍ନ କଲା– ' ଏ କ'ଣ ? ... କୋଉଠୁ ... କେମିତି ?'

'ତମର ଅଦାସ ହୋଇ ପାରିବାର, ତମର ମୁକ୍ତିର ମୂଲ୍ୟ ।' ଆବେଗ ହେତୁ ଦ୍ରୁତଶ୍ୱାସ ହୋଇ ହିତା ରହି ରହି ଉତ୍ତର ଦେଲା ।

ଭୟ ଏବଂ ଚିନ୍ତାର କାରଣରୁ ମୋଦର ଉତ୍ତେଜନା ଶିଥିଳ ହୋଇଗଲା । ସେ ପଚାରିଲା– 'ତେବେ ଏହା ତମକୁ ମିଳିଲା କେଉଁଠାରୁ ?' କିଛି ସମୟ ଭାବି କହିଲା– 'ରାଜପ୍ରାସାଦରେ କେଉଁଠି ପଡ଼ିଥିବା ଅବସ୍ଥାରେ ପାଇଲେ ମଧ୍ୟ ତାହା ରାଜପ୍ରାସାଦର । ଦାସ ଦ୍ୱାରା ପ୍ରାପ୍ତ ଧନ ମଧ୍ୟ ସ୍ୱାମୀର; ତମେ ତାକୁ ପାଖରେ ରଖିଲ କାହିଁକି ?'

ହିତା ମୌନ ହେଲା । ତାକୁ ମୌନ ରହିଥିବା ଦେଖି ମୋଦ ମନେକଲା ଯେ ସେ ମୋର ପ୍ରେମରେ ବିବେକଶୂନ୍ୟ ହୋଇ ପ୍ରାସାଦରୁ ସୁବର୍ଣ୍ଣ କଙ୍କଣ ଚୋରାଇ ଆଣିଛି । ସମ୍ଭବତଃ ଅଧୀର ହୋଇଯାଇଛି । ଏହି କଙ୍କଣ ସହିତ ତାକୁ ନେଇ ପଳାୟନ କରିବାକୁ ହୁଏତ ଅନୁରୋଧ କରିବାକୁ ଆସିଛି । ତେବେ ତାହା କଲେ ମୁଁ କ'ଣ ସଫଳ ହେବି ? ସେ ସେହି କଥା ଭାବୁଥାଏ ସେତେବେଳେ ହିତା କହିଲା–

'ଏ କଙ୍କଣ ତୁମକୁ ଦେଇଗଲେ ତାହା କ'ଣ ବିଟ୍‌ଠଳଙ୍କର ସଂପତ୍ତି ହୋଇଯିବ ?'

'ତାହାହିଁ ନିୟମ । ମୋର ବନ୍ଧକର ଅବଧି ସମାପ୍ତ ହେବା ପରେ ଏବଂ ମୋର ବନ୍ଧକ ଅବଧିର ସୁଧ ଦେବା ପରେ ହିଁ ମୁଁ ମୁକ୍ତ ହୋଇପାରିବି । ଦାସ ନା ଆପଣାର ମୂଲ୍ୟ ନେଇପାରିବ ନା ଦେଇପାରିବ ।'

ହିତା ଚିନ୍ତାରେ ଦୀର୍ଘଶ୍ୱାସ ନେଇ କହିଲା– 'ଶୁଣ, ମୋତେ ରାଜଭକ୍ତିର ପୁରସ୍କାର ସ୍ୱରୂପ ନଗର ଶ୍ରେଷ୍ଠୀ ସୌମିତ୍ର ପ୍ରଦାନ କରିଛନ୍ତି । କଞ୍ଚୁକୀ ଫେରିଲେ ତମେ ତାକୁ କିଛି ସମୟ ପାଇଁ ଭୁଲେଇ ରଖିବ । ମୁଁ ଶ୍ରେଷ୍ଠୀ ସୌମିତ୍ରଙ୍କ ନିକଟକୁ ଯାଉଛି । କଙ୍କଣ ଶ୍ରେଷ୍ଠୀଙ୍କୁ ଫେରେଇ ପ୍ରାର୍ଥନା କରିବି ସେ ଏହା ବଦଳରେ ବିଟ୍‌ଠଳକୁ ତମର ମୂଲ୍ୟ ଦେଇ ଅଦାସ କରାଇବେ ।'

ମୋଦ ମୁଗ୍ଧ ବିସ୍ମୟରେ ହିତାକୁ ଅନେଇ ରହିଥିଲା । ହିତାକୁ ଉଠିବା ଦେଖି ଚେତାବନୀ ଦେବାଭଳି କହିଲା– 'ସାବଧାନ ରହିବ । ଲୋକେ କହନ୍ତି ନଗର ଶ୍ରେଷ୍ଠୀଙ୍କର ନୀତି ଏବଂ ଅଭିପ୍ରାୟ ଭାଗ୍ୟରେଖା ପଢୁଥିବା ଲୋକଙ୍କ ପକ୍ଷରେ ମଧ୍ୟ ଜାଣିବା ସମ୍ଭବ ନୁହେଁ । ଯେଉଁ ଧନ ତୁମେ ଗ୍ରହଣ କରିପାରିବ ନାହିଁ ତାହା ସେ ତମକୁ କିପରି ଦେଲେ ? ସେ ସେତେ ଅବୋଧ ନୁହନ୍ତି !'

'ନା, ନା, ଚିନ୍ତା କର ନାହିଁ ।' ହିତା ମୋଦକୁ ଆଶ୍ୱାସନା ଦେଇ ତାର କର୍ମଶାଳାରୁ ବାହାରି ଆସିଲା ।

ହିତା ଅଧିକ ବିଳମ୍ବ ନ କରିବାର ଅଭିପ୍ରାୟରେ ନଗର ବୀଥୀ ଓ ବିପଣୀରେ ପ୍ରାୟ ଦଉଡ଼ିଲା ଭଳି ଯାଇ ଶ୍ରେଷ୍ଠୀ-ପ୍ରାସାଦରେ ପହଞ୍ଚିଲା । ଦିନର ତୃତୀୟ ପ୍ରହର ଶ୍ରୀମନ୍ତଙ୍କର ବିଶ୍ରାମ ସମୟ । ମାତ୍ର କଳିଙ୍ଗ ପ୍ରତି ଆଗତ ବିପତ୍ତିର କାରଣରୁ ଶ୍ରେଷ୍ଠୀ ଏବଂ ତାଙ୍କର କର୍ମଚାରୀମାନଙ୍କର ବିଶ୍ରାମ କେଉଁଠି ଥିଲା ! ଦିନର ପ୍ରଥମ ଏବଂ ଦ୍ୱିତୀୟ ପ୍ରହରରେ ବ୍ୟବସାୟର ପ୍ରୟୋଜନରେ ଆସିଥିବା ଅନେକେ ପ୍ରୟୋଜନ ହେତୁ ଅବସରର ପ୍ରତୀକ୍ଷା କରୁଥିଲେ । ବିଶ୍ରାମ ସମୟରେ କାର୍ଯ୍ୟ ସୁବିଧାରେ ଓ ଚଞ୍ଚଳ ହୋଇଯିବ ବୋଲି ଆଶା କରି କେତେକ ଆସିଥିଲେ । ବାହାରେ ରହିଥିବା ବାମ ଡାହାଣର ଆସନମାନଙ୍କରେ ମଧ୍ୟ କେତେଜଣ ବସି ରହିଥିଲେ । ବ୍ୟବସାୟ ଚାଲିଥିଲା । ସାମନାରେ ପଡ଼ିଥିବା ଶ୍ରେଷ୍ଠୀଙ୍କର ବିଶାଳ ଗଦି ଉପରେ କେବଳମାତ୍ର ତକିଆଗୁଡ଼ିକ ଥିଲେ; ଶ୍ରେଷ୍ଠୀ ନ ଥିଲେ ।

ହିତା କକ୍ଷକୁ ଆସି ଲୋକଙ୍କୁ ଦେଖିଲା । ସାମନାର ଗଦିଶୂନ୍ୟ ଥିବା ଦେଖି ସେ ଅନୁମାନ କରିନେଲା, ଶ୍ରେଷ୍ଠୀ ହୁଏତ ଭିତର କୋଠରିରେ ଥିବେ କିମ୍ବା ବିଶ୍ରାମ କରୁଥିବେ । ତା' ପ୍ରତି କେହି ଧ୍ୟାନ ଦେଇ ନ ଥିଲେ । କମରପଟି

ଭିଡ଼ି ଓ ହାତରେ ଖଡ୍‌ଗ ଧରି ରହିଥିବା ପ୍ରହରୀମାନେ ମଧ୍ୟ ତାକୁ ଲକ୍ଷ୍ୟ କଲେ ନାହିଁ । ହିତା ପ୍ରହରୀକୁ ସମ୍ବୋଧନ କରି କହିଲା– 'ନଗରଶ୍ରେଷ୍ଠୀ କେଉଁଠି ଅଛନ୍ତି ? ଦାସୀ ତାଙ୍କର ଦର୍ଶନ କରିବାକୁ ଆସିଛି ।'

ପ୍ରହରୀ ତା'ର ଅର୍ଦ୍ଧପକ୍ୱ ଗୁଣ୍ଡୁଚିମୂଷାର ଲାଙ୍ଗୁଡ଼ ଭଳି ନିଶ ଆଉଁଶି, ପାଟିରେ ଥିବା ଗୁଆ ପାଇଁ ବିକୃତ ଓ ଅବଜ୍ଞାର ସ୍ୱରରେ ଉତ୍ତର ଦେଲା... 'ବାଃ, ନଗର ଶ୍ରେଷ୍ଠୀଙ୍କୁ ଭେଟିବ । ତୋର ଯାହା କିଛି ବି ଦେବାନେବା ଅଛି କର୍ମଚାରୀ ବା ଲେଖକଙ୍କ ସାଙ୍ଗରେ କଥା କର !' ପ୍ରହରୀ ଉଚ୍ଚ ମଞ୍ଚ ଉପରେ ବସିଥିବା କର୍ମଚାରୀମାନଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ ଜଣାଇଦେଲା ।

ହିତା କହିଲା– 'ମୋର ଦେବାନେବାର ପ୍ରୟୋଜନ ନାହିଁ । ମୁଁ ରାଜପ୍ରାସାଦର ଦାସୀ' ସେ ରାଜକୀୟ ଦାସୀ ହୋଇଥିବାର ଗର୍ବ ପ୍ରଦର୍ଶନ କଲା– 'ମୋ ନାଁ ହିତା ।'

ହିତାକୁ ଅଧିକ କହିବାକୁ ପଡ଼ିଲା ନାହିଁ । ପ୍ରହରୀର ମୁଖମଣ୍ଡଳରେ ଆଦର ଓ ଆତଙ୍କର ମିଶ୍ରଭାବ ଖେଳିଗଲା । ତାର ହାତ ଅଞ୍ଜଳିବଦ୍ଧ ହୋଇଗଲେ । ନଗରର ଲୋକେ ବାଳିକା ମହାରାଣୀଙ୍କର ଶୋଭାଯାତ୍ରା ସମୟରେ ତାଙ୍କର ଚାମରଧାରିଣୀ ଦାସୀକୁ ହସ୍ତୀପୃଷ୍ଠରେ ଦେଖିଥିଲେ । ପ୍ରହରୀ ଆଦରରେ ନତମସ୍ତକ ହୋଇ ତୁରନ୍ତ ସୂଚନା ଦେବାକୁ ଚାଲିଗଲା ।

ସୌମିତ୍ର ଜାଣେ ଯେ ଯେଉଁ କଙ୍କଣ ସେ ହିତାକୁ ଦେଇଛି ତାହା ଅବଶ୍ୟ ଦିନେ ତାକୁ ତା'ର ପ୍ରାସାଦ ପର୍ଯ୍ୟନ୍ତ ଟାଣିଆଣିବ । ତେବେ ତାହା ଏତେ ଶୀଘ୍ର ହେଲା ବୋଲି ସେ ବିସ୍ମିତ ହେଲା । ସେ ହିତାକୁ ଭିତରକୁ ଡକେଇ ନେଲା ।

ଶ୍ରେଷ୍ଠୀ ରାଜେଶ୍ୱରୀଙ୍କର ଦାସୀର ସମ୍ବାଦ ଏକାନ୍ତରେ ଶୁଣିପାରିବା ଲାଗି ପାଖରେ ଥିବା ଦାସ, ସମୀପସ୍ଥ ଲେଖକ ପର୍ଯ୍ୟନ୍ତଙ୍କୁ ବାହାରକୁ ଯିବା ପାଇଁ ନିର୍ଦ୍ଦେଶ ଦେଲା । ଶ୍ରେଷ୍ଠୀ ସ୍ୱୟଂ ଗଦିର ଗୋଟାଏ ପଟକୁ ଘୁଞ୍ଚି ଆସିଲା ଏବଂ ରାଜଦାସୀକୁ ସମୀପରେ କାଷ୍ଠାସନରେ ବସେଇ ଆଦରରେ ତା' ପଟକୁ ନଇଁଆସିଲା ।

ହିତା ପ୍ରାର୍ଥନା କଲା– 'କୃପାଳୁ ସ୍ୱାମୀ, ରତ୍ନଜଡ଼ିତ ଏ କଙ୍କଣ ମୋ ପାଖରୁ ନେଇଯାଆନ୍ତୁ ଏବଂ ସେହି ମୂଲ୍ୟରେ ଜ୍ୟେଷ୍ଠୀ ବିଟ୍‌ଠଳଙ୍କର ବନ୍ଧକରୁ କଳାକାର ମୋଦକୁ ମୁକ୍ତ କରାଇ ଦିଅନ୍ତୁ । ସେଥିରେ ଦାସୀ ଅନୁଗୃହୀତ ହେବ ।

ଶ୍ରେଷ୍ଠୀ କାନପଟିରେ ହାତ ଦେଇ, ବିଚାରପୂର୍ଣ୍ଣ ମୁଦ୍ରାରେ ସହାନୁଭୂତିରେ ହିତାର କଥା ଶୁଣି ସାହାଯ୍ୟ ଦେବାର ଇଚ୍ଛା ପ୍ରକାଶ କରିବାକୁ ପଚାରିଲା– 'ବିଟ୍‌ଠଳ

କେତେ ବର୍ଷ ପୂର୍ବେ କେତେ ଧନ ଦେଇ କେତେ ବର୍ଷପାଇଁ ମୋଦକୁ ବନ୍ଧକ ରଖିଛି ? ବିଟ୍‌ଠଳ ମୋଦପ୍ରତି କେଉଁ ଭଳି ବ୍ୟବହାର କରୁଛି ? ମୋଦ ଅଦାସ ହେବା ପରେ ଶୂରସେନ ଫେରିଯିବ ନାହିଁକି ? ଯଦି ଫେରିବ ନାହିଁ ତେବେ ହିତା ରାଜପ୍ରାସାଦର ଦାସୀ ହୋଇଥିବା ହେତୁ ପ୍ରାସାଦରେ ହିଁ ବାନ୍ଧି ହୋଇ ରହିଥିବ... ଆଦି ଆଦି ...'

ହିତା ଲୁହ ପୋଛି କହିଲା— 'ମହାରାଣୀ ଅଭୟ ପ୍ରଦାନ କରିଛନ୍ତି । ସେ ତାଙ୍କର ପ୍ରତ୍ୟାଗମନର ପ୍ରତୀକ୍ଷା କରୁଛି ।'

ଶ୍ରେଷ୍ଠୀ ସବୁ ଶୁଣି ସହାନୁଭୂତିରେ ବୁଝେଇଲା— 'ତୋ'ର ରାଜସେବା ପାଇଁ କଙ୍କଣର ମୂଲ୍ୟ କିମ୍ବା ଆବଶ୍ୟକ ହେଲେ ତା'ଠାରୁ ଅଧିକ ଦେବା ମଧ କଠିନ ହେବ ନାହିଁ । ତେବେ ବିଟ୍‌ଠଳ କ'ଣ ନେଇ ବନ୍ଧକ ମୁକ୍ତ କରିବ ତାହା କେବଳ ତାକୁ ଜଣା । ସେ କମ ଲୋଭୀ ନୁହେଁ । ଶୂରସେନର ସେଇ ଶ୍ରେଷ୍ଠୀ ଅସୁବିଧାରେ ପଡ଼ି ଅଢ଼େଇ ସହସ୍ର ଧରଣ ନେଇ ମୋଦ ଭଳି କଳାକାରକୁ ବନ୍ଧକ ଦେଇଯାଇଛି କିନ୍ତୁ ତା'ଠାରୁ ଲାଭ ପାଇବାର ସମୟ ବିଟ୍‌ଠଳ ପାଇଁ ବର୍ତ୍ତମାନ ଆସିଛି । ମୋଦ କ'ଣ ଜୀବନରେ ଆଠ ଦଶ ଗୋଟି ମୂର୍ତ୍ତି ହିଁ ଗଢ଼ିବ ? ଦାସ ଦାସୀଙ୍କର ମୂଲ୍ୟ ପଶୁମାନଙ୍କ ଭଳି ଶରୀରର ମାଂସର ତଉଲରେ ନିର୍ଦ୍ଧାରିତ ହୁଏ ନାହିଁ । ଦାସର ମୂଲ୍ୟ ତା'ର ଶ୍ରମଶକ୍ତି ଏବଂ କୌଶଳ ଚାତୁର୍ଯ୍ୟର ବିଚାରରେ ଲାଭର ସମ୍ଭାବନା ଦୃଷ୍ଟିରୁ ନିର୍ଦ୍ଧାରିତ ହୋଇଥାଏ । ଯଦି ମୋଦର ହାତ କଟିଯାଏ ବା ସେ ଅକର୍ମଣ୍ୟ ହୋଇଯାଏ ତେବେ ବିଟ୍‌ଠଳ ତାକୁ ମାତ୍ର ଶହେ ଧରଣରେ ବି ଛାଡ଼ିଦେବ ।'

ଶ୍ରେଷ୍ଠୀ ସାନ୍ତ୍ୱନା ଦେବା ଭଳି କହିଲା— ମୁଁ ତୋ'ର ସନ୍ତୋଷ ନିମିତ୍ତ ମୋଦକୁ ମୁକ୍ତ କରିବା ପାଇଁ ବିଟ୍‌ଠଳକୁ ତା'ର ଦାବି ଅନୁରୂପ ଧନ ଦେବାକୁ ପ୍ରସ୍ତୁତ ହେଲେ ହେଁ କ'ଣ ହେବ ? ତା'ର ଅଦାସ ହେବା ମାତ୍ରକେ ଆଚାର୍ଯ୍ୟଙ୍କର ରାଜପୁରୁଷ ତାକୁ ସୈନିକ ସେବାନିମନ୍ତେ ନେଇଯିବେ । ସେଥିରୁ ତାକୁ କିଏ ଉଦ୍ଧାର କରିପାରିବ ? ସ୍ୱୟଂ ମହାରାଣୀ ତାଙ୍କ ହାତରେ ଅତିଷ୍ଠ ହେଉଛନ୍ତି । ମହାରାଣୀ କିଭଳି ଗତକାଲି ମାତାଙ୍କୁ ସ୍ମରଣ କରି ବିକଳ ହେଉଥିଲେ ...' ଶ୍ରେଷ୍ଠୀ ଆପଣାର ଉତ୍ତରୀୟ ବସ୍ତ୍ରରେ ଆଖି ପୋଛି ନେଲା ।

ହିତା ଚିନ୍ତା ବ୍ୟକ୍ତ କଲା— 'ଆଚାର୍ଯ୍ୟକାକା ତ କହୁଥିଲେ, ରାଜମାତା ଚଞ୍ଚଳ ତୀର୍ଥଯାତ୍ରାରୁ ପ୍ରତ୍ୟାବର୍ତ୍ତନ କରିବେ ।'

ହିତା ପାଖକୁ ନଇଁଆସି ଶ୍ରେଷ୍ଠୀ ରହସ୍ୟମୟ ସ୍ୱରରେ ବୁଝେଇ ଦେଲା— 'ବାଳିକା ମହାରାଣୀଙ୍କୁ ଆଉ କ'ଣ କହି ଭୁଲେଇ ହେବ ? ରାଜମାତାଙ୍କୁ ଆଚାର୍ଯ୍ୟ

ଶୀଘ୍ର ଡକାଇବେ, କାହିଁକି ? ତାହେଲେ ତାଙ୍କର ଶାସନ ଚଳିବ କେମିତି ? ... ବ୍ରାହ୍ମଣର କୂଟନୀତିକୁ କେହି କଦାପି ବୁଝିପାରିବେ ନାହିଁ । ତୁ କ'ଣ ଶୁଣିନୁ, ମଗଧ ସମ୍ରାଟ ନନ୍ଦଙ୍କର କଥା, ବ୍ରାହ୍ମଣ ମନ୍ତ୍ରୀ ଚାଣକ୍ୟ କେମିତି ତାଙ୍କର ସିଂହାସନ ନେଇ ଶୂଦ୍ରକୁ ଆଣି ରାଜା କରିଦେଲା । ବ୍ରାହ୍ମଣ ତ୍ୟାଗର ଆଡ଼ମ୍ବର କରେ ମାତ୍ର ଇହଲୋକ ଏବଂ ପରଲୋକର ଶାସନକୁ ମଧ ଆପଣା ଅକ୍ତିଆରରେ ରଖିବାକୁ ଚାହେଁ । ଧନମଦଠାରୁ ଶାସନମଦ ଅଧିକ ତୀବ୍ର । ବିଚାରୀ କଣ୍ଢେଇ ନେଇ ଖେଳିବା ବୟସର ବାଳିକା ମହାରାଣୀଙ୍କର ସାମର୍ଥ୍ୟ ବି କେତେ ହେବ !

ହୃଦୟ ଥରିଯାଉଛି ଭାବିଦେଲା ବେଳକୁ । କେଜାଣି କ'ଣ ହେବ ? ବାଳିକା ମହାରାଣୀ ତ ଆଗ୍ରହ କରି ଆଦେଶ ପର୍ଯ୍ୟନ୍ତ ଦେଇପାରିବେ ନାଇଁ । ଏତେବେଳେ କେବଳ ଦେବକୃପା ହିଁ କଳିଙ୍ଗକୁ ରକ୍ଷା କରିପାରିବ । ହଁ, ଯଦି ବାଳିକା ମହାରାଣୀ ହଠ କରି ବସିବେ ତେବେ ମହାମାତ୍ୟ ତାଙ୍କୁ କିପରି ମୌନ କରେଇ ପାରିବେ ? ଭଦ୍ରେ, ମହାରାଣୀଙ୍କୁ କେବଳ ମାତ୍ର ତୁ ହିଁ ମୌନ କରି ରଖି ପାରିବୁ ! ...'

ଶ୍ରେଷ୍ଠୀ ପ୍ରସଙ୍ଗ ବଦଳେଇ କହିଲା– 'ଅବସର ଆସିଲେ ମୋଦ୍ୱାରା ଯାହା ହୋଇପାରିବ ମୁଁ ତମ ପାଇଁ ଅବଶ୍ୟ କରିବି ତେବେ ତମର ଅଦାସୀ ହେବା ଯାଏ କୌଣସି ଲାଭ ହେବ ନାହିଁ । ମୋଦକୁ ମଧ ରାଜାଜ୍ଞା ହିଁ ମୁକ୍ତ କରି ପାରିବ ।

ହିତା ଅଧୀର ଭାବେ ବଦ୍ଧାଞ୍ଜଳି ହୋଇ ପ୍ରାର୍ଥନା କଲା– 'ସ୍ୱାମୀ, ଉପାୟ କହନ୍ତୁ ।'

ଶ୍ରେଷ୍ଠୀ ଧୀର ଅଥଚ ଦୃଢ଼ କଣ୍ଠରେ କହିଲା– 'ଏଭଳି ଉପାୟ କହିବି ଯେମିତି ରାଜମାତାଙ୍କର ଆସିବା ଦିନ ହିଁ ମୋଦ ବନ୍ଧନମୁକ୍ତ ହେବ ଏବଂ ରାଜମାତା ତୋତେ ଅଦାସୀ କରିବେ । ମୁଁ ଦାସୀ ହାତରେ ତୋ ପାଖକୁ ସନ୍ଦେଶ ପଠେଇବି ।'

ହିତା ଭୂମିରେ ମଥା ରଖି କହିଲା– 'ସ୍ୱାମୀ, ଦାସୀ ଆପଣଙ୍କର ସନ୍ଦେଶର ପ୍ରତୀକ୍ଷା କରିବ ।'

ଶ୍ରେଷ୍ଠୀ ଆଶ୍ୱାସନା ଦେଇ କହିଲା– 'ନିଶ୍ଚୟ ! ତାହା ପୂର୍ବରୁ ମୋଦର ମୁକ୍ତିରେ କ'ଣ ବା ଲାଭ ହେବ ? ବିଚରା ସୁନ୍ଦର ସୁରୂପ ଯୁବକକୁ ମୃତ୍ୟୁର ଅଗ୍ନିକୁ ଠେଲି ଦେବା କ୍ରୂରତା ହେବ । ଈଶ୍ୱର ସେହି ପାପରୁ ରକ୍ଷା କରନ୍ତୁ ।'

ହିତା ସେଇ ରତ୍ନଜଡ଼ିତ କଙ୍କଣକୁ ଶ୍ରେଷ୍ଠୀକୁ ତା'ର ସୁରକ୍ଷାପାଇଁ ଦେଇ ଯିବା ପାଇଁ ଆଜ୍ଞା ମାଗିଲା ।

ଶ୍ରେଷ୍ଠୀ ତାମ୍ବୂଳ ବାହକଙ୍କୁ ଡାକି ହିତାକୁ କହିଲା– 'ନଗର ଶ୍ରେଷ୍ଠୀଙ୍କ ନିକଟରୁ କ'ଣ ରାଜସେବିକା ଖାଲି ହାତରେ ଚାଲିଯିବ ?'

ହିତା ଦାସୀ ହୋଇଥିବା କାରଣରୁ ଶ୍ରେଷ୍ଠୀ ତାକୁ ତାମ୍ବୂଳ ଦେଇପାରିବ ନାହିଁ ତେଣୁ ସେ ତାମ୍ବୂଳ ବାହକଙ୍କୁ ଆଦେଶ ଦେଲା– 'ରାଜଦାସୀକୁ ପାଞ୍ଚ ଧରଣ ପୁରସ୍କାର ସ୍ୱରୂପ ଦେବାକୁ କହ ।'

ସେବକ ଧରଣ ଆଣିବାକୁ ଗଲା । ସେତେବେଳେ ଶ୍ରେଷ୍ଠୀ ହିତା ପାଖକୁ ନଇଁ ଆସି କହିଲା– 'ଦେବତାଙ୍କର କୃପା ପ୍ରତି ବିଶ୍ୱାସ ରଖିବ । ମୋଦ ନଗରର ପ୍ରତ୍ୟେକ ଦେବାଳୟକୁ ଯାଇ ଶଙ୍ଖ ବଜେଇ ରାଜମାତାଙ୍କର ଶୀଘ୍ର ପ୍ରତ୍ୟାବର୍ତ୍ତନ ନିମନ୍ତେ ପ୍ରାର୍ଥନା କରୁ । ଦୁଃଖୀ ପ୍ରଜାଙ୍କୁ ମଧ୍ୟ ଅନୁରୂପ ପୂଜା ଅର୍ଚ୍ଚନା କରିବାକୁ କହୁ । ଦେବତା ତୁମର ମନୋବାଞ୍ଛା ପୂରଣ କରିବେ ।'

ହିତା ଶ୍ରେଷ୍ଠୀଙ୍କର ଆବାସରୁ ଫେରିବା ବେଳେ ତାର ଗତି ଆହୁରି ଚଞ୍ଚଳ ଥିଲା । ଅଣନିଃଶ୍ୱାସୀ ହୋଇ ସେ ମୋଦକୁ ଶ୍ରେଷ୍ଠୀଙ୍କର ଆଶ୍ୱାସନାର କଥା କହିଲା ଏବଂ ନଗରର ଦେବାଳୟମାନଙ୍କୁ ଯାଇ ଶଙ୍ଖନାଦ କରି ରାଜମାତାଙ୍କର ଶୀଘ୍ର ପ୍ରତ୍ୟାଗମନ ନିମନ୍ତେ ପ୍ରାର୍ଥନା କରିବାକୁ କହି ତୁରନ୍ତ ପାଳିତ ସହିତ ରାଜପ୍ରାସାଦକୁ ଦଉଡ଼ି ଆସିଲା ।

× × × × ×

ପୂର୍ବ କ୍ଷିତିଜରୁ ଉଷାର ପାଟଳ କିରଣ କଳିଙ୍ଗର ରାଜପ୍ରାସାଦର ତୋରଣ ମଣ୍ଡପମାନଙ୍କରେ ବିଚ୍ଛୁରିତ ହେବାକୁ ଲାଗିଲା । ପ୍ରମୋଦ ଉଦ୍ୟାନ ଏବଂ ପ୍ରାସାଦ ପ୍ରାଚୀର ମଧ୍ୟସ୍ଥ ବୃକ୍ଷମାନଙ୍କରେ ନୀଡ଼ ରଚନା କରି ରହିଥିବା ପକ୍ଷୀମାନେ ସଚେତ ହୋଇ ମଙ୍ଗଳଗାନ କରି ଉଷାର ସ୍ୱାଗତ କଲେ ମାତ୍ର ପ୍ରାସାଦର କକ୍ଷମାନଙ୍କରେ ତା'ର ପ୍ରଭାବ ଅନୁଭୂତ ହେଉ ନ ଥିଲା । ବାଳସୂର୍ଯ୍ୟର ସିନ୍ଦୂରାଭ ସୁନେଲି କୋମଳ କିରଣ ଉଷାର ଆବରଣ ଭେଦ କରି ପ୍ରାସାଦ ଉପରେ ଖେଳେଇ ହେଲା । ପ୍ରାସାଦ ପ୍ରାଙ୍ଗଣ ଓ ଅଳିନ୍ଦମାନଙ୍କର ଉଷ୍ଣତା ବଢ଼ିବାକୁ ଲାଗିଲା । ତଦୁପରି ପ୍ରାସାଦରେ ଶିଶିର ପ୍ରଭାତର ଆଳସ୍ୟଜନିତ ସ୍ତବ୍ଧତାକୁ ବନ୍ଦୀମାନଙ୍କର ମଙ୍ଗଳ ତୂରୀନାଦ ଭଙ୍ଗ କଲା କିନ୍ତୁ କୌଣସିଠାରେ ମଧ୍ୟ ବିଳମ୍ବଜନିତ ଉଦ୍‌ବିଗ୍ନତା କିମ୍ବା ତତ୍‌ପର ଭାବର ଆଭାସ ମିଳିଲା ନାହିଁ ।

ଚେରୀ ଧର୍ମର ଅନୁଯାୟୀ ରାଜମାତା ବ୍ରାହ୍ମମୁହୂର୍ତ୍ତ ପୂର୍ବରୁ ଶଯ୍ୟାତ୍ୟାଗ କରି ନିତ୍ୟକର୍ମ ପ୍ରବୃତ୍ତ ହେଉଥିଲେ, ତେଣୁ ସେତେବେଳେ ବ୍ରାହ୍ମମୁହୂର୍ତ୍ତରୁ ପ୍ରଭାତ-କାଳୀନ ମଙ୍ଗଳ ବାଦ୍ୟ ଆରମ୍ଭ ହୋଇ ଯାଉଥିଲା । ବାଳିକା ମହାରାଣୀଙ୍କର ବ୍ରାହ୍ମ ମୁହୂର୍ତ୍ତରୁ

ଶଯ୍ୟାତ୍ୟାଗ କରିବାର ଆଗ୍ରହ କିପରି ହେବ ? ଯେତେବେଳେ ବି ସେ ଆଖି ଖୋଲୁଥିଲେ ତାହା ତାଙ୍କର ଶଯ୍ୟା ତ୍ୟାଗର ସମୟ ଥିଲା । ମାତ୍ର ଅଳିନ୍ଦମାନଙ୍କରେ ଖରା ପଡ଼ିବା ପରେ ବନ୍ଦୀମାନେ ଅଗଣାରେ ତୂରୀ ଓ ମୃଦଙ୍ଗରେ ମଙ୍ଗଳ ଗାନ ଆରମ୍ଭ କରିଦେଲେ । ହିତା ପାତ୍ରରେ ଉଷ୍ଣଜଳ ଓ ପ୍ରୋଞ୍ଛନ ବସ୍ତ୍ର ଧରି ମହାରାଣୀଙ୍କର ଆଖି ଖୋଲିବାର ସମୟକୁ ଅପେକ୍ଷା କରି ରହିଥାଏ । ବାପୀ ଓ ଉଦ୍ଧାଳ ଅଳିନ୍ଦରେ ଠିଆ ହୋଇ କଥାବାର୍ତ୍ତା କରୁଥାନ୍ତି ।

ଅମିତାଙ୍କର ଆଖି ଖୋଲିଲା ଏବଂ ସେ ଧନୁ ଭଳି ହୋଇ ଅଳସ ଭାଙ୍ଗିଲେ । ହିତାକୁ ଆଗରେ ଦେଖି ଆପଣାଛାଏଁ ତାଙ୍କର ଦୁଇ କୋମଳ ବାହୁ ଉପରକୁ ଉଠିଗଲେ । ହିତା ଦୁଆର ମୁହଁକୁ ଚାହିଁ ମହାରାଣୀଙ୍କର ତକିଆ ଉପରକୁ ନଇଁ ଆସିଲା ଏବଂ ଧୀରେ ଧୀରେ ତାଙ୍କର କାନରେ କହିଲା – ‘ଆଜି ମହାରାଣୀ ଶୀଘ୍ର ମାତାଙ୍କୁ ଡକେଇ ଆଣନ୍ତୁ ବୋଲି ଆଚାର୍ଯ୍ୟକାକାଙ୍କୁ ଅନୁରୋଧ କରିବେ । ଆଜି ମହାରାଣୀ ନଗର ବିହାର କରିବେ ।’

ହିତା ମହାରାଣୀଙ୍କୁ ପଲଙ୍କ ଉପରେ ବସେଇ ଦେବାକୁ ବାହୁର ଆଶ୍ରୟ ଦେଲା । କିନ୍ତୁ ଅମିତା ଡେଇଁ ଠିଆ ହୋଇଗଲେ । ସେ ହିତାର ଗଳାରେ ବାହୁ ବେଷ୍ଟନ କଲେ ଏବଂ ଅଳିନ୍ଦଆଡ଼କୁ ଦେଖି ଉଚ୍ଚୈସ୍ୱରରେ କହିଲେ – ‘ମୁଁ ଆଚାର୍ଯ୍ୟ କାକାଙ୍କୁ ଆଦେଶ ଦେବି, ମାଆଙ୍କୁ ଶୀଘ୍ର ଡକାନ୍ତୁ । ମୁଁ ଆଜି ନଗର ବିହାର କରିବି ।’

‘ହଁ ମହାରାଣୀ, ମହାରାଣୀ ଯାଇ ଆଚାର୍ଯ୍ୟକାକାଙ୍କୁ ରାଜମାତାଙ୍କୁ ଶୀଘ୍ର ଡକେଇ ଆଣିବାକୁ ଅନୁରୋଧ କରିବେ ।’ ହିତା ଅମିତାଙ୍କୁ ଗେଲ କରି କହିଲା – ‘ଅମ୍ଭେ, ଜଳଗ୍ରହଣ କରନ୍ତୁ, ମୁହଁ ହାତ ଧୋଇନିଅନ୍ତୁ ।

ବାପୀ ଓ ଉଦ୍ଧାଳ ମଧ୍ୟ ଶୟନ କକ୍ଷକୁ ଆସିଲେ । ସେମାନେ ଭୂମି ସ୍ପର୍ଶ ପୂର୍ବକ ଦିବସର ପ୍ରଥମ ପ୍ରଣାମ କଲେ ।

ଉଦ୍ଧାଳ ପିଞ୍ଜରାରେ ପକ୍ଷୀଟିଏ ନେଇ ଆସିଥିଲା । କଞ୍ଚୁକୀ ପକ୍ଷୀକୁ ସଂକେତ ଦେଲା – ‘ଗୌରା କହ, ପରମ ଭଗବତୀ ମହାରାଣୀଙ୍କର ଜୟ !’

ପକ୍ଷୀ କହିଉଠିଲା – ‘ପରମ ଭଗବତୀ ମହାରାଣୀଙ୍କର ଜୟ ହେଉ । ଅନ୍ନଦାତାଙ୍କର ପ୍ରତାପ ଅକ୍ଷୟ ହେଉ ।’ ପକ୍ଷୀଟି ଶବ୍ଦକୁ ଦୁଇ ଦୁଇଥର ଆବୃତ୍ତି କରି କହିବାକୁ ଲାଗିଲା – ‘ବୁଦ୍ଧଂ ଶରଣଂ ଗଚ୍ଛ । ଧର୍ମଂ ଶରଣଂ ଗଚ୍ଛ । ସଂଘ ଶରଣଂ ଗଚ୍ଛ ।’

ଅମିତା ହିତାର କୋଳରୁ ଓହ୍ଲାଇ... 

ଗୌରା ସେହି ସେହି ଶବ୍ଦ କହିବାକୁ ଲାଗିଲା । ଅମିତା ମଧ୍ୟ ପୁଲକିତ ହୋଇ ପ୍ରତିଦ୍ୱନ୍ଦ୍ୱିତା କଲାଭଳି ସେହି ସେହି ଶବ୍ଦ କହିବାକୁ ଲାଗିଲେ ।

ହିତା ମହାରାଣୀଙ୍କର ମୁଖ ପ୍ରକ୍ଷାଳନ ପାତ୍ରରେ କରି ପାତ୍ରଟିକୁ ପଲଙ୍କ ତଳକୁ ରଖିଦେଲା । ବାପୀ ପାତ୍ରଟିକୁ ଉଠେଇ ନେବାକୁ ନଇଁପଡ଼ିଲା । କଞ୍ଚୁକୀ ଯେଭଳି ଶୁଣିପାରିବ ନାହିଁ ସେଭଳି ତା'ର କାନେ କାନେ କହିଲା – 'ଆଲୋ ମୂର୍ଖା, କାଲିଠୁଁ କ'ଣ ସବୁ କରୁଛୁ ? ମହାରାଣୀଙ୍କୁ ତୁ ନିଜେ ମାଆଙ୍କ କଥା ମନେ ପକେଇ ଦେଉଛୁ ?'

ହିତା ମୁହଁ ଫେରେଇନେଇ ମାଆର କଥା ଅଶୁଣା କରିଦେଲା । ମହାରାଣୀଙ୍କର ମୁହଁହାତ ଧୁଏଇ ଦେଇ ହିତା ଓ ବାପୀ ତାଙ୍କୁ ଜଳପାନ ନିମନ୍ତେ ନେଇଗଲେ । ଖେଳରେ ନିମଗ୍ନ ଅମିତାଙ୍କର ଶ୍ରୀଖଣ୍ଡ ଓ ଅନ୍ୟାନ୍ୟ ଦ୍ରବ୍ୟ ପରିପୂର୍ଣ୍ଣ ପାତ୍ର ପ୍ରତି ଧ୍ୟାନ ନ ଥିଲା । ହିତା ପୁଣି ବାଳିକାକୁ ଗେଲ କରି କହିଲା – 'ମହାରାଣୀ, ଜଳଯୋଗ କରି ନିଅନ୍ତୁ, ତା'ପରେ ଆମେ ନଗର ବିହାରକୁ ଯିବା, ଆପଣ ଆଚାର୍ଯ୍ୟକାକାଙ୍କୁ ମାତାଙ୍କୁ ଡକେଇ ଆଣିବାକୁ ଆଦେଶ ଦେବେ ।

ଅମିତାଙ୍କର ପଛପଟେ ବାପୀ ଠିଆ ରହି ଝିଅକୁ ଦେଖି ଦୃଷ୍ଟିର ଇଙ୍ଗିତରେ ଭର୍ତ୍ସନା କରି କହିଲା – 'କ'ଣ କରୁଛୁ ଏ ସବୁ ?'

ଉଦ୍ଧାଳ ପାଖରେ ନ ଥିଲା । ହିତା ଉପେକ୍ଷାରେ ଉତ୍ତର ଦେଲା – 'ମା' ତୁ ଚୁପ କର୍ ! କେଜାଣି ତୋତେ କ'ଣ ସବୁ ଦିଶୁଛି' ଏବଂ ସେ ପୁଣି ଅମିତାଙ୍କୁ ଉତ୍ସାହିତ କଲା – 'ହଁ ମହାରାଣୀ, ଜଳଖିଆ କରିନିଅନ୍ତୁ, ଆମେ ନଗର ବିହାରକୁ ଯିବା ।'

ଉଦ୍ଧାଳ ଦିନର ପ୍ରଥମ ପ୍ରହର ଓ ସନ୍ଧ୍ୟାରେ ସାମନ୍ତ ପ୍ରତାପଙ୍କ ନିକଟକୁ ଯାଇ ବାଳିକା ମହାରାଣୀଙ୍କ ବିଷୟରେ ସମାଚାର ଦେଇ ଆସୁଥିଲା । ସାମନ୍ତ ଏହା ଜାଣି ସନ୍ତୁଷ୍ଟ ଥିଲେ ଯେ ବାଳିକା ମହାରାଣୀ କ୍ରୀଡ଼ା ବିନୋଦରେ ରହି ରାଜମାତାଙ୍କୁ ଅଧିକ ସ୍ମରଣ କରୁ ନାହାନ୍ତି ବରଂ ମାତାଙ୍କୁ ଭୁଲି ଯାଉଛନ୍ତି । ସାମନ୍ତ ଏହାହିଁ ମହାମାତ୍ୟଙ୍କୁ କହୁଥିଲେ । ମାତ୍ର ସେଦିନ କଞ୍ଚୁକୀ ଖବର ଦେଲା – 'ମହାରାଣୀ ନଗର ବିହାର ପାଇଁ ଇଚ୍ଛା ପ୍ରକାଶ କରିଛନ୍ତି । ମହାରାଣୀ ଶଯ୍ୟାରୁ ଉଠିବା ମାତ୍ରକେ ରାଜମାତାଙ୍କୁ ମନେ ପକେଇଲେ ଏବଂ ଆଚାର୍ଯ୍ୟ ମହାମାତ୍ୟଙ୍କୁ ରାଜମାତାଙ୍କ ତୀର୍ଥଯାତ୍ରାରୁ ଫେରାଇ ଆଣିବାକୁ ଆଦେଶ ଦେବାକୁ ଇଚ୍ଛା ପ୍ରକାଶ କଲେ ।

ସାମନ୍ତ ପ୍ରତାପ ମହାରାଣୀଙ୍କର ନଗର ବିହାର ପାଇଁ ଶିବିକା ପ୍ରସ୍ତୁତ କରିବାକୁ ଅନୁମତି ଦେଇ ଚିନ୍ତା କରିବାକୁ ଲାଗିଲେ । ମହାରାଣୀଙ୍କ ମନରେ ମାତାଙ୍କର

ସ୍ମୃତିର ପୁନଃ ଜାଗରିତ ହେବାର କ'ଣ କାରଣ ଥାଇପାରେ ? କ'ଣ ବାଳିକାର ସେବା ଅଥବା ବିନୋଦର କିଛି ଉପେକ୍ଷା କରାଯାଇଛି ?

× × × × ×

ରାଜପଥ ଉପରେ ରାଜଦଣ୍ଡଧାରୀ ଚାରଣ ଘୋଷଣା କରି ଚାଲିଥାଏ 'ପରମ ଭଗବତୀ କଳିଙ୍ଗ ରାଜେଶ୍ୱରୀଙ୍କର ଜୟ ହେଉ । ପ୍ରଜା ଓ ପୌରଜନ ସସମ୍ମାନ ସାବଧାନ । ରାଜେଶ୍ୱରୀଙ୍କ ଲାଗି ପଥ ଉନ୍ମୁକ୍ତ ରଖନ୍ତୁ ।'

ବାଳିକା ମହାରାଣୀଙ୍କର ରାଜ୍ୟାଭିଷେକ ପରେ ରାଜମାତାଙ୍କର ଚୈତ୍ୟ ଦର୍ଶନ ଅଥବା ମହାବିହାର ଯିବା ସମୟରେ ମହାମାତ୍ୟଙ୍କର ଆଦେଶରେ ଅବଲମ୍ବିତ ସତର୍କତା ସଂପ୍ରତି ଶିଥିଳ ହୋଇଥିଲା । ବର୍ତ୍ତମାନ ନଗରରେ ପୂର୍ବାପେକ୍ଷା ଅଧିକ ଗହଳ ଚହଳ ଥିଲା । ନାଗରିକ, ପଦାତିକ, ଅଶ୍ୱାରୋହୀ, ସୈନିକ ମଧ୍ୟ ମହାରାଣୀଙ୍କର ଶିବିକା ଆସୁଥିବା ଦେଖି ମାର୍ଗର ପାର୍ଶ୍ୱକୁ ଆସି ମହାରାଣୀଙ୍କ ନିମନ୍ତେ ମାର୍ଗ ପ୍ରଶସ୍ତ କରୁଥିଲେ ଏବଂ ନଇଁ ଜୟଘୋଷ କରି ଅଭିବାଦନ କରୁଥିଲେ । ଅମିତା ଜନସମୂହକୁ ଦେଖି ପ୍ରସନ୍ନ ହେଉଥିଲେ । ନଗରକୁ ଆସିଲେ ସର୍ବଦା ତାଙ୍କ ମନରେ ବିନୋଦ ଭାବ ହିଁ ଜାଗରିତ ହେଉଥିଲା ।

ମହାରାଣୀଙ୍କର ସବାରି ରାଜପଥ ଉପରେ ଏକ ବୀଥିକା ଆଗରେ ଯାଉଥିଲା । ଗୋଟାଏ ଗୋବତ୍ସର ଉଚ୍ଚୈସ୍ୱରରେ ଦେଉଥିବା ହମ୍ବାରଡ଼ି ବାଳିକାଙ୍କର ଧ୍ୟାନ ଆକର୍ଷଣ କଲା । ପୁରୁଷଟିଏ ଗୋଟାଏ ଛୋଟ ଗୋଶାବକକୁ ପଘାରେ ବାନ୍ଧି ଟାଣି ନେଉଥାଏ । ବତ୍ସା ବନ୍ଧନମୁକ୍ତ ହେବାପାଇଁ ଡେଉଁଥାଏ ଓ ଟାଣି ହୋଇ ମୁକ୍ତ ହେବାର ପ୍ରୟାସ କରୁଥାଏ ।

'ରହ, ରହ !' ଅମିତା ବତ୍ସାକୁ ଦେଖି ଡାକ ପକେଇଲେ— 'କେତେ ସୁନ୍ଦର ବାଛୁରିଟିଏ ! ମୁଁ ବାଛୁରିକୁ ଦେଖିବି ।' ଶିବିକା ଅଟକିଗଲା । ଅମିତା ପାଲିଙ୍କିରୁ ଓହ୍ଲେଇ ଆସିବାର ପ୍ରୟାସ କଲେ । ହିତା ପାଲିଙ୍କି ସହିତ ଚାମର ଧରି ଚାଲିଥିଲା । ସେ ତୁରନ୍ତ ପାଲିଙ୍କି ପାଖକୁ ଯାଇ ମହାରାଣୀଙ୍କୁ ରାଜପଥକୁ ଓହ୍ଲେଇ ଆଣିଲା । ମହାରାଣୀଙ୍କୁ ରାଜପଥରେ ଠିଆ ହୋଇଥିବା ଦେଖି ପ୍ରଜାଜନ ପୁନରାୟ ନତମସ୍ତକ ହୋଇ ଅଭିବାଦନ ଜଣାଇଲେ ।

ଅଭିବାଦନ କରୁଥିବା ପ୍ରଜାଙ୍କ ପ୍ରତି ଅମିତାଙ୍କର ଦୃଷ୍ଟି ନ ଥିଲା । ସେ ବାଛୁରି ପଛରେ ଦଉଡ଼ିବାକୁ ଲାଗିଲେ ଏବଂ ତାଙ୍କ ପଛେ ପଛେ ହିତା, ବାପୀ, କଞ୍ଚୁକୀ, ଯବନୀମାନେ ଏବଂ ଅଙ୍ଗରକ୍ଷୀମାନେ !

ଅବୋଧ ବାଛୁରି କଳିଙ୍ଗର ରାଜେଶ୍ୱରୀଙ୍କର ଉପସ୍ଥିତିର ମହତ୍ତ୍ୱ ଜାଣେ ନାହିଁ । ସେ ସେଇଭଳି ହମ୍ବାରଡ଼ି ପକେଇ, ନାଚି ଡେଇଁ ମୁକ୍ତ ହେବାକୁ ଟଣାଓଟରା କରୁଥାଏ ।

ଅମିତା ପଚାରିଲେ– 'ଏ ବାଛୁରି କାହିଁକି କାନ୍ଦୁଛି ? ଏହାକୁ କାହିଁକି ବାନ୍ଧି ରଖିଛ ? ତାକୁ ଖୋଲିଦିଅ ?'

ସାଙ୍ଗରେ ଥିବା ଅଙ୍ଗରକ୍ଷକମାନଙ୍କର ନାୟକ ଆସି ନିବେଦନ କଲେ– 'ମହାରାଣୀଙ୍କର ଜୟ ହେଉ ! ଖୋଲି ଦେଲେ ଏ ବାଛୁରି ପଳେଇଯିବ !'

ଅମିତା ପଚାରିଲେ– 'କୋଉଠିକି ପଳେଇବ ? ବାଛୁରି କ'ଣ କାହାଠାରୁ ବଳପୂର୍ବକ କିଛି ନେଇଯାଏ ? କାହାକୁ ଡରାଏ ? କାହାକୁ ମାରେ ? ସେ କାନ୍ଦୁଛି କାହିଁକି ?'

ହିତା ନଇଁପଡ଼ି ମହାରାଣୀଙ୍କ କାନରେ କହିଲା– 'ଅମ୍ଭେ ମହାରାଣୀ, ବାଛୁରି ତା'ର ମା' ପାଖକୁ ଯିବାକୁ ଚାହୁଁଛି ।'

ଅମିତା କହିଉଠିଲେ– 'ବାଛୁରିକୁ ବାନ୍ଧ ନାଇଁ । ତାକୁ ତା'ର ମାଆ ପାଖକୁ ଛାଡ଼ିଦିଅ । ମୁଁ ଦେଖିବି । ଛାଡ଼ ତାକୁ !'

ମହାରାଣୀଙ୍କ ଆଦେଶରେ ବାଛୁରିର ପଘା ଖୋଲି ଦିଆଗଲା । ବାଛୁରି ନାଚି ଡେଇଁ, ଲାଞ୍ଜ ଟେକି ପଛ କ୍ଷୁର ଉଠେଇ ବୀଥୀ ମଧ୍ୟରେ ଦଉଡ଼ିଗଲା ।

ସଂକୀର୍ଣ୍ଣ ବୀଥୀରେ ମହାରାଣୀଙ୍କର ଶିବିକା ଯିବା ସମ୍ଭବ ନୁହେଁ । ଅମିତା ପାଲିଙ୍କିକୁ ଦେଖିଲେ ନାହିଁ ବି । ସେ ସ୍ୱର୍ଣ୍ଣଖଚିତ ବସ୍ତ୍ରର ପାଦପର୍ଯ୍ୟନ୍ତ ଲମ୍ବି ଆସିଥିବା ପୋଷାକ ପିନ୍ଧି, ପ୍ରସନ୍ନଚିତ୍ତରେ ତାଳି ବଜେଇ ବଜେଇ ଖାଲି ପାଦରେ ବାଛୁରି ପଛରେ ଦଉଡ଼ିଗଲେ । ହିତା, ବାପୀ, କଞ୍ଚୁକୀ, ଯବନୀ ଓ ଅଙ୍ଗରକ୍ଷକମାନେ ମଧ୍ୟ ତାଙ୍କର ପଛେ ପଛେ ଦଉଡ଼ିଗଲେ ।

ଅମିତା ଡାକ ପକେଇ ଚାଲିଥାନ୍ତି 'ବାଛୁରି କୁଆଡ଼େ ଗଲା ? ମୁଁ ବାଛୁରିକୁ ଦେଖିବି !'

ଗଳିରେ ଆତଯାତ ହେଉଥିବା ଲୋକେ ମହାରାଣୀଙ୍କୁ ଖାଲିପାଦରେ ଯାଉଥିବା ଦେଖି ଅବାକ୍ ରହି ଯାଉଥିଲେ ଓ କଡ଼କୁ ଆସି ତାଙ୍କ ପାଇଁ ମାର୍ଗ କରି ଦେଉଥିଲେ । ବାଛୁରି ଡେଇଁ ଡେଇଁ ଗୋଟାଏ ଛୋଟ ଘରର ଦୁଆର ଡେଇଁ ଭିତର ଅଗଣାକୁ ଚାଲିଗଲା ।

ଅମିତା ସେହି ଦୁଆର ମୁହଁରେ ପହଞ୍ଚିଲା ବେଳକୁ ବାଛୁରି ଲାଞ୍ଜଟେକି ତା'ର ମା'ର ସ୍ତନରେ ମୁହଁ ମାରି ଚାଲିଥିଲା ଏବଂ ସ୍ନେହାତୁର ଗାଈଟି ବାଛୁରିକୁ

ଚାଟି ଚାଟି ଗେଲ କରୁଥାଏ । ଅମିତାଙ୍କର ନେତ୍ର ଅପଲକ ଅନେଇ ରହିଲେ । ସେ ନିର୍ବାକ ରହିଗଲେ ଆଉ ତାଙ୍କର ତଳ ଓଠ ଚାପି ହୋଇଗଲା, ଅଧୀରତାରେ କିଛି କ୍ଷଣ ପରେ ଆଖିରୁ ଲୁହ ଝରିବାକୁ ଲାଗିଲା ଏବଂ ସେ ଉଚ୍ଚୈସ୍ୱରରେ ମା ମା ଡାକି କାନ୍ଦିବାକୁ ଲାଗିଲେ । 'ମୁଁ ମୋର ମାଆଙ୍କ ପାଖକୁ ଯିବି !'

ମହାରାଣୀଙ୍କର ଦର୍ଶନ ପାଇଁ କୌତୂହଳୀ ଜନତା ଅଗଣାରେ ବାହାରେ ଗୁଣ୍ଡ ହୋଇ ସ୍ତବ୍ଧ ହୋଇ ରହିଥିଲେ । ହିତା ଦଉଡ଼ିଯାଇ ଅମିତାଙ୍କୁ କାଖେଇ ନେଲା । ତାଙ୍କର ଦୁଇ ଆଖିରୁ ଆପଣା ପଣତ କାନିରେ ଲୁହ ପୋଛି ଦେଲା ଓ ମନେ ପକେଇ କହିଲା– 'ଭଗବତୀ ମହାରାଣୀ ଆଚାର୍ଯ୍ୟକାକାଙ୍କର ସୌଧକୁ ସଖୀ ଲେଖା ସହିତ ଖେଳିବାକୁ ଯିବେ ।'

ହିତା ମା'ଙ୍କୁ ମନେ ପକେଇ କାନ୍ଦୁଥିବା ଅମିତାଙ୍କୁ କାଖେଇ, ଲୋକ ଗହଳିକୁ ବାଟ ଛାଡ଼ିବାର ଇଙ୍ଗିତ ଦେଇ ଶିବିକା ନିକଟକୁ ଫେରିଆସିଲା ।

× × × × ×

ମହାମାତ୍ୟ ଆଚାର୍ଯ୍ୟ ସୁକଣ୍ଠ ଶର୍ମା ରାଜ୍ୟର ଅନ୍ନଭଣ୍ଡାରର ଅଧ୍ୟକ୍ଷ ଆର୍ଯ୍ୟ ବିଧୁଙ୍କ ସହିତ ସୀମାନ୍ତରେ ସୈନ୍ୟମାନଙ୍କ ପାଇଁ ଅନ୍ନବ୍ୟବସ୍ଥା ସମ୍ବନ୍ଧରେ ପରାମର୍ଶ ଦେଉଥିଲେ । ତାଙ୍କୁ ପ୍ରାଙ୍ଗଣରେ ବିଶାଳ ଭାଣ୍ଡର ଝଂକାର ଶୁଣାଗଲା । ଆଚାର୍ଯ୍ୟଙ୍କର ଡାହାଣହାତ ଉଠିଗଲା ।

ଆର୍ଯ୍ୟ ବିଧୁଙ୍କୁ ମୌନ ରହିବାର ସଂକେତ ଦେଇ ଆଚାର୍ଯ୍ୟ କହିଲେ– 'ଆର୍ଯ୍ୟ, କିଛି ସମୟପାଇଁ ଆପଣ ଅନ୍ୟ କକ୍ଷରେ ବିଶ୍ରାମ କରନ୍ତୁ ଏବଂ ସେ କକ୍ଷର ଗୋଟାଏ କୋଣରେ ଠିଆ ହୋଇ ରହିଥିବା ବଧିର ଦାସକୁ ହାତ ହଲେଇ ସଂକେତ ଦେଲେ । ବଧିର ଦାସ ଆର୍ଯ୍ୟ ବିଧୁଙ୍କୁ ମାର୍ଗ ଦେଖାଇ ବାହାରକୁ ନେଇଗଲା ।

ନଗରପାଳ ତଥା ଅନ୍ୟାନ୍ୟ ଅଧିକାରୀଙ୍କଠାରୁ ନଗରର ସମାଚାର ତଥା ସେନାପତିମାନଙ୍କଠାରୁ ଯୁଦ୍ଧକ୍ଷେତ୍ରର ସମାଚାର ସାଧାରଣତଃ ଆଚାର୍ଯ୍ୟଙ୍କ ନିକଟକୁ ନିୟମିତ ପହଞ୍ଚୁଥିଲା । ମଗଧସେନା କଳିଙ୍ଗର ସୀମାରେ ଅନେକ ଦୂର ପ୍ରବେଶ କରି ସାରିଥିଲା । ଏଣିକି ମହାମାତ୍ୟ ଅଧିକ ସତର୍କ ରହୁଥିଲେ । ତାଙ୍କର ଆଶଙ୍କା ଥିଲା ଯେ କୌଟିଲ୍ୟ ଚାଣକ୍ୟଙ୍କର ନୀତି ଅନୁଯାୟୀ ମଗଧବାସୀ ଭେଦନୀତିରେ କଳିଙ୍ଗ ରାଜ୍ୟ ଏବଂ ନଗରମାନଙ୍କରେ ଉପଦ୍ରବ କରି କଳିଙ୍ଗର ରାଜସତ୍ତାକୁ ବିଶୃଙ୍ଖଳିତ କରିବାର ଯତ୍ନ କରୁଛନ୍ତି । ସେ ନିଜର ଅନେକ ବିଶ୍ୱସ୍ତ ଗୁପ୍ତଚରଙ୍କୁ ରାଜ୍ୟ ଏବଂ ଭିନ୍ନ ଭିନ୍ନ ନଗରୀରେ ନିଯୁକ୍ତ କରି ରଖିଥିଲେ । ସେହି ଚରମାନେ

ରାଜ୍ୟାଧିକାରୀମାନଙ୍କ ବିଷୟରେ ଏବଂ ନଗରର ସ୍ଥିତି ସମ୍ବନ୍ଧରେ ନିୟମିତ ଆସି ମହାମାତ୍ୟଙ୍କୁ ସମାଚାର ଦେଉଥିଲେ । ସେମାନେ କୌଣସି ସମୟରେ ବି ପ୍ରତୀକ୍ଷା ନ କରି, ମହାମାତ୍ୟଙ୍କ ଭବନକୁ ଆସି ପକ୍ଷୀମାନଙ୍କର ପାନୀୟ ଜଳ ରହିଥିବା ବିଶାଳ ଲୌହ ଭାଣ୍ଡ ବଜେଇ ଆସିଥିବାର ସୂଚନା ଦେଉଥିଲେ ।

ଆଚାର୍ଯ୍ୟଙ୍କର କକ୍ଷରୁ ଆର୍ଯ୍ୟ ବିଧୁ ଯିବା ପରେ ପରେ ମଥାରେ ଚନ୍ଦନତିଳକ କରିଥିବା, ରୁଦ୍ରାକ୍ଷ ମାଳଧାରୀ, ଗୋଟାଏ ହାତରେ କାଠପିଢ଼ା ଓ ଗେରୁ ତଥା ଅନ୍ୟ ହାତରେ ପୋଥି ଧରି ଜ୍ୟୋତିଷ ବେଶରେ ଜଣେ ବ୍ୟକ୍ତି ପ୍ରବେଶ କରି ଆଚାର୍ଯ୍ୟଙ୍କୁ ପ୍ରଣାମ କଲା ।

ମହାମାତ୍ୟ ପ୍ରଶ୍ନସୂଚକ ଚାହାଣିରେ ତାକୁ ଦେଖିଲେ । ଆଗନ୍ତୁକ ଜ୍ୟୋତିଷ ଅଭୟଦାନ ମାଗି ନିବେଦନ କଲା –

ଭଗବତୀ ମହାରାଣୀ ନଗର ବିହାର କରୁଥିବା ସମୟରେ ଗୋଟାଏ ବାଛୁରି ଦେଖି କ୍ରୀଡ଼ାଛଳରେ ସେହି ବାଛୁରି ପଛରେ ଦଉଡ଼ିଗଲେ । ବାଛୁରିର ମାତୃସ୍ତନ ପାନ କରୁଥିବା ଦେଖି ଏବଂ ଗାଈକୁ ସ୍ନେହରେ ବତ୍ସାକୁ ଚାଟିବା ଦେଖି ବାଳିକା ମହାରାଣୀ ମାତାଙ୍କୁ ମନେପକେଇ ପଣ୍ୟବୀଥୀରେ କାନ୍ଦୁଛନ୍ତି । ଜନସାଧାରଣଙ୍କ ମତରେ ଶିଶୁ ମହାରାଣୀଙ୍କୁ ଛାଡ଼ି ରାଜମାତାଙ୍କର ତପ ସାଧନା ପାଇଁ ତୀର୍ଥଯାତ୍ରା କରିବା ଉଚିତ ହୋଇ ନାହିଁ । ଅନେକେ ଏହା ମଧ୍ୟ କହୁଛନ୍ତି ଯେ ବାଳିକା ମହାରାଣୀଙ୍କ ପ୍ରତି ଆଚାର୍ଯ୍ୟଙ୍କର ମନରେ ତିଳେ ମାତ୍ର ଦୟାଭାବ ନାହିଁ । ଆଚାର୍ଯ୍ୟ ରାଜମାତାଙ୍କୁ ଶୀଘ୍ର ପ୍ରତ୍ୟାବର୍ତ୍ତନ କରିବାର ନିବେଦନ କାହିଁକି କରୁ ନାହାନ୍ତି ? କେହି କେହି ଏଭଳି ମଧ୍ୟ କହିବା ଶୁଣାଗଲା ଯେ ମହାରାଣୀ ପଣ୍ୟପଥରେ କାନ୍ଦିବେ ଯଦି କଳିଙ୍ଗକୁ ଚଣ୍ଡ ଅଶୋକ ଠାରୁ କିଏ ରକ୍ଷା କରିବ ? ଭଗବତୀ ମହାରାଣୀଙ୍କର ଶିବିକା ଆଚାର୍ଯ୍ୟଙ୍କର ପୌତ୍ରୀ ଭଦ୍ରେ ଲେଖାଙ୍କ ସହିତ ଖେଳିବେ ବୋଲି ଆଚାର୍ଯ୍ୟଙ୍କ ସୌଧକୁ ଆସୁଛି ବୋଲି ମଧ୍ୟ ଶୁଣାଗଲା ।'

ଆଚାର୍ଯ୍ୟ ସମାଚାର ପାଇ ପ୍ରଜାମାନଙ୍କ ମଧ୍ୟରେ ରାଜସତ୍ତାର ସମ୍ମାନ ହାନି ହେତୁ ଚିନ୍ତିତ ହୋଇ କହିଲେ – 'କ'ଣ ବୃଦ୍ଧାବସ୍ଥାରେ ସାମନ୍ତ ପ୍ରତାପ ଆପଣାର ବୁଦ୍ଧି ଏବଂ ରାଜପ୍ରତିଷ୍ଠାର ବିଚାର ହରେଇ ବସିଛନ୍ତି ? ସମାଚାର ନ ଦେଇ ଏବଂ ସମୁଚିତ ଆୟୋଜନ ନ କରି ପରମ ଭଗବତୀଙ୍କର କୌଣସି ସୌଧରେ ପଦାର୍ପଣ କିଭଳି ସମ୍ଭବ ହେବ ?

ଆଚାର୍ଯ୍ୟ କକ୍ଷ ବାହାରେ ଦ୍ୱାର ସମ୍ମୁଖରେ ନତମସ୍ତକ ହୋଇ ଠିଆ ହୋଇଥିବା ନବାଗନ୍ତୁକ ପ୍ରତିହାରୀକୁ ଦେଖିଲେ । ତାକୁ ଦେଖିବା ଦେଖି ପ୍ରତିହାରୀ ନିବେଦନ

କଲା– 'ସ୍ୱାମୀ ଅଭୟଦାନ କରନ୍ତୁ, ସନ୍ଦେଶ ଯେ ମହାରାଣୀଙ୍କର ଶିବିକା ସୌଧ ପ୍ରାଙ୍ଗଣରେ ପହଞ୍ଚିବ ।'

ଆଚାର୍ଯ୍ୟ କିଛି କହିପାରିଲେ ନାହିଁ ଏବଂ ଉଠି ପ୍ରାଙ୍ଗଣ ଅଭିମୁଖରେ ଚଞ୍ଚଳ ପଦରେ ଚାଲିଗଲେ ।

ପ୍ରାସାଦରେ ବ୍ୟସ୍ତତା ଓ ବ୍ୟଗ୍ରତା ଭରିଗଲା । ସମସ୍ତେ ବାହାରୁ ଭିତରକୁ ଓ ଭିତରୁ ବାହାରକୁ ଦଉଡ଼ିବାକୁ ଲାଗିଲେ । ଆଚାର୍ଯ୍ୟ ଯାଉ ଯାଉ ଆପଣା ପୁଅ ଓ ପ୍ରାଙ୍ଗଣ ରକ୍ଷକଙ୍କୁ ଆଦେଶ ଦେଲେ– 'ମହାରାଣୀଙ୍କର ସ୍ୱାଗତ ନିମନ୍ତେ ଚଞ୍ଚଳ ବ୍ୟବସ୍ଥା କର ।'

ଅଗଣାରେ ଚଞ୍ଚଳ ଚଞ୍ଚଳ ଦାସୀ ଓ ସେବିକାମାନେ ଚିତା ଦେବା ଆରମ୍ଭ କରିଦେଲେ । ପରିଚର୍ଯ୍ୟା ଦାସୀମାନେ ତାଙ୍କର ବଧୂ ଓ ପୌତ୍ରପୌତ୍ରୀମାନଙ୍କୁ ବସ୍ତ୍ର ଆଭୂଷଣ ପିନ୍ଧେଇବାକୁ ଲାଗିଲେ । କେତେଜଣ ଅର୍ଘ୍ୟପାତ୍ର, ଦୀପ ନୈବେଦ୍ୟ ନେଇ ପ୍ରାଙ୍ଗଣକୁ ଦଉଡ଼ିଗଲେ । ସେଇ ବିରାଟ ଭବନରେ ମହାରାଣୀଙ୍କ ନିମନ୍ତେ ସିଂହାସନର ବ୍ୟବସ୍ଥା ହେଲା ।

ଯେଉଁ ସମୟରେ ଆଚାର୍ଯ୍ୟ ଘୃତଦୀପ ନେଇ ମହାରାଣୀଙ୍କର ଆରତି ବନ୍ଦାପନା କରୁଥିଲେ ଅମିତା ଅଧୀର ହୋଇ କହିଲେ– 'ଆଚାର୍ଯ୍ୟକାକା, ମୋର ମାତା କେବେ ଆସିବେ .? ଆପଣ ତାଙ୍କୁ ଡକେଇ ନିଅନ୍ତୁ !'

ଆଚାର୍ଯ୍ୟ ନତମସ୍ତକ ହୋଇ ନିବେଦନ କଲେ– 'ପରମ ଭଗବତୀ ରାଜେଶ୍ୱରୀ, ରାଜମାତା ରାଜ୍ୟ ଏବଂ ରାଜେଶ୍ୱରୀଙ୍କର କଲ୍ୟାଣ ନିମନ୍ତେ ତପ ସାଧନା କରୁଛନ୍ତି ।'

ଅମିତା ପୁଣି ଆଗ୍ରହ ପ୍ରକାଶ କଲେ– 'ନା, ମା'ଙ୍କୁ ଶୀଘ୍ର ଡକେଇ ଦିଅନ୍ତୁ ।

ମହାମାତ୍ୟ ପୁଣି ନିବେଦନ କଲେ– 'ପରମ ଭଗବତୀ, ରାଜମାତାଙ୍କର ତପ ଏବଂ ଧର୍ମ ସାଧନାରେ ବିଘ୍ନ ହେଲେ ସେ ଦୁଃଖୀ ହେବେ ।'

ଅମିତା ଆଚାର୍ଯ୍ୟଙ୍କୁ ଭିଡ଼ି ଧରି ପୁଣି ଆଗ୍ରହ ପ୍ରକାଶ କଲେ– 'ନା' ନା କାକା, ମା'ଙ୍କୁ ଶୀଘ୍ର ଡକେଇ ଦିଅନ୍ତୁ ।

ଅମିତାଙ୍କର ଓଠ ଥରିବାକୁ ଲାଗିଲା । ସଂକୁଚିତ ହେବାକୁ ଲାଗିଲା । ଆଚାର୍ଯ୍ୟ ଶଂକା କଲେ କାଳେ ସେ ପୁଣି କାନ୍ଦି ପକେଇବେ । ବିବଶ ହୋଇ ସେ ଆଶ୍ୱାସନା ଦେଲେ– 'ପରମ ଭଗବତୀଙ୍କର ଆଦେଶ ପାଳନ ହେବ ।'

ମହାମାତ୍ୟଙ୍କର ପୁତ୍ରବଧୂ ଆସି ଆଳତି ବନ୍ଦାପନା କରି ମହାରାଣୀଙ୍କର ପାଦପୂଜା କଲା ।

ଆଚାର୍ଯ୍ୟ କଳିଙ୍ଗ ରାଜେଶ୍ୱରୀଙ୍କୁ ବାଟ କଢ଼େଇ ପ୍ରାସାଦର ବିଶାଳ ଭବନକୁ ନେଇ ସୁବର୍ଣ୍ଣ ଖଚିତ ବସ୍ତ୍ର ମଣ୍ଡିତ ଆସନରେ ବସେଇଲେ ।

ଅମିତା ଆସନରେ ବସି ସାରି ଅନୁରୋଧ କଲେ– 'ଆଚାର୍ଯ୍ୟ କାକା ମଧ୍ୟ ମୋ ପାଖରେ ବସନ୍ତୁ ।'

ମହାମାତ୍ୟ ନତମସ୍ତକ ହୋଇ ଅସମର୍ଥତା ପ୍ରକାଶ କଲେ । – 'ପରମ ଭଗବତୀ ଅନ୍ନଦାତାଙ୍କର କୃପା ଥାଉ । ଆଚାର୍ଯ୍ୟ ରାଜେଶ୍ୱରୀଙ୍କର ସେବକ । ସେବକର ସ୍ୱାମୀର ସମ ଆସନରେ ବସିବା ଶୋଭନୀୟ ନୁହେଁ ।

'ତୁମେ ମୋର କାକା' ଅମିତା ବିସ୍ମିତ ହୋଇ କହିଲେ– 'କାକା, ତମେ ମୋତେ କୋଳ କରି ଖୁଏଇଛ । ଏବେ ଦୂରରେ ବସୁଛ କେମିତି ?'

ମହାମାତ୍ୟଙ୍କର ଶ୍ୱେତ ଶ୍ମଶ୍ରୁ ଆବୃତ ଓଠରେ ସ୍ନେହପୂର୍ଣ୍ଣ ସ୍ମିତ ହସ ଉକୁଟି ଉଠିଲା । ସେ ଉତ୍ତର ଦେଲେ– 'ସେତେବେଳେ ପରମ ଭଗବତୀ ଶିଶୁ ଯୁବରାଜ୍ଞୀ ଥିଲେ । ଏଇନେ ମହାରାଣୀ, କଳିଙ୍ଗର ରାଜେଶ୍ୱରୀ । ଆଉ ଆଚାର୍ଯ୍ୟ ସୁକଣ୍ଠ ତାଙ୍କର ଆଜ୍ଞାକାରୀ ସେବକ ।'

ଅମିତାଙ୍କର ମନେପଡ଼ିଗଲା ଯେ ସେ କଳିଙ୍ଗର ରାଜେଶ୍ୱରୀ । ରାଜତିଳକ ସମୟରେ ଆଚାର୍ଯ୍ୟକାକା କହିଥିଲେ ସେ ରାଜେଶ୍ୱରୀ ହେବା ପରେ ସମସ୍ତେ ତାଙ୍କର ଆଦେଶ ପାଳନ କରିବେ । ହିତା ମଧ୍ୟ ଆଜି ସକାଳେ କହିଥିଲା– 'ମହାରାଣୀ ଆଚାର୍ଯ୍ୟକାକାଙ୍କୁ ଆଦେଶ ଦେବେ– ସେ ମାଆଙ୍କୁ ଶୀଘ୍ର ଡକେଇ ନେବେ ।'

ଅମିତା ତାଙ୍କର କୋମଳ ହାତ ଉଠେଇ ତର୍ଜନୀ ଦେଖେଇ କହିଲେ– 'ଆଚାର୍ଯ୍ୟକାକା, ମାଆଙ୍କୁ ଶୀଘ୍ର ଡକେଇ ନିଅନ୍ତୁ, ଏହା ମୋର ଆଦେଶ ।' ଏବଂ ସେ ସେଇ କ୍ରମରେ କହିଗଲେ– 'ଆଚାର୍ଯ୍ୟ କାକା, ମୁଁ ସଖୀ ଲେଖା ସାଙ୍ଗରେ ଖେଳିବି ।'

ହିତା ମଥାନତ କରି ଆସନ ସମୀପରେ ଠିଆ ହୋଇ ରହିଥିଲା । ନିଜର ଉତ୍ତରଦାୟିତ୍ୱ ହେତୁ ଅମିତାଙ୍କର ବାଳସୁଲଭ ବ୍ୟବହାର ପାଇଁ ସେ ତା'ର ଆନ୍ତରିକ ଭୟକୁ ଅତ୍ୟନ୍ତ ଯତ୍ନ ସହକାରେ ଲୁଚେଇ ରଖିଥିଲା । ତାର ଶରୀରର ରୋମାଞ୍ଚ ଓ କମ୍ପନ ହେତୁ ମନର ଭୟ ପ୍ରକଟିତ ହୋଇ ନ ଯାଉ ବୋଲି ସେ ସତର୍କ ଥିଲା ।. ଅମିତାଙ୍କର ଆସନ ଉପରୁ ଓହ୍ଲେଇ ଆସିବାର ଇଚ୍ଛା ଦେଖି ସେ ତତ୍‌କ୍ଷଣାତ୍ ମହାରାଣୀଙ୍କର ସହାୟତା ପାଇଁ ଆଗେଇ ଆସିଲା ମାତ୍ର ମହାମାତ୍ୟ ସ୍ୱୟଂ ଆଗେଇଯାଇ ମହାରାଣୀଙ୍କୁ ଓହ୍ଲେଇ ଆଣିଲେ ।

ଆଚାର୍ଯ୍ୟ ତାଙ୍କର ପୌତ୍ରୀଙ୍କୁ ରାଜସେବାରେ ପ୍ରସ୍ତୁତ କଲେ । ବାଳକମାନେ ରାଜକୀୟ ଶିଷ୍ଟାଚାରର ଚିନ୍ତା ନ କରି ଏକାସାଙ୍ଗରେ ଖେଳି ଖେଳି ଅନ୍ତଃପୁର ଉଦ୍ୟାନକୁ ଚାଲିଆସିଲେ । ଅଙ୍ଗରକ୍ଷକ ଏବଂ ଆଚାର୍ଯ୍ୟଙ୍କର ପୁତ୍ର ସାବଧାନ ହୋଇ ସେମାନଙ୍କ ସାଙ୍ଗରେ ରହିଲେ ।

ମହାମାତ୍ୟ ଅବସର ପାଇ ଆପଣା କକ୍ଷକୁ ଚାଲିଆସିଲେ । ସେ ଏହି ଅନଭ୍ୟସ୍ତ କାର୍ଯ୍ୟ ପାଇଁ ଥକି ଯାଇଥିଲେ । ବାଳିକା ମହାରାଣୀଙ୍କର ସ୍ୱାଭାବିକ, ବାଳୋଚିତ ବ୍ୟବହାର ଏବଂ ରାଜସଭାର ସମନ୍ୱୟନ ନିମନ୍ତେ ଚିନ୍ତିତ ଥିଲେ । ମହାରାଣୀଙ୍କର ଅନୁରୋଧ ଏବଂ ଲୁହରେ ପରାସ୍ତ ହୋଇ ତାଙ୍କୁ ରାଜମାତାଙ୍କୁ ଡକେଇବା ପାଇଁ ହଁ ଭରିବାକୁ ପଡ଼ିଲା । କରୁଣା ଏବଂ ଚିନ୍ତାରେ ତାଙ୍କର ମନ କ୍ଷୁବ୍ଧ ଥିଲା । ସେ ଏକାନ୍ତରେ ମୁଣ୍ଡ ନୁଆଁଇ ମୌନ ହୋଇ ବସିଥିଲେ ।

ଆଚାର୍ଯ୍ୟ ଦ୍ୱାର ଦେଶରେ ପାଦଶବ୍ଦ ଶୁଣି ମଥାଟେକି ଅନେଇଲେ । କକ୍ଷଦ୍ୱାରରେ ଆନ୍ତରିକ ପ୍ରତିହାରୀ ନତଶିର ହୋଇ ରହିଥିଲା । ମହାମାତ୍ୟଙ୍କୁ ଚିନ୍ତିତ ମୁଦ୍ରାରେ ଦେଖିବା ଅନୁଶାସନ ବିରୋଧ ବୋଲି ସେ ନତଦୃଷ୍ଟି ହୋଇ ରହିଥିଲା ।

ସ୍ୱାମୀଙ୍କ କଣ୍ଠରୁ ହୁଂକାର ଶବ୍ଦ ଶୁଣି ପ୍ରତିହାରୀ ଭୂମି ସ୍ପର୍ଶ କରି ନିବେଦନ କଲା— ଅନ୍ନଦାତା ସ୍ୱାମୀ, ଅଭୟଦାନ କରନ୍ତୁ । ରଣକ୍ଷେତ୍ରରୁ ମହାସେନାପତିଙ୍କର ଦୂତ ଉପସ୍ଥିତ ହୋଇ ଆପଣଙ୍କର ଆଦେଶର ପ୍ରତୀକ୍ଷା କରୁଛି ।

ମହାମାତ୍ୟ ଯୁଦ୍ଧକ୍ଷେତ୍ରର ଅବସ୍ଥା ଚିନ୍ତାଜନକ ବୋଲି ଜାଣୁଥିଲେ । ମହାସେନାପତି ଯଥାସମ୍ଭବ ମଗଧ ସେନାର ପ୍ରତିରୋଧ କରୁଥିଲେ । ମହାସେନାପତିଙ୍କର ଉଦାହରଣ, ପ୍ରେରଣା ଏବଂ ଆଦେଶରେ କଳିଙ୍ଗସେନା ମଗଧସେନାର ପ୍ରଚଣ୍ଡ ପ୍ରବାହକୁ ଅବିଚଳ ପଥର ଚଟାଣ ଭଳି ଅବରୋଧ କରୁଥିଲେ । ମାତ୍ର କଳିଙ୍ଗର ଜଣେ ଜଣେ ସୈନିକ ମଗଧର ଦଶଦଶ ସୈନିକଙ୍କୁ ନିହତ କରୁଥିଲେ ହେଁ, ନଦୀର ବାଲିପଠା ଭଳି, ଯାର ଉଭୟପାର୍ଶ୍ୱ ନଦୀତଟରୁ ବହୁ ଦୂର ପର୍ଯ୍ୟନ୍ତ ବିଚ୍ଛିନ୍ନ ହୋଇ ରହିଥାଏ ସେଭଳି ସ୍ତୂପାକାରରେ ଜମାହୋଇ ଯାଉଥିଲା, ଧରିତ୍ରୀକୁ ଯେଭଳି ନଦୀ ଉଭୟ ପାର୍ଶ୍ୱରୁ କାଟି ଦେଇଛି ।

ମହାମାତ୍ୟ ସଂକେତରେ ଦୂତକୁ ପ୍ରବେଶର ଅନୁମତି ଦେଲେ ।

× × × × ×

ବାପୀର ମନ ସନ୍ଧ୍ୟାରୁ ଭୟଙ୍କର ଆଶଙ୍କା ଓ ଦୁଶ୍ଚିନ୍ତାଗ୍ରସ୍ତ ହୋଇ ରହିଥିଲା । ମଧ୍ୟାହ୍ନରେ ମହାରାଣୀଙ୍କର ନଗର ବିହାରରୁ ଫେରିବା ପରେ ତାଙ୍କୁ ଆହାର ପରେ ପଲଙ୍କରେ ଶୁଏଇ ଦିଆ ଯାଇଥିଲା । ଅମିତା ଦ୍ୱିପ୍ରହରର ବିଶ୍ରାମ ପରେ ଉଠିଥିଲେ ଏବଂ ହିତା ତାଙ୍କର ମୁଖ ପ୍ରକ୍ଷାଳନ କରାଉଥିଲା । ସେତେବେଳେ ମହାରାଣୀଙ୍କର ନିଦ୍ରା-ବିଶ୍ରାମ କାଳରେ ସାମନ୍ତଙ୍କ ନିକଟରେ ହିତା ଉପସ୍ଥିତ ହେବ ବୋଲି କର୍ମାନ୍ତାଧିଷ୍ଠାୟକଙ୍କର ପ୍ରହରୀ ଆଦେଶ ଦେଲା ।

ସାମନ୍ତଙ୍କର ଆୟୁ ଏବଂ ସଂଯମିତ ବ୍ୟବହାର ପାଇଁ ବାପୀକୁ ହିତା ସକାଶେ ଭିନ୍ନ ଚିନ୍ତା ଥିଲା । ସେ ସାମନ୍ତ କାହିଁକି ଝିଅକୁ ଡକେଇଲେ ତା'ର କାରଣ ସମ୍ବନ୍ଧରେ ଅନୁମାନ କରିସାରିଥିଲା । ନଗରରେ ରାଜମାତାଙ୍କର ସ୍ମୃତିରେ ବାଳିକା ମହାରାଣୀଙ୍କର ଅସଂଯମିତ ବ୍ୟବହାର ତଥା ମହାମାତ୍ୟଙ୍କ ଭବନକୁ ଉଚିତ ପୂର୍ବ ସୂଚନା ବିନା ମହାରାଣୀଙ୍କର ପହଞ୍ଚିବାର ଉତ୍ତରଦାୟିତ୍ୱ ତ ତା'ର ଝିଅର ।

ମହାରାଣୀଙ୍କ ମନରେ ମାତାଙ୍କର ସ୍ମୃତି ଜାଗରିତ କରେଇବାର ଅପରାଧ ଓ ମୂର୍ଖତା ନ କରୁ ବୋଲି ବାପୀ ହିତାକୁ ବୁଝେଇ ବୁଝେଇ ଥକି ଯାଇଥିଲା । ମାତ୍ର ହିତା ମାଆର ଚେତାବନୀ ପ୍ରତି କର୍ଣ୍ଣପାତ କରି ନ ଥିଲା । ଗତଥର ଝିଅ ଦଣ୍ଡକ ହାତରେ ଧରାପଡ଼ି ଯାଇଥିଲା; ସେତେବେଳେ ତାକୁ ବାଳିକା ମହାରାଣୀଙ୍କ ସମ୍ମୁଖକୁ ନେଇଆସି ସେ କୋରଡ଼ା ମାଡ଼ରୁ ରକ୍ଷା କରିଥିଲା । ଏଥର କେଜାଣି କ'ଣ ହେବ ? କେଜାଣି କେତେ ଚାବୁକ ମାଡ଼ ହେବ ଏବଂ ତା'ପରେ ହୁଏତ ବିଶେଷ ରାଜସେବାର ଅଯୋଗ୍ୟ ଘୋଷିତ ହୋଇ କେଜାଣି କେଉଁଭଳି କଠିନ କାମରେ ସେମାନଙ୍କୁ ଲାଗିବାକୁ ପଡ଼ିବ ? ସେ ସମୟରେ ମହାରାଣୀଙ୍କର ନିଦ୍ରାଭଙ୍ଗ ହେବା କାରଣରୁ ହିତା କର୍ମାନ୍ତାଧିଷ୍ଠାୟକଙ୍କ ସମ୍ମୁଖକୁ ଯିବାରୁ ତ୍ରାହି ପାଇ ଯାଇଥିଲା ।

ସେଦିନ ରାତିର ପ୍ରଥମ ପ୍ରହରରେ ମହାରାଣୀ ନିଦ୍ରାଗତ ହେବାରୁ ହିତା ପୁନଶ୍ଚ ଆଦେଶ ପାଇ ଯବନୀ ସହିତ ସାମନ୍ତ ପ୍ରତାପଙ୍କର ପ୍ରାଙ୍ଗଣକୁ ଗଲା । ଦେଢ଼ ଘଡ଼ି ବେଳ ଯାଏ ହିତା ନ ଫେରିଲାରୁ ବାପୀ ବିଶେଷ ଚିନ୍ତା କରିବାକୁ ଲାଗିଲା । ରାତି ପ୍ରାୟ ଅଧାରୁ ଅଧିକ ହେଲାଣି ବୋଲି ତାକୁ ଲାଗୁଥାଏ ଏବଂ ହିତା କେଜାଣି କିଭଳି ସଂକଟରେ ଥିବ ବୋଲି ଆତଙ୍କିତ ହେଉଥାଏ । ହୋଇପାରେ ତାର ଅପରାଧପାଇଁ ଅଧିକ କ୍ରୁଦ୍ଧ ହୋଇ ଅନ୍ଧକୂପରେ ପକେଇ ଦେବାର ଆଦେଶ ଦେଇଥିବେ କିମ୍ବା ସେଇ ଦଣ୍ଡକର ଅଗଣାରେ ....

ବାପୀ ଅମିତାଙ୍କର ପଲଙ୍କ ସମୀପରେ ମସିଣାରେ ପଡ଼ି ପଣତକାନିରେ ମୁହଁ ଲୁଚେଇ, ଶରୀରରେ କନ୍ଥା ଘୋଡ଼େଇ ହୋଇ କାନ୍ଦୁଥାଏ । କାନ୍ଦଣା ଶବ୍ଦରେ ମହାରାଣୀର ନିଦ୍ରାରେ ବିଘ୍ନ ଆସିବାର ଆଶଙ୍କା ଥାଏ । ଋତୁର ଉଷ୍ମତା ପାଇଁ

ମହାରାଣୀଙ୍କର ପଲଙ୍କର ଦୁଇପଟେ ଦୁଇଜଣ ଦାସୀ ରହି ପଙ୍ଖା କରୁଥାନ୍ତି । ଦାସୀମାନେ ସେ କାନ୍ଦୁଛି ବୋଲି ଜାଣିଲେ ସେ କ'ଣ ଉତ୍ତର ଦେବ ?

ସେଭଳି ଗରମରେ ମଧ କନ୍ଥା ଘୋଡ଼େଇ ହୋଇ ବାପୀକୁ ଶୋଇଥିବା ଦେଖି ଦାସୀଟିଏ କୌତୂହଳବଶତଃ ପଚାରିଲା – 'ଏତେ ଗରମରେ ବି ବତାସ ତୋତେ ପ୍ରିୟ ଲାଗୁ ନାଇଁ ଯେ କନ୍ଥା ଘୋଡ଼ି ହୋଇ ଶୋଇଛୁ ? କ'ଣ ଶୀତ ହେଉଛି କି ?'

'ହଁ ଭଉଣୀ' ତାର କୋହ ଚାପିରଖି ବାପୀ ଉତ୍ତର ଦେଲା । 'ଶୀତ ଲାଗୁଛି । ଝିଅ ଆସିଗଲେ ଅଳିନ୍ଦରେ ଯାଇ ଶୋଇବି ।'

ପ୍ରାୟ ମଧରାତ୍ରିରେ ହିତା ଜୀବନ୍ତ ଓ ସଶରୀରେ ଫେରିଆସି ମହାରାଣୀଙ୍କର ଶୟନ କକ୍ଷରେ ପ୍ରବେଶ କରିବା ଦେଖି ବାପୀର ପିଣ୍ଡରେ ପ୍ରାଣ ସଞ୍ଚାର ହେଲା । ଘୋଡ଼ଣୀରେ ଥିବା ଦୀପର ପ୍ରକାଶରେ ବାପୀ ଝିଅର ଚେହେରା ଠିକ୍ ଦେଖି ପାରିଲା ନାଇଁ । ମା' ଝିଅର ଅବସ୍ଥା ଜାଣିବା ପାଇଁ ବ୍ୟଗ୍ର ଥିଲା । ଝିଅ ପିଠିରେ କେଜାଣି କେତେ କୋରଡ଼ା ବସିଥିବ ବୋଲି ତାର ଆଶଙ୍କା ହେଉଥାଏ ।

ବାପୀ ହିତାର ବାହୁ ଧରି ତୁରନ୍ତ ଅଳିନ୍ଦକୁ ନେଇଗଲା । ଝିଅର ପିଠି, କଟି, ନିତମ୍ବ, ବାହୁରେ ପ୍ରହାର ଚିହ୍ନ ଦେଖିବାକୁ ଆଉଁଶି ଆଣିଲା ଆଉ ବାଷ୍ପରୁଦ୍ଧ କଣ୍ଠରେ ପଚାରିଲା – 'କ'ଣ ହେଲା ଲୋ !'

'କିଛି ନାଇଁ ତ !'

ଅଧରରେ ବାପୀ ଝିଅର ମୁଖ ଓ ନେତ୍ରର ଭାବ ଜାଣିପାରିଲା ନାହିଁ ମାତ୍ର ହିତାର ସ୍ୱରର ନିର୍ଭୟତା ତା'ର ସବୁ ଆଶଙ୍କା ଦୂର କରିଦେଲା । ଆଶଙ୍କାର ବୋଝ ମୁଣ୍ଡ ଉପରୁ ଉତୁରିଗଲାରୁ ଝିଅର ଜାଣି ଜାଣି ବିପତ୍ତିକୁ ନିମନ୍ତ୍ରଣ କରୁଥିବାର ମୂର୍ଖତା ପାଇଁ ତାର କ୍ରୋଧ ହେଲା ଏବଂ ସେ ଅସ୍ଫୁଟ ସ୍ୱରରେ କହିଲା – କ'ଣ ହୋଇଛି ତୋର ? କାହିଁକି ଜାଣି ଜାଣି ହାଣ ଖାଇବାକୁ ମୁଣ୍ଡ ପାତିବାର ହଠ କରୁଛୁ ?

'କ'ଣ କରୁଛି ମୁଁ ।' ହିତା ସ୍ୱରରେ ଖିନ୍ନତା ପ୍ରକାଶ କଲା । କେଜାଣି ମାଆ, ତୋତେ କ'ଣ କ'ଣ ଦେଖାଯାଉଛି ?' ସାମନ୍ତ ପଚାରୁଥିଲେ ମହାରାଣୀ ତ ନଗର ବିହାରକୁ ଗଲେ, ଶିବିକା ମହାମାତ୍ୟଙ୍କର ଭବନକୁ ନେବାର ଅନୁମତି କିଏ ଦେଲା ?'

'ଉତ୍ତର ଦେଲି, ମହାରାଣୀ ନଗରରେ ପୌରଜନଙ୍କ ଆଗରେ ସଖୀ ଲେଖାର କ୍ରୀଡ଼ା ସଙ୍ଗତି ପାଇଁ ଆଗ୍ରହ ପ୍ରକାଶ କରି କାନ୍ଦିବାକୁ ଲାଗିଲେ, ମୁଁ ଦାସୀ, କ'ଣ କରିପାରିଥାନ୍ତି ?'

'ସାମନ୍ତ ପଚାରିଲେ, ମହାରାଣୀ ରାଜମାତାଙ୍କୁ ଭୁଲି ବିନୋଦଲୀନ ହୋଇ ସାରିଥିଲେ, ମାତାଙ୍କର ସ୍ମୃତି ପୁଣି ଫେରିଆସିଲା କେମିତି ?'

'କହିଦେଲି— ମହାରାଣୀ ଅନେକ ଦିନ ହେଲା ସ୍ୱପ୍ନରେ ରାଜମାତାଙ୍କର ଦର୍ଶନ କରୁଛନ୍ତି । ଚମକି ଚମକି ଉଠି ପଡୁଛନ୍ତି । ଏଇ କାରଣରୁ ସେ ହୁଏତ ଦିନବେଳେ ମାଆଙ୍କୁ ଅଧିକ ସ୍ମରଣ କରୁଛନ୍ତି । ସ୍ୱାମୀ, ହୋଇପାରେ କୋଉ ଦୁଷ୍ଟ କାପାଳିକ ଉଚ୍ଚାଟନ ଉପଚାର ବା ପ୍ରୟୋଗ କରିଥିବ । ତୁ ହେଲେ କହ ତାଙ୍କର ସ୍ୱପ୍ନ ଉପରେ ମୋର କିଛି ବଶ ଅଛି !'

ବାପୀ ଚେତାବନୀ ଦେଇ କହିଲା— 'ଦେଖ ଡାହାଣୀ, ମନେ ମନେ ନିଜକୁ ବେଶ ଦକ୍ଷ ମଣୁଛୁ । ସାମନ୍ତ ପ୍ରତିହାରୀ ଓ ଯବନୀମାନଙ୍କୁ ପଚାରିବେ ନାହିଁ !'

ହିତା ଉପେକ୍ଷାର ସ୍ୱରରେ ଉତ୍ତର ଦେଲା— 'ମୁଁ ଜାଣେ, ତୁ ମୋ କଥାର ସମର୍ଥନ କରିବୁ ନାହିଁ । ଯବନୀମାନେ ତ ମହାରାଣୀଙ୍କୁ ଘଡ଼ିଏ ଦି' ଘଡ଼ି ଦେଖୁଛନ୍ତି । ସେମାନେ କ'ଣ ଜାଣିବେ ! କାଲିକୁ ଆଉଜି ଶୋଇ ପଡୁଛନ୍ତି ।...'

ବାପୀ ତା'ର ମୁହଁ ଟାଣ ଝିଅର ଦୁଃସାହସ ଲାଗି ଆଶଙ୍କାରେ ବିକଳ ହୃଦୟକୁ ଚାପି ଧରିଲା । ଭାବି ହେଲା— କ'ଣ ହୋଇଛି ଏ ମୂର୍ଖୀର ! ସାମନ୍ତ ପ୍ରତାପ ଓ ମହାମାତ୍ୟଙ୍କ ସାଙ୍ଗରେ ପ୍ରତିଯୋଗିତା କରୁଛି ! ଯେମିତି ହାତୀର ଦୃଷ୍ଟିରେ ପଡ଼ିବ ନାହିଁ ବୋଲି ପିମ୍ପୁଡ଼ି ହାତୀ ସାଙ୍ଗରେ ଲଢ଼େଇ କରିବାକୁ ଆହ୍ୱାନ କରେ ! ସେ ହାତୀର ଗୋଟାଏ ଫୁଙ୍କରେ ଧୂଳି ସାଙ୍ଗରେ କୁଆଡ଼େ ଉଡ଼ିଯିବ, ବୁଝିପାରେନି ! ମୂର୍ଖୀ ଏମିତି ନିର୍ଭୟ ହେଉଛି ଯେମିତି ଅତଳ ଖାଇର ଅତ୍ୟୁଚ୍ଚ ତଟରେ ଠିଆହୋଇ ମଧ୍ୟ ଅନ୍ଧ ଭୟର ଅନୁଭବ କରିପାରେ ନାହିଁ । ଏ ସେଭଳି ଆଖିବୁଜି ନାଚୁଛି । କେତେବେଳଯାଏଁ ଗୋଡ଼ ଖସିବ ନାହିଁ ?

ହିତାକୁ ଶଙ୍କାହୀନ ଭାବରେ ମଥାଟେକି ଚାଲିଯିବା ଦେଖିଲେ ବାପୀର ଛାତିରେ ଆଶଙ୍କାର ବର୍ଚ୍ଛା ଭେଦ କରି ଯାଉଥିଲା ଓ ତାର ଆଖି ଲୁହ ଛଳ ଛଳ ହୋଇଯାଉଥିଲା ।

ଦ୍ୱିତୀୟ ଦିନ ଦ୍ୱିତୀୟ ପ୍ରହର ବି ବିତି ନ ଥିଲା, ହିତାର ଅବସ୍ଥା ଦେଖି ବାପୀ ଅଧିକ ଆକୁଳ ହୋଇ ଉଠିଲା । ଦ୍ୱିପ୍ରହରରେ ବାପୀ ଓ ହିତା ମହାରାଣୀଙ୍କର ଭୋଜନ ଆୟୋଜନ କରୁଥିଲେ, ସେତେବେଳେ ଯବନୀ ମୋହା ଆସି ସୁଯୋଗ ଦେଖି ହିତାକୁ ସଂକେତରେ ଡାକି କାନେ କାନେ କ'ଣ କହିଗଲା । ହିତା ମହାରାଣୀଙ୍କୁ ଭୋଜନ କରେଇବା ସମୟରେ ମଧ୍ୟ ଅସ୍ଥିର ଜଣା ଯାଉଥିଲା । ବାରମ୍ବାର ମହାରାଣୀଙ୍କ ସକାଶେ ନୂଆ କଣ୍ଢେଇ ଆଣିବା ଲାଗି ଚିନ୍ତା ପ୍ରକାଶ

କରୁଥିଲା । ଅପରାହ୍ଣରେ ମହାରାଣୀ ପଲଙ୍କଙ୍କୁ ଯିବା କ୍ଷଣି ହିତା ଉଦ୍ଧାଳକୁ କହିଲା ଏବଂ ସୁରକ୍ଷା ପାଇଁ କଞ୍ଚୁକୀ ପାଳିତକୁ ସାଙ୍ଗରେ ନେଇ ଶୀଘ୍ର କଣ୍ଢେଇ ଆଣିବା ପାଇଁ ଚାଲିଗଲା ।

ବ୍ୟାକୁଳ ବାପୀ ଚିନ୍ତିତ ରହିଥାଏ – କେଜାଣି କ'ଣ ହେଲା ଝିଅର; କୌଣସି କଥା ବି ଶୁଣୁ ନାହିଁ । ହୁଏତ ଶୁଣିବି ପାରିବ ନାହିଁ । ହିତା ମୋହାଠାରୁ ମୋଦର ସନ୍ଦେଶ ପାଇ ହିଁ ଯାଇଛି, ଏଥିରେ କୌଣସି ସନ୍ଦେହ ନ ଥିଲା । ସେ ମୂର୍ଖା ପୁଣି ବିଳମ୍ବ କରିବ ଯଦି ଅବସ୍ଥା କ'ଣ ହେବ ? ...

ହିତା ଫେରିବାକୁ ବିଳମ୍ବ କଲା ନାହିଁ । ସେ ଅତିଶୀଘ୍ର ଫେରିଆସିଲା ସତ ମାତ୍ର ମୁହଁ ଦେଖିଲେ ଛଅ ସାତ ମାସର ରୋଗୀ ଭଳି ଦିଶୁଥାଏ । ରଙ୍ଗ ପୀତ, ନେତ୍ର ଉଷାଭଳି ଆରକ୍ତ । ଫୁଲିଲା ଫୁଲିଲା ଓଠ ସଂକୁଚିତ, ସତରେ ଯେମିତି କୋହ ଚାପି ନେବାର ପ୍ରୟାସ କରୁଛି । ମହାରାଣୀଙ୍କର ନିଦ୍ରା ସମାପ୍ତିର ପ୍ରତୀକ୍ଷାରେ ସେ କକ୍ଷର କାନ୍ଥପଟକୁ ମୁହଁ କରି ପଣତ କାନିରେ ଲୁହ ପୋଛି ନେଉଥାଏ ।

ମାଆ ଚିନ୍ତାରେ ପଚାରି ଦେଲା – 'କ'ଣ ହେଲା ଲୋ !'

ହିତା ଓଠ ଚାପି ମଥା ନୁଆଁଇ ନେଲା ଯେଭଳି ତାର କାନ୍ଦଣା ଶୁଣାଯିବ ନାହିଁ ।

ଅମିତା ଉଠିଲାରୁ ସେ ଆଖି ପୋଛିନେଇ ତୁରନ୍ତ ସେବାରେ ଉପସ୍ଥିତ ହେଲା । ତାକୁ ଦେଖି ବାଳିକା ମହାରାଣୀ ମଧ୍ୟ ପଚାରିଦେଲେ – 'ହିତୁ, ତୁ କାନ୍ଦୁଛୁ ? କ'ଣ ହେଲା ତୋର ?'

ହିତା ମୁଣ୍ଡ ବ୍ୟଥା ହେଉଥିବାର ବାହାନା କରି ମହାରାଣୀଙ୍କ ନିକଟରୁ କ୍ଷମା ମାଗିନେଲା ଏବଂ ନିଜକୁ ସମ୍ଭାଳି ନେବାର ଚେଷ୍ଟା କଲା । ମାତ୍ର ତା'ର ଅବସ୍ଥା ଏଭଳି ଥିଲା ଯେ ଦେଖିବା ଲୋକ ନ ପଚାରି ରହିପାରିବ ନାହିଁ । ସେ ସମସ୍ତଙ୍କୁ ଶିରବ୍ୟଥା ତା'ର କାରଣ ବୋଲି କହୁଥିଲା ।

ବାପୀ ଜାଣେ ଯେ ହିତାର ବ୍ୟଥା ମୁଣ୍ଡରେ ନୁହଁ ହୃଦୟରେ ଅଛି । ତାର ପ୍ରତିଲୋମ ଭୟ ଶିହରିତ ହେଉଥିଲା । ଦାସୀକୁ ଆପଣା ଇଚ୍ଛାରେ କାନ୍ଦିବା ଅଧିକାର କ'ଣ; ତେବେ ଉଦ୍ଦଣ୍ଡ ଝିଅକୁ କ'ଣ ବୋଲି ବୁଝେଇବ ?

ବାପୀ କଞ୍ଚୁକୀ ମାତୁଳ ଉଦ୍ଧାଳକୁ ହିତାର ଭୟଙ୍କର ଶିରପୀଡ଼ା ସମ୍ବନ୍ଧରେ କହି ଝିଅକୁ ଅଳିନ୍ଦରେ ମସିଣା ପାରି କନ୍ଥା ଘୋଡ଼େଇ ଶୁଏଇ ଦେଲା ମାତ୍ର ଅମିତା ସ୍ନେହରେ ଅଧୀର ହୋଇ ବାରମ୍ବାର ହିତାକୁ ଡାକୁଥିଲେ ଓ ତା'ପାଖକୁ ଚାଲି ଯାଉଥିଲେ । ହିତାର ଶିରପୀଡ଼ାର ସମାଚାର ସମଗ୍ର ଅନ୍ତଃପୁରରେ ଖେଳିଗଲା ।

ବାପୀ ରାତିର ଦ୍ୱିତୀୟ ପ୍ରହରରେ ଝିଅକୁ ପାଖରେ ଶୁଏଇବା ପରେ ହିଁ ତା'ର ଶିରପୀଡ଼ାର କାରଣ ପଚାରି ପାରିଲା । ହିତା ଆଖି ଉପରେ ହାତ ରଖି କାନ୍ଦି କାନ୍ଦି କହିଲା – 'ରାଜପୁରୁଷ 'ତାକୁ' ନେଇ ଯାଇଛନ୍ତି । କେହି ଜାଣନ୍ତି ନାହିଁ କୁଆଡ଼େ ନେଲେ । କୋଉ ଅନ୍ଧକୂପରେ ସେ ଜୀବିତ ଅଛି ନା ... ।'

ମାଉସୀ ହିତାକୁ ରାଜପୁରୁଷମାନେ ମୋଦକୁ ଧରିନେଇଛନ୍ତି ବୋଲି କହିଥିଲା । ବିଚାରା ମୋଦ ଚୋରି କରି ନାହିଁ କିମ୍ୱା କାହା ଉପରକୁ ହାତ ଉଠେଇ ନାହିଁ । ମୋଦ ନଗର ଦେବାଳୟମାନଙ୍କରେ ଶଙ୍ଖ ବଜେଇ, ଉଚ୍ଚୈସ୍ୱରରେ ରାଜମାତା ମହାରାଣୀ ଶୀଘ୍ର ଫେରିଆସନ୍ତୁ ବୋଲି ପ୍ରାର୍ଥନା କରୁଥିଲା ଏବଂ ଅନ୍ୟମାନଙ୍କୁ ମଧ୍ୟ ସେଭଳି କରିବାକୁ କହୁଥିଲା । ତା'ର ସ୍ୱାମୀ ତା ଉପରେ କୌଣସି ଅଭିଯୋଗ କରି ନାହିଁ କିମ୍ୱା ଆରୋପ ଲଗେଇ ନାହିଁ । ସେ କେତେଦିନ ହେଲା ସକାଳେ ସନ୍ଧ୍ୟାରେ ଅନେକ ଦେବାଳୟକୁ ଯାଉଥିଲା । ରାଜପୁରୁଷଙ୍କର ତା ଉପରେ ଆଖି ପଡ଼ିଲା । ତା ପରେ ସେମାନେ ତାକୁ ସେଭଳି କରୁଥିବା ଦେଖି, ଦିନେ ଧରିନେଲେ । ତିନିଦିନ ହେଲା ବିଟ୍‌ଠଳ ତା'ର କଳାକାର ଦାସକୁ ଖୋଜି ବୁଲୁଛି । ବିଟ୍‌ଠଳ ଯାଇ ନଗରପାଳଙ୍କୁ ପ୍ରାର୍ଥନା କଲା – ମୋର ଦାସ ପଳେଇ ଯାଇଛି କିମ୍ୱା ତାକୁ କେହି ବାନ୍ଧି ରଖିଛି ଅଥବା କେହି ତା'ର ହତ୍ୟା କରିଛି । ନଗରପାଳ ସାହାଯ୍ୟ କରନ୍ତୁ ।

ନଗରପାଳ ଉପେକ୍ଷାରେ ହସିଦେଲା – 'ତମର ଦାସ କ'ଣ ବହୁମୂଲ୍ୟ ସ୍ୱର୍ଣ୍ଣ ଓ ରତ୍ନ ଆଭରଣ ପିନ୍ଧିଥିଲା ଯେ କେହି ଧନଲୋଭରେ ତା'ର ହତ୍ୟା କରିବ ? ତାକୁ କିଏ କାହିଁକି ବା ବାନ୍ଧି ରଖିବ ? ସେ କ'ଣ କମନୀୟ ଲାବଣ୍ୟମୟୀ ଦାସୀଟିଏ ? ଯେ ତାକୁ ଅନ୍ତଃପୁରରେ ରଖି ଉପଭୋଗ କରାଯାଇପାରିବ ? କୋଉଠି ମଦପିଇ ପଡ଼ିଥିବ ବା ଜୁଆରେ ବହୁତ କିଛି ହାରିଯାଇ ଭୟରେ କୁଆଡ଼େ ପଳେଇଥିବ । ଭୋକରେ ଆଉଟି ପାଉଟି ହୋଇ ମରିବ ଯେତେବେଳେ ସେତେବେଳେ ଆପେ ଆପେ ଫେରିଆସିବ । ଯଦି ସେ ପଳେଇ ଯାଇଛି ତାହେଲେ ତାକୁ ଧରିଆଣ, ଆମେ ତାକୁ କଠୋର ଦଣ୍ଡ ଦେବା ।

ବିଟ୍‌ଠଳ ଶୁଣିଥିଲା ଯେ ମୋଦକୁ ରାଜପୁରୁଷ ହିଁ ଧରିନେଇଛନ୍ତି କିନ୍ତୁ ନଗରପାଳ ଆଗରେ ସେକଥା କହିବାକୁ ତାର ସାହସ ହେଲା ନାହିଁ ।

ହିତା ସାରାରାତି ଶୋଇପାରି ନାହିଁ । ଦେବତାମାନଙ୍କ ଆଗରେ ରାଜମାତାଙ୍କର ଫେରିବା ପାଇଁ ପ୍ରାର୍ଥନା କରିବା କାରଣରୁ ରାଜପୁରୁଷମାନେ ମୋଦକୁ ଧରିନେଇଛନ୍ତି, ଏହି ଅନ୍ୟାୟ ବିରୋଧରେ ତାର କ୍ରୋଧ ହେଉଥାଏ । ସେମାନେ ଜଣକୁ ଇଚ୍ଛାମତେ ଦେବତାଙ୍କୁ ପ୍ରାର୍ଥନା କରିବାରେ ବି ବାଧା ଦେଉଛନ୍ତି । ଶ୍ରେଷ୍ଠୀ ସୌମିତ୍ର ଉପରେ

ବି ତା'ର ରାଗ ହେଲା, ସେ ହିଁ ତାକୁ ଦେବମନ୍ଦିରରେ ଶଙ୍ଖ ବଜେଇ ପ୍ରାର୍ଥନା କରିବାର ପରାମର୍ଶ ଦେଇଥିଲେ ।

ହିତାର ମଥା ଚିନ୍ତାରେ ଘୂରିବାକୁ ଲାଗିଲା । ସେ ସ୍ୱୟଂ ବି ତ ଶ୍ରେଷ୍ଠୀଙ୍କର କହିବା ଅନୁସାରେ ମହାରାଣୀଙ୍କୁ ପ୍ରରୋଚିତ କରି କେତେ ଉତ୍ପାତ କରୁ ନାହିଁ । ଅନେକ ଘଟଣା– ମହାରାଣୀଙ୍କର ଗାଈ ଏବଂ ବାଛୁରିକୁ ଦେଖି ନଗରପଥରେ ଦଉଡ଼ିଯିବା ଓ କାନ୍ଦି ପକେଇବା ଏବଂ ବିନା ପୂର୍ବ ସୂଚନାରେ ମହାରାଣୀଙ୍କର ମାତାଙ୍କର ପ୍ରତ୍ୟାଗମନ ନିମନ୍ତେ ଅନୁରୋଧ କରିବାକୁ ମହାମାତ୍ୟଙ୍କର ଭବନକୁ ପହଞ୍ଚେଇ ଦେବା... ସେ କ'ଣ କାର୍ଯ୍ୟର କାରଣ ହୋଇ ନାହିଁ ? ଯଦି ସାମନ୍ତ ପ୍ରତାପ ଓ ମହାମାତ୍ୟ କୌଣସି ପ୍ରକାରେ ଏ ଭେଦ ଜାଣିବେ ତେବେ ତାର ମୁଣ୍ଡ କଟିଯିବାକୁ କେତେବେଳ ଲାଗିବ ? ହିତା କଳ୍ପନା କରି ଦେଖିଲା । ଗୋଟାଏ ବଧିକ ତାର ଗଳାଧରି ମସ୍ତକକୁ କାଠ ଉପରେ ରଖୁଛି ଏବଂ ଆଉଜଣେ ବିକରାଳ ପରଶୁ ତାର ଗ୍ରୀବା ସଳଖ ଉଠେଇ ଧରିଛି । ତାର ସର୍ବାଙ୍ଗ ଝାଳ ସରସର ହୋଇ ଉଠିଲା ।

ହିତା ସାରାରାତି ଚିନ୍ତାରେ କଟେଇଛି । ଯେଉଁ ମାର୍ଗରେ ସେ ଏତେ ଦୂର ଆଗେଇ ସାରିଛି ସେଥିରୁ ଓହରି ଆସିଲେ ମଧ୍ୟ ତା'ର ରକ୍ଷା ନାହିଁ । ମୋଦ ଯଦି କୌଣସି ଅନ୍ଧକୂପରେ ପଡ଼ିଛି ତେବେ ତା'ର ରକ୍ଷା ନିମନ୍ତେ ରାଜମାତାଙ୍କ ନିକଟରେ ପ୍ରାର୍ଥନା କରିବା ହିଁ ଏକମାତ୍ର ଅବଲମ୍ବନ । ମହାମାତ୍ୟଙ୍କ ନିକଟରେ ଏଭଳି ପ୍ରାର୍ଥନାର ଅର୍ଥ ହେବ ନିଜର ଓ ମୋଦର ବେକ ନେଇ ତତ୍କ୍ଷଣାତ୍ ବଳିବେଦୀରେ ରଖିଦେବା । ମୋଦପାଇଁ ସେ ଯେଉଁ ରାସ୍ତାରେ ପାଦ ପକେଇଛି, ସେ ରାସ୍ତାରୁ ଫେରିଆସିବା ମଧ୍ୟ ସମ୍ଭବ ନୁହେଁ । ଏଣିକି ଯାହା ହେଉ ପଛକେ ତାକୁ ବାଳିକା ମହାରାଣୀଙ୍କୁ ରାଜମାତାଙ୍କର ସ୍ମୃତିରେ ବ୍ୟାକୁଳ କରି ମହାମାତ୍ୟଙ୍କୁ ରାଜମାତାଙ୍କୁ ଅଣେଇବାଲାଗି ବିବଶ କରିବାକୁ ହିଁ ପଡ଼ିବ । ମହାମାତ୍ୟଙ୍କୁ ଭୟ କରିବ ନାହିଁ କାରଣ ଭୟ କଲେ ରକ୍ଷା ଆଦୌ ମିଳିବ ନାହିଁ ।

ହିତାର ଗୁପ୍ତ ପରାମର୍ଶ ଲାଗି ବାଳିକା ମହାରାଣୀଙ୍କ ମନରେ ମାତାଙ୍କ ଲାଗି ବ୍ୟାକୁଳ ଭାବ ନିତ୍ୟ ବଢ଼ିବାକୁ ଲାଗିଲା । ହିତା ଏ ପ୍ରସଙ୍ଗରେ ଆପଣାର ଅସମର୍ଥତା ପ୍ରକାଶ କରି ସାମନ୍ତ ପ୍ରତାପଙ୍କ ନିକଟରେ ନିବେଦନ କଲା । ସମ୍ଭବତଃ ସ୍ଥବିରଙ୍କର ଆଶୀର୍ବାଦ ଫଳରେ ମହାରାଣୀଙ୍କର ମନ ସ୍ଥିର ହେବ ଅଥବା କୌଣସି ତାନ୍ତ୍ରିକଠାରୁ କବଚ ଆଣି ଧାରଣ କରେଇଲେ ହୁଏତ ମାତାଙ୍କୁ ମହାରାଣୀ ସ୍ମରଣ କରିବେ ନାହିଁ ।

ସ୍ୱୟଂ ସାମନ୍ତ ମଧ୍ୟ କିଛିଟା ସେଇଭଳି ଭାବୁଥିଲେ । ସେ ମହାବିହାରରେ ମହାସ୍ଥବିର ଜୀବକଙ୍କୁ ବାଳିକା ମହାରାଣୀଙ୍କର ମାନସିକ ଶାନ୍ତି-ବିଧାନପାଇଁ ପ୍ରାର୍ଥନା କରିବାକୁ ନିବେଦନ କଲେ । ଜଣେ ଆଚାର୍ଯ୍ୟଙ୍କୁ ମହାରାଣୀଙ୍କର ମାନସିକ ଶାନ୍ତି ନିମନ୍ତେ ପ୍ରାସାଦରେ ହବନ ବ୍ୟବସ୍ଥା କରାହେଲା । ପୂଜା ଅର୍ଚ୍ଚନାର ଆୟୋଜନ ହେଲା । ଜଣେ ତାନ୍ତ୍ରିକଙ୍କୁ ମଧ୍ୟ ଦୋଷ ପ୍ରତିକାର ନିମନ୍ତେ ବରଣ କରାଗଲା ।

ହିତା ପ୍ରତ୍ୟକ୍ଷରେ ସାମନ୍ତ ପ୍ରତାପଙ୍କର ଆଦେଶ ଅନୁସାରେ ବାଳିକା ମହାରାଣୀଙ୍କର ମନର ଶାନ୍ତି ସକାଶେ ଉପଚାର କରାଉଥିଲା ଏବଂ ତେଣେ ପରୋକ୍ଷରେ ବାଳିକା ମନରେ ବାରମ୍ବାର ମାତୃସ୍ମୃତି ଜାଗ୍ରତ କରେଇ ସେହି ଉପଚାରକୁ ବ୍ୟର୍ଥ କରୁଥିଲା ।

ହିତା ବାଳିକା ମନରେ ଏକ ନୂତନ କଣ୍ଢେଇ ଖେଳର କୌତୂହଳ ଜାଗ୍ରତ କଲା । ଅମିତା ବାରମ୍ବାର ପଚାରିବା ଫଳରେ ସେ ମାତାଙ୍କର ଦୀର୍ଘକାଳୀନ ତପସ୍ୟାରୁ ଫେରିବାର ଖେଳ ଖେଳିବାର ପ୍ରସ୍ତାବ ଦେଇଥିଲା ।

ଅମିତା 'ଝିଅ କଣ୍ଢେଇ'କୁ ଆପଣା କକ୍ଷକୁ ନେଇ 'ମାତା କଣ୍ଢେଇ'ର ପ୍ରତୀକ୍ଷା କରୁଥିଲେ । ହିତା ଏକ ଛୋଟ ଧାଳିଙ୍କିରେ 'ମାତା କଣ୍ଢେଇ'କୁ ଅଳିନ୍ଦକୁ ଆଣୁଥିବା ବେଳେ, ଆସିପାରୁ ନ ଥିବା ହେତୁ ବିଳମ୍ବରେ ଅସ୍ଥିର ହୋଇ ଅମିତା ଡାକ ଦେଇ କହିଲେ – 'ହିତୁ, କଣ୍ଢେଇର ମାଆଙ୍କୁ ଆଣ ! କାହିଁକି ଆଣୁନୁ ?'

ବାଳିକା ମହାରାଣୀଙ୍କ କ୍ଷୁବ୍ଧ ହୋଇଥିବା ଡାକରାରେ ହିତା କକ୍ଷ ମଧ୍ୟରେ ପ୍ରବେଶ କଲା ଏବଂ କାତର ସ୍ୱରରେ ତାର ଅସମର୍ଥତା ପ୍ରକାଶ କଲା । 'ମହାରାଣୀ, କଣ୍ଢେଇର ମାତା ରୁଷି ବସିଛି । ତୀର୍ଥ ତପରୁ ଆସୁ ନାହିଁ । କହୁଛି, ଝିଅ ମହାରାଣୀ ହୋଇଛି । ସେ ନିଜେ ଆସିଲେ ମୁଁ ଯିବି !'

ହିତାର କଥା ସଠିକ ବୁଝିବା ପାଇଁ ଅମିତା ଆପଣା ପାଦ ମୁଠେଇ ଧରି ହିତାର ମୁହଁକୁ ନିରୀହ ଆଖିରେ ଅନେଇ ରହିଥିଲେ । ବାଳ-ବୁଦ୍ଧିରେ ବିଚାର କରି ସେ ଉଦ୍‌ବିଗ୍ନ ସ୍ୱରରେ ପଚାରିଲେ – 'ମୁଁ ବି ଯଦି ମାଆଙ୍କୁ ଡାକିବା ପାଇଁ ଯାଏ ତାହେଲେ କ'ଣ ସେ ତୀର୍ଥଯାତ୍ରାରୁ ଫେରିଆସିବେ !'

ହିତାର ପରାମର୍ଶରେ 'ଝିଅ କଣ୍ଢେଇ'କୁ ନେଇ ଅମିତା ଅଳିନ୍ଦକୁ ଆସି 'ମାତା କଣ୍ଢେଇ'କୁ ଡାକିଲେ ଆଉ ସେଠାରେ ମାଆ ଝିଅର ମିଳନ ହେଲା । ସକାଳେ କିମ୍ବା ଦ୍ୱିପ୍ରହର ପରେ ଅମିତାଙ୍କୁ ଶୁଏଇବା ବେଳେ କାନ ପାଖରେ ମୁହଁ ଲଗେଇ କିମ୍ବା ଉଠିବା ପରେ ପରେ ସୁଯୋଗ ଦେଖି କୌଣସି ନା କୌଣସି ପ୍ରସଙ୍ଗ କ୍ରମେ ହିତା ମାତାଙ୍କର ସ୍ମରଣ କରାଇ ଦେଉଥିଲା – 'ମହାରାଣୀ ସ୍ୱପ୍ନରେ ରାଜମାତାଙ୍କୁ ଦେଖିବେ... ଅବା ସ୍ୱପ୍ନରେ ରାଜମାତା ମହାରାଣୀଙ୍କୁ ଗେଲ କଲେ ନା !'

ଅପରାହ୍ଣରେ ଅମିତା ଶୋଇ ଉଠିଲା ପରେ ପରେ ଧୀରକଣ୍ଠରେ ହିତା ପଚାରିଲା– 'ମହାରାଣୀ ସ୍ୱପ୍ନରେ ରାଜମାତାଙ୍କୁ ଡାକି ଆଣିବାକୁ ଯାଇଥିଲେ ନା ! ... ମହାରାଣୀ ମାତାଙ୍କୁ ଡାକିବା ପାଇଁ ଉତ୍ତରଦ୍ୱାରକୁ ଯିବେ ନା ?'

କଞ୍ଚୁକୀ ଉଦ୍ଧାଳ ସ୍ୱର ଶୁଣି ଅନୁମାନ କଲା ମହାରାଣୀ ଉଠିଲେଣି । ସେ କକ୍ଷକୁ ପ୍ରବେଶ କରି ଶୁଣିଲା । ମହାରାଣୀ କହୁଥିଲେ– 'ମୁଁ ଉତ୍ତରଦ୍ୱାରକୁ ଯିବି ।'

କଞ୍ଚୁକୀକୁ ଦେଖି ଅମିତା କହିଲେ– 'ଉଦ୍ଧାଳ, ମୁଁ ମାଆଙ୍କୁ ଡାକିବାକୁ ଉତ୍ତରଦ୍ୱାରକୁ ଯିବି । ଶିବିକା ଆଣ ।'

ହିତା ଉଦ୍ଧାଳକୁ ପାଖରେ ଦେଖି ମହାରାଣୀଙ୍କୁ ସ୍ନେହରେ ବୁଝେଇବାକୁ ଲାଗିଲା– ନା' ମହାରାଣୀ, ତୀର୍ଥ ଅନେକ ଦୂର, ଏଠାରୁ ଶହେ ଯୋଜନ । ରାସ୍ତାରେ ଗହନ ବଣ । ବଣରେ ଭାଲୁ, ସିଂହ, ବାଘ କେତେ କ'ଣ ଅଛନ୍ତି ।

ମାତ୍ର ଅମିତା କହି ଚାଲିଥିଲେ 'ମୁଁ ଧନୁ, ବର୍ଚ୍ଛା, ଅଙ୍ଗରକ୍ଷକମାନଙ୍କୁ ନେଇଯିବି । ବଭ୍ରୁକୁ ବି ସାଙ୍ଗରେ ନେବି । ସେ ସିଂହକୁ ମାରି ପକେଇବ ।'

ଉଦ୍ଧାଳ ଏଭଳି ପରିସ୍ଥିତିରେ କ'ଣ କରିବ ଚିନ୍ତା କରୁଥାଏ ମହାରାଣୀଙ୍କର ରାଜମାତାଙ୍କୁ ଡାକି ଆଣିବା ପାଇଁ ଉତ୍ତରଦ୍ୱାରକୁ ଯିବାପାଇଁ ବାଳ-ଆଗ୍ରହର ବୃତ୍ତାନ୍ତ ସାମନ୍ତ ପ୍ରତାପଙ୍କୁ କହିବାକୁ ସାହସ କରିପାରୁ ନ ଥିଲା; ସଂପୂର୍ଣ୍ଣ ବୃତ୍ତାନ୍ତ ଶୁଣେଇବାର ଆବଶ୍ୟକତା ମଧ୍ୟ ନ ଥିଲା । ବାଳିକା ମହାରାଣୀଙ୍କର ନଗର ବିହାରକୁ ଯିବାର ଇଚ୍ଛା ବିଷୟରେ କହିଲେ ମଧ୍ୟ ଶିବିକା ଆସିବ । ଉଦ୍ଧାଳ ଯାଇ ସାମନ୍ତ ପ୍ରତାପଙ୍କୁ ନିବେଦନ କରି କହିଲା– 'ମହାରାଣୀ ନଗର ବିହାରକୁ ଯିବେ ବୋଲି ଇଚ୍ଛା କରୁଛନ୍ତି ।'

ବାଳିକା ମହାରାଣୀ ପ୍ରଜାଙ୍କ ସମ୍ମୁଖକୁ ଯାଇ ରାଜସମ୍ମାନ ଓ ରାଜଗୌରବର ଅନୁକୂଳ ବ୍ୟବହାର କରି ପାରୁ ନ ଥିଲେ । ମହାମାତ୍ୟ ସେଭଳି ଘଟଣାରେ କ୍ଷୋଭ ପ୍ରକାଶ କରୁଥିଲେ । ସେ ସାମନ୍ତ ପ୍ରତାପଙ୍କୁ ପରାମର୍ଶ ଦେଇଥିଲେ– ରାଜା ଓ ଦେବଦର୍ଶନ ପ୍ରଜାଙ୍କର ଏକ ଦୁର୍ଲଭ ସୌଭାଗ୍ୟ । ପ୍ରଜା ସେଭଳି ନିତ୍ୟ ଦର୍ଶନର ଭାର ବହନ କରିପାରିବ ନାହିଁ । ଏଭଳି ଅବସର ପ୍ରଜା ନିତ୍ୟ ପାଇଲେ ତାଙ୍କର ଦୃଷ୍ଟିରେ ତା'ର ମହତ୍ତ୍ୱ ଏବଂ ପ୍ରତିଷ୍ଠା ଉଭୟ ରହିବ ନାହିଁ । ପ୍ରତୀକ୍ଷାର ଉତ୍କଣ୍ଠା ମଧ୍ୟ ରହିବ ନାହିଁ । ପ୍ରାସାଦରେ ମହାରାଣୀଙ୍କର ବିନୋଦ ନିମନ୍ତେ କେଉଁ ସାଧନ ଦୁର୍ଲଭ ହେବ ! ତାଙ୍କର ରାଜପ୍ରାସାଦରୁ ବାହାରକୁ ଯିବାର ଇଚ୍ଛା ହେଲେ କେମିତି ହେବ ?

ସାମନ୍ତ, ମହାରାଣୀ ନଗର ବିହାରକୁ ଯିବା ପାଇଁ ଇଚ୍ଛା କରନ୍ତୁ ନାହିଁ ବୋଲି ପ୍ରୟାସ କରୁଥିଲେ । ତାଙ୍କର ନଗର ବିହାରର ଇଚ୍ଛା ବିଷୟରେ ଅବଗତ ହେଲେ ବାଳିକାଙ୍କୁ ଅନ୍ୟକୌଣସି ବିନୋଦରେ ନିମଗ୍ନ କରି ରଖିବାର ଆଦେଶ ଦେଉଥିଲେ ।

ସାମନ୍ତ ଉଦ୍ଧାଳଠାରୁ ମହାରାଣୀଙ୍କର ନଗର ବିହାରର ଇଚ୍ଛା ବିଷୟରେ ଶୁଣି ତାଙ୍କର ବିନୋଦ ନିମନ୍ତେ ନଟୀର କୌତୁକ କାର୍ଯ୍ୟକ୍ରମ କରାଇବାକୁ ଆଦେଶ ଦେଇଥିଲେ ମାତ୍ର ଅମିତା ତାଙ୍କର ହଠରେ ଅବିଚଳ ଥିଲେ । ସେ ନଗର ବିହାରରେ ଉତ୍ତରଦ୍ୱାର ପର୍ଯ୍ୟନ୍ତ ଯିବାର ଇଚ୍ଛା ବାରମ୍ବାର କରିବାକୁ ଲାଗିଲେ । ସାମନ୍ତଙ୍କୁ ବାଧ ହୋଇ ମହାରାଣୀଙ୍କ ପାଇଁ ଶିବିକା ପ୍ରସ୍ତୁତ କରିବାକୁ ଆଦେଶ ଦେବାକୁ ପଡ଼ିଲା ।

ସାମନ୍ତ ପ୍ରତାପ ମହାରାଣୀଙ୍କର ଉତ୍ତର ସିଂହଦ୍ୱାର ପର୍ଯ୍ୟନ୍ତ ନଗର ବିହାର ପାଇଁ ଶିବିକା ପ୍ରସ୍ତୁତିର ଅନୁମତି ଦେଲେ ସିନା । ତାହା ସହିତ ନଗରପାଳଙ୍କୁ ମଧ୍ୟ ସମାଚାର ଦେଇ ସତର୍କ କରାଇ ଦେଲେ ଯେ ମହାରାଣୀ ଏହି ମାର୍ଗରେ ନଗର ଭ୍ରମଣ ନିମନ୍ତେ ଉତ୍ତର ସିଂହଦ୍ୱାର ପର୍ଯ୍ୟନ୍ତ ଯିବେ । ମାର୍ଗରେ ଗହଳି ଏବଂ କୌଣସି ପ୍ରକାର କ୍ଷୁବ୍ଧ ହେବାଭଳି କଥା ଯେଭଳି ନ ହୁଏ ସେଥିପ୍ରତି ସାବଧାନ ଥିବେ ।

ସେ ସମୟରେ ସାମନ୍ତ ମହାରାଣୀଙ୍କର ନଗର ବିହାରର ଇଚ୍ଛାହେତୁ ବିଶେଷ ଆତଙ୍କିତ ଥିଲେ, କାରଣ ମଗଧସେନା କଳିଙ୍ଗ ରାଜ୍ୟର ଅନେକ ଭିତରକୁ ପ୍ରବେଶ କରିସାରିଥିଲା । ପ୍ରତିଦିନ ଶତାଧିକ ଆହତ ସୈନିକ ଯୁଦ୍ଧକ୍ଷେତ୍ରରୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ଉତ୍ତରରୁ ପଳାୟନ କରି ଆସୁଥିବା ପ୍ରଜାମାନେ କୌଣସି କ୍ଷେତ୍ରରେ ଶରଣ ନ ମିଳିଲେ ରାଜପଥର ଉଭୟ ପାର୍ଶ୍ୱରେ ଥିବା ଭବନମାନଙ୍କର ବାରଣ୍ଡାରେ ଆଶ୍ରୟ ଗ୍ରହଣ କରିଥିଲେ କିମ୍ବା ମସିଣା ପାରି ପଥପାର୍ଶ୍ୱରେ ଏଣେ ତେଣେ ଆଶ୍ରୟ କରି ରହିଥିଲେ । ନଗରର ଅବସ୍ଥା ଅତ୍ୟନ୍ତ ବିରୂପ ହୋଇଥିଲା ।

ମହାରାଣୀଙ୍କର ଶିବିକା ଦ୍ରୁତଗତିରେ ଉତ୍ତର ସିଂହଦ୍ୱାର ଅଭିମୁଖରେ ବଢ଼ି ଚାଲିଥିଲା । ନଗରପାଳଙ୍କର ସାବଧାନତା ହେତୁ ନଗରପଥରେ କେବଳ ସଶସ୍ତ୍ର ସୈନିକ ହିଁ ଦେଖା ଯାଉଥିଲେ । ଶିବିକା ସମ୍ମୁଖରେ ଚାଲିଥିବା ରାଜ ଚିହ୍ନଧାରୀ ଚାରଣମାନଙ୍କର ଘୋଷ ଶୁଣି ସୈନିକମାନେ ଜୟଘୋଷ କରି ନତଶିର ହୋଇ ସମ୍ମାନ ପ୍ରଦର୍ଶନ କରୁଥିଲେ । ଅମିତା ଏହି ନୂତନ ବ୍ୟବହାର ଦେଖି ବିସ୍ମିତ ଓ ପ୍ରସନ୍ନ ଉଭୟ ହେଉଥିଲେ । ନଗର ସିଂହଦ୍ୱାରରେ ଅଧିକସଂଖ୍ୟକ ସୈନ୍ୟ ମୁତୟନ ହୋଇ ରହିଥିଲେ । ସୈନିକମାନେ ବାଳିକା ମହାରାଣୀଙ୍କ ପ୍ରତି ବିଧିବତ୍ ସମ୍ମାନ ପ୍ରଦର୍ଶନ କଲେ ।

ମହାରାଣୀଙ୍କୁ ସିଂହଦ୍ୱାରର ସମ୍ମୁଖ ପଥରେ ନଗର ଅଭିମୁଖରେ ଯାଉଥିବା ଅନେକ ଯାତ୍ରୀ ଦେଖାଗଲେ । ସମୂହରେ କେବଳ ସୈନିକମାନେ ହିଁ ଥିଲେ । ସେଇ ସୈନିକମାନଙ୍କର ବସ୍ତ୍ର ବହୁଳାଂଶ ଚିରି ଯାଇଥିଲା । କେତେକ ଲାଠି କିମ୍ବା ବଲ୍ଲମ ଭରା ଦେଇ ଛୋଟେଇ ଚାଲିଥିଲେ । କେହି କେହି ସୈନିକ ମୋଟା ମୋଟା ବାଉଁଶରେ ଦୋଳି ଭଳି ଚାଦର କିମ୍ବା ଧୋତି ବାନ୍ଧି, ସେଥିରେ କେହି ଆହତ ସୈନିକକୁ କାନ୍ଧେଇ ଚାଲିଥିଲେ । ସେମାନଙ୍କୁ ଦେଖି କହିଉଠିଲେ – 'ଆରେ, ଏ କିଭଳି ଶିବିକା ! ମୁଁ ସେ ଶିବିକାରେ ବସିବି !'

ରାଜକୀୟ ଶିବିକାର ଅଙ୍ଗରକ୍ଷକମାନଙ୍କର ନାୟକ ପାଖକୁ ଆସି ବୁଝେଇଲା – 'ପରମ ଭଗବତୀ ମହାରାଣୀ, ଏହା ଆହତ ସୈନିକଙ୍କର ଶିବିକା । ତାହା ମହାରାଣୀଙ୍କର ଯୋଗ୍ୟ ନୁହେଁ ।'

ଅମିତା କିଛିକ୍ଷଣ ବିସ୍ମୟରେ ମୌନ ରହିଲେ । ଏକ ନୂତନ ବସ୍ତୁ ଦେଖି ତାକୁ ଦେଖିବାର ଆଗ୍ରହ ପ୍ରକାଶ କଲେ । 'ମୁଁ ତାକୁ ଦେଖିବି ।'

ନାୟକଙ୍କର ସଂକେତ ପାଇ ଆହତ ସୈନିକଙ୍କୁ କାନ୍ଧେଇଥିବା ସୈନିକମାନେ ମହାରାଣୀଙ୍କର ଶିବିକା ନିକଟରେ ପହଞ୍ଚିଲେ । ତାକୁ ଘୋଡ଼େଇ ଦିଆ ହୋଇଥିବା ବସ୍ତ୍ରରେ ଅନେକ ରକ୍ତ ଲାଗି ଶୁଖି ଯାଇଥିଲା । ତାର ରକ୍ତସ୍ନାତ ମୁହଁ ଫୁଲି ଆହୁରି ବିକୃତ ଦିଶୁଥିଲା । ଆଖି ବୁଜି ହୋଇ ରହିଥିଲା । ତା'ର ଫୁଲିଲା ଫୁଲିଲା ଓଠରୁ ପୀଡ଼ାର ଅସ୍ଫୁଟ ଧ୍ୱନି ଶୁଣା ଯାଉଥିଲା । ସୈନିକର ଏଭଳି ଅବସ୍ଥା ଦେଖି ବାଳିକା ମହାରାଣୀଙ୍କର ହୃଦୟରେ ଭୟ ଓ କରୁଣା ଭରିଗଲା ।

ଅମିତା ସେ ପଟୁ ମୁହଁ ଫେରାଇନେଲେ । ସେ ଅନ୍ୟ ସୈନିକଙ୍କୁ ଅନେଇଲେ । ପାଖକୁ ଆସିଥିବା ଅଧିକାଂଶ ସୈନିକଙ୍କର ବସ୍ତ୍ର ରକ୍ତାକ୍ତ ଓ ଚିରି ଯାଇଥିଲା । କେତେକଙ୍କର ମସ୍ତକରେ ବନ୍ଧା ହୋଇଥିବା ବସ୍ତ୍ର ମଧ୍ୟ ରକ୍ତାକ୍ତ ଥିଲା । ଆଉ ସେମାନେ ସେମାନଙ୍କ ସାଙ୍ଗରେ ଚାଲିଥିବା ଆହତ ସୈନିକମାନଙ୍କର ଲାଠି ଧରି ପାରସ୍ପରିକ ସାହାଯ୍ୟରେ ଚାଲିଥିଲେ ।

ଅମିତା ଆତଙ୍କିତ ସ୍ୱରରେ ପଚାରିଲେ – 'ଏ କ'ଣ ?'

ସିଂହଦ୍ୱାରସ୍ଥ ସୈନିକ ପାଖକୁ ଆସି ଭୂମି ସ୍ପର୍ଶ କରି ପ୍ରଣାମ କରି କହିଲା – 'ମହାମହିମାମୟୀ, ପରମ ଭଗବତୀ ରାଜେଶ୍ୱରୀ ଏହି ସୈନିକମାନଙ୍କୁ ଆକ୍ରମଣକାରୀ ଆତତାୟୀ ଚଣ୍ଡ ଅଶୋକର ସୈନିକମାନେ ମାରିଛନ୍ତି ।'

ବାଳିକା ଉତ୍ତରର ଅଭିପ୍ରାୟ ବୁଝିପାରିଲେ ନାହିଁ । ତାଙ୍କର ନେତ୍ର ଆତଙ୍କ ବିସ୍ଫାରିତ ହୋଇ ଉଠିଲା । ସେ ପଚାରିଲେ – 'କେଉଁଠି ଅଛି ଅଶୋକ ?'

ନାୟକ ପୁନଶ୍ଚ ଭୂମି ସ୍ପର୍ଶ କରି ଉତ୍ତର ଦେଲା – 'ପରମ ଭଗବତୀ, ଚଣ୍ଡ ଅଶୋକ ଅନେକ ଦୂରରେ ... ସେ କଳିଙ୍ଗ ଉପରେ ଆକ୍ରମଣ କରିବାକୁ ଆସୁଛି ।'

ଅମିତାଙ୍କର ବିସ୍ମୟ ବଢ଼ିଲା । ସେ ପ୍ରଶ୍ନ କଲେ – 'ଅଶୋକ କ'ଣ କରିବ ?'

ନାୟକ ପୁନଶ୍ଚ ବିନୟ ସହକାରେ କହିଲା – ପରମ ଭଗବତୀ, ଅଶୋକ ମହାଦୁଷ୍ଟ । ସେ ମହାରାଣୀଙ୍କର ପ୍ରଜାଙ୍କର ଧନ ଲୁଣ୍ଠନ କରିବ, ସେମାନଙ୍କୁ ହତ୍ୟା କରିବ ।

'ତାକୁ ବାନ୍ଧିନିଅ' । ଅମିତା କହିଲେ – 'ମାତା ଆଦେଶ ଦେଇଛନ୍ତି କାହାର ଲୁଣ୍ଠନ କର ନାହିଁ । କାହାରିକୁ ଡରାଅ ନାହିଁ । କାହାରିକୁ ହତ୍ୟା କର ନାହିଁ ! ତମେମାନେ ଅଶୋକକୁ ଜଞ୍ଜିରରେ ବାନ୍ଧି ପକାଅ ।'

ନାୟକ ନିବେଦନ କଲା – 'ପରମ ଭଗବତୀଙ୍କର ଆଦେଶରେ ମହାସେନାପତି ଅଶୋକକୁ ବାନ୍ଧିବାକୁ ଯାଇଛନ୍ତି ।'

ଅମିତା ପଚାରିଲେ, 'କାକା କେତେବେଳେ ଗଲେ !'

ନାୟକ ମଥାନତ କରି ଉତ୍ତର ଦେଲା – 'ପରମ ଭଗବତୀ ଅଭୟ ଦାନ କରନ୍ତୁ । ଏ ସୈନିକ ଆଚାର୍ଯ୍ୟ ମହାମାତ୍ୟଙ୍କର ଆଦେଶରେ ଅଶୋକ ସହିତ ଯୁଦ୍ଧ କରିବାକୁ ଏଠାରେ ଅଛନ୍ତି ।

ଅମିତା ବିସ୍ମିତ ହୋଇ ପ୍ରଶ୍ନ କଲେ – 'କ'ଣ ଅଶୋକ ଏଠାକୁ ଆସିବ ।'

ସେନାନାୟକ ବିନୟ ସହକାରେ କହିଲା – 'ପରମ ଭଗବତୀ, ଏହା ବିଧାତା ଜାଣିବେ । ତେବେ ଯଦି ଅଶୋକ ଆସେ ତେବେ ସେବକ ତାକୁ ବଧ କରିବାକୁ ପ୍ରାଣବଳି ଦେଇଦେବ ।'

'ନା' ନା ।' ଅମିତା ମୁଣ୍ଡ ହଲେଇ ତାଙ୍କର କୁଞ୍ଚିତ କେଶ ଆନ୍ଦୋଳିତ କରି ନିଷେଧ କଲେ 'ନା', ତୁମେ କାହାକୁ ହେଲେ ମାରିବ ନାହିଁ । ମାତା କହନ୍ତି – କାହାର ଲୁଣ୍ଠନ କର ନାହିଁ, କାହାକୁ ମାର ନାହିଁ, କାହାକୁ ଡରାଅ ନାହିଁ । ତମେ କାହାକୁ ମାରିବ ନାହିଁ । ତମେ ଅଶୋକ ଆସିଲେ ମୋତେ କହିବ ମୁଁ ଜଞ୍ଜିରରେ ବାନ୍ଧି ପକେଇବି । ସେ କାହାରିକୁ ମାରିବ ନାହିଁ କି ଲୁଣ୍ଠନ କରିବ ନାହିଁ ।'

ସେନାନାୟକ ମୌନ ହୋଇ ନତମସ୍ତକ ରହିଥିଲା ।

ପାଲିଙ୍କିର ଅଙ୍ଗରକ୍ଷକ ନାୟକ ହିତାର ସମୀପକୁ ଆସି କଥା ହେଲା । ହିତା ଅମିତାଙ୍କ ନିକଟକୁ ଆସି ନିବେଦନ କଲା – 'ପରମ ଭଗବତୀ ମହାରାଣୀ, ସୂର୍ଯ୍ୟାସ୍ତ ସମୟ ହେଲା । ମହାରାଣୀ ପ୍ରାସାଦକୁ ଚାଲନ୍ତୁ ।'

ଅମିତା ହିତାର ପ୍ରାର୍ଥନା ପ୍ରତି ଧ୍ୟାନ ଦେଲେ ନାହିଁ । ସେ ଶିବିକାରୁ ଓହ୍ଲେଇବାର ଇଚ୍ଛା ପ୍ରକାଶ କଲେ । ଓହ୍ଲେଇ ଦେବା ପରେ ସେ ଆହତ ସୈନିକମାନଙ୍କ ନିକଟକୁ ଚାଲିଗଲେ ।

ଜଣେ ସୈନିକ ଆଣ୍ଠୁର ଆଘାତ ଲାଗି ଆଉ ଜଣକର କାନ୍ଧ ଉପରେ ଭରା ଦେଇ ଠିଆ ହୋଇଥିଲା । ଅମିତା ତାକୁ ଦେଖି ପ୍ରଶ୍ନ କଲେ— 'ତମକୁ ଅନେକ କଷ୍ଟ ହେଉଛି ?'

ସୈନିକ ମହାରାଣୀଙ୍କୁ ଆଦରରେ ଦେଖି ଭୂମି ସ୍ପର୍ଶ କରି ମୌନ ହୋଇ ରହିଲା ।

ଅମିତା ପୁଣି ପଚାରିଲେ— 'ତମ ଆଣ୍ଠୁରେ ମାରିଲା କିଏ ?'

ସୈନିକର ଉତ୍ତର ଦେବାର ସାହସ ହେଲା ନାହିଁ । କିନ୍ତୁ ସିଂହଦ୍ୱାରର ନାୟକ ଆଗକୁ ବଢ଼ିଆସି ଉତ୍ତର ଦେଲା— 'ପରମ ଭଗବତୀ ଅନ୍ନଦାତ୍ରୀ, ଏହାର ଆଣ୍ଠୁ ଯୁଦ୍ଧରେ ଭାଙ୍ଗି ଯାଇଛି ।'

ଅମିତାଙ୍କର ମୁଖମଣ୍ଡଳରେ କରୁଣାର ଭାବ ଖେଳିଗଲା । ସେ ଆହତ ସୈନିକକୁ ସମ୍ବୋଧିତ କରି କହିଲେ— 'ତମେ କାହିଁକି ଯୁଦ୍ଧ କରିବାକୁ ଯାଇଥିଲ ? ତମେ ସେଭଳି ଖେଳ ଖେଳିବ ନାହିଁ । ତମେ ଯୁଦ୍ଧକୁ ଯାଅ ନାହିଁ । କେହି ବି ଯିବେ ନାହିଁ ।'

ସୈନିକ କୌଣସି ଉତ୍ତର ଦେଇପାରିଲା ନାହିଁ । ଅମିତା ପୁଣି କହିଲେ 'ତମର ଅନେକ ପୀଡ଼ା ହେଉଥିବ, ଚାଲିପାରୁନ, ଆସ ମୋର ଶିବିକାରେ ବସିପଡ଼ ।'

ମହାରାଣୀଙ୍କର ଆଦେଶ ଶୁଣି ସୈନିକ ଥରିଗଲା । ସେ ଭୂମି ସ୍ପର୍ଶ କରି ମହାରାଣୀଙ୍କୁ ପ୍ରଣାମ କଲା ଓ ମୌନ ହୋଇ ଠିଆ ହୋଇ ରହିଲା ।

ଅମିତା ପୁଣି କହିଲେ— 'ତମେ ଶିବିକାରେ ବସ । ମୁଁ ତମ ସାଙ୍ଗରେ ଚାଲିଯିବି । ମୋର ପାଦରେ ପୀଡ଼ା ନାହିଁ । ମୁଁ ଅତି ବେଗରେ ଯାଇପାରିବି । ମୋ ସାଙ୍ଗରେ ଦଉଡ଼ିଲେ ହିତା ହାରିଯାଏ ।'

ସୈନିକକୁ ନିଶ୍ଚଳ ରହିଥିବା ଦେଖି ଅମିତା ଅଙ୍ଗରକ୍ଷକ ସୈନିକ ଓ ହିତାକୁ ଆଦେଶ ଦେଇ କହିଲେ— 'ଏହା ମୋର ଆଦେଶ । ସୈନିକକୁ ଶିବିକାରେ ବସେଇଦିଅ ।'

ନାୟକ ଧର୍ମ ସଂକଟରେ ମଥାନତ କରି ରହିଲା । ମହାରାଣୀଙ୍କର ଆଦେଶ ପାଳନ ନ କରିବା ଅଧର୍ମ ଏବଂ ମହାରାଣୀଙ୍କର ଶିବିକାରେ ଜଣେ ସାଧାରଣ ମଣିଷକୁ ବସେଇ ରାଜବାହନର ଅପମାନ କରିବା ମଧ୍ୟ ଅଧର୍ମ ।

ଅମିତା ତାଙ୍କର ଇଚ୍ଛାପୂରଣ ହେଉ ନ ଥିବା ଦେଖି ବ୍ୟଗ୍ର ହୋଇ ହିତାର ପଣତ ଟାଣି କହିଲେ– 'ହିତୁ, ସୈନିକ ମୋର ଆଦେଶ ପାଳନ କରୁ ନାହିଁ । ତୁ ତାକୁ ଶିବିକାରେ ବସେଇ ଦେ !'

ଅଙ୍ଗରକ୍ଷକଙ୍କର ନାୟକ ଦେଖିଲା ଯେ ବାଳିକା ମହାରାଣୀଙ୍କର ଆଦେଶ ପାଳନ ନ ହେଉଥିବା ହେତୁ ତାଙ୍କର ନେତ୍ର ସଜଳ ହୋଇ ଉଠିଲାଣି । ଅନେକ ସନ୍ତାନଙ୍କର ପିତା ପ୍ରୌଢ଼ ସେନାନାୟକ ଅନୁମାନ କଲେ, ବାଳିକା ମହାରାଣୀଙ୍କର ଇଚ୍ଛା ପୂରଣ ନ ହେଲେ ସେ କାନ୍ଦି ପକେଇବେ । ସେଭଳି ଏକ ଘଟଣାର ସମ୍ବାଦ ପାଇ ମହାମାତ୍ୟ ଓ ସାମନ୍ତ ପ୍ରତାପ କ୍ଷୁବ୍ଧ ହେବେ । ନାୟକ ଭୂମି ସ୍ପର୍ଶ କରି ମହାରାଣୀଙ୍କୁ ପ୍ରଣାମ କଲା ଏବଂ ସୈନିକର ବାହୁ ଧରି ତାକୁ ରାଜକୀୟ ଶିବିକା ଉପରେ ବସେଇଦେଲା । କିଂକର୍ତ୍ତବ୍ୟବିମୂଢ଼ ଓ ଭୟାର୍ତ୍ତ ସୈନିକକୁ ଶିବିକା ଉପରେ ପ୍ରାୟ ଲଦି ଦିଆହେଲା ।

ଅମିତା ଆନନ୍ଦରେ ତାଳି ମାରିଲେ । ସେ ଅନ୍ୟ ଆହତ ସୈନିକକୁ ମଧ୍ୟ ଶିବିକାରେ ବସିବାର ଆଦେଶ ଦେଲେ । ତାଙ୍କର ଆଜ୍ଞାରେ ଶିବିକା ନଗର ମଧ୍ୟରେ ପ୍ରବେଶ କଲା ।

ରାଜକୀୟ ଶିବିକା ଆଗରେ ଚାରଣ ରୀତି ଅନୁଯାୟୀ ପ୍ରଜାଙ୍କୁ ରାଜସମ୍ମାନ ସକାଶେ ସାବଧାନ କରିଚାଲିଥାଏ– 'ପରମ ଭଗବତୀ ମହାମହିମାମୟୀ କଳିଙ୍ଗ ରାଜେଶ୍ୱରୀଙ୍କର ଜୟ । ପୌରଜନ ଏବଂ ପ୍ରଜା ରାଜେଶ୍ୱରୀଙ୍କର ଶିବିକା ନିମନ୍ତେ ମାର୍ଗ ପ୍ରଶସ୍ତ କରନ୍ତୁ ।' କିନ୍ତୁ ରାଜଶିବିକାରେ ଆହତ ସୈନିକ ଦ୍ୱୟ ବସିଥିଲେ ଏବଂ ବାଳିକା ମହାରାଣୀ ଶିବିକା ସହିତ ନାଚି ଡେଇଁ ଚାଲିଥିଲେ ।

ନଗରପାଳ ଚିତ୍ରରଥ ରାଜପଥ ଧାରରେ ଥିବା ଏକ ଭବନରେ ସବୁକଥାର ତତ୍ତ୍ୱାବଧାନ ନିମନ୍ତେ ସତର୍କ ହୋଇ ରହିଥିଲା । ଯେମିତି ମହାରାଣୀଙ୍କର ସିଂହଦ୍ୱାରରୁ ରାଜପ୍ରାସାଦକୁ ଯିବା ସମୟରେ ପଥରେ ଗହଳି ଓ କୌଣସି ପ୍ରକାର ଅବ୍ୟବସ୍ଥା ହେବ ନାହିଁ । ଚାରଣର ଘୋଷଣା ଶୁଣି ସେ ରାଜପଥକୁ ଆସିଗଲା ।

ରାଜକୀୟ ଶିବିକାରେ ଆହତ ସୈନିକଙ୍କୁ ଏବଂ ଶିବିକା ସହିତ ମହାରାଣୀଙ୍କୁ ଚାଲିଥିବା ଦେଖି ନଗରପାଳଙ୍କ ନେତ୍ର କ୍ରୋଧରେ ଆରକ୍ତ ହୋଇ ଉଠିଲା । ଚିତ୍ରରଥ ଏଭଳି ଅବିନୟ, ଅନାଚାର ଏବଂ ରାଜଶକ୍ତିର ଅସମ୍ମାନ ହେତୁ ଅଙ୍ଗରକ୍ଷକଙ୍କର ନାୟକକୁ ଭର୍ତ୍ସନା କଲା । ନାୟକର ଉତ୍ତର ପାଇ ନଗରପାଳ ମୌନ ରହିବାକୁ ବାଧ୍ୟ ହେଲା । ଏହି ଦୃଶ୍ୟ ପ୍ରତି ଅଧିକଙ୍କର ଦୃଷ୍ଟି ଆକର୍ଷଣର ଅବସର ନ ଦେବା ଅଭିପ୍ରାୟରେ ଚାରଣକୁ ଘୋଷଣା କରିବାକୁ ବାରଣ କଲା ।

ନଗରର କେନ୍ଦ୍ରରେ ଅଧିକ ଗହଳ ପଥରେ ରାଜଶିବିକା ପହଞ୍ଚିବା ପୂର୍ବରୁ ନଗରପାଳ ମହାରାଣୀଙ୍କ ସମ୍ମୁଖରେ ହାତ ଯୋଡ଼ି ନିବେଦନ କଲା – 'ପରମ ଭଗବତୀ ରାଜେଶ୍ୱରୀ, ଏଇ ସୈନିକମାନଙ୍କର ଘର ଆସିଗଲା । ସେମାନେ ତାଙ୍କର ଘରମାନଙ୍କୁ ଯିବେ । ଆପଣ ଶିବିକାରେ ଆସନ ଗ୍ରହଣ କରନ୍ତୁ ।'

ନଗରପାଳଙ୍କର ସଂକେତ ପାଇ ବାହକମାନେ ଶିବିକା ରଖିଲେ । ଶିବିକା ରହିବାରୁ ସୈନିକମାନେ ଶିବିକାରୁ ଓହ୍ଲେଇ ଯିବାର ଚେଷ୍ଟା କଲେ ।

ଅମିତା କହିଲେ – 'ନା', ନା, ସେମିତି ନୁହଁ ମୁଁ ଏଇ ଆହତ ସୈନିକମାନଙ୍କୁ ପ୍ରାସାଦକୁ ନେଇଯିବି । ତାଙ୍କୁ ଦୁଧଭାତ ଖୁଏଇ ପଲଙ୍କରେ ଶୁଏଇଦେବି ।'

ନଗରପାଳ ନିରୁପାୟ ହୋଇଗଲା । ପରିସ୍ଥିତି ସମ୍ଭାଳି ନ ପାରିବାର ବିବଶତା ହେତୁ ସେ କ୍ରୋଧରେ ଶିବିକା ସଙ୍ଗରେ ଚାଲିଥିବା କଞ୍ଚୁକୀ ଓ ହିତାକୁ ଦେଖିଲା । – 'କ'ଣ ହେଉଛି ଏ ସବୁ ?'

ହିତା ତୁରନ୍ତ ଅମିତାଙ୍କ ପଟକୁ ନଇଁଗଲା ଆଉ ବୁଝେଇବାକୁ ଲାଗିଲା – 'ଭଗବତୀ ମହାରାଣୀ, ଏମାନେ ଘରକୁ ନ ଗଲେ ସେମାନଙ୍କର ମାଆମାନେ କାନ୍ଦିବେ ।'

ହିତାର କଥା କିଛି ସମୟ ପାଇଁ ଅମିତାଙ୍କୁ ଚିନ୍ତାମଗ୍ନ କରିଦେଲା । କିଛି ସମୟ ପରେ କହିଲେ – 'ତମେ ତାଙ୍କର ମାଆମାନଙ୍କୁ ଡକେଇ ଆଣ, ମୁଁ ସେମାନଙ୍କୁ ଦେଖିବି ।'

ଅମିତା ଆହତ ସୈନିକମାନଙ୍କ ନିକଟକୁ ଯାଇ ସେମାନଙ୍କୁ ଆଦରରେ ବୁଝେଇ ଦେଲେ – 'ଦେଖ, ତମେ ଯୁଦ୍ଧ କରିବ ନାହିଁ । କାହାକୁ ଡରେଇବ ନାହିଁ, ଲୁଣ୍ଠନ କରିବ ନାହିଁ, ମାରିବ ନାହିଁ, କେହି ବି ଯୁଦ୍ଧକୁ ଯିବ ନାହିଁ । ମାଆ କହନ୍ତି ଯୁଦ୍ଧ ଓ ହିଂସା ପାପ !'

ନଗରପାଳ ଏହି ସ୍ଥିତିରୁ ଶୀଘ୍ର ଉଦ୍ଧାର ପାଇବା ଲାଗି ଆହତ ସୈନିକଙ୍କର ପରିବାରବର୍ଗଙ୍କୁ ଚଞ୍ଚଳ ଡକେଇ ନେଲା ଏବଂ ସେମାନଙ୍କୁ ଯିବାର ଆଦେଶ ଦେଲା ।

ହିତା ବାରମ୍ବାର ଅମିତା କାନରେ ବୁଝେଇ ଚାଲିଥାଏ – 'ଭଗବତୀ ମହାରାଣୀ ସୈନିକମାନଙ୍କର ମାଆ ଏମାନଙ୍କର ପ୍ରତୀକ୍ଷାରେ କାନ୍ଦୁଛନ୍ତି । ଆପଣ ସେମାନଙ୍କୁ ତାଙ୍କର ମାତାଙ୍କ ପାଖକୁ ଯିବାର ଆଦେଶ ଦିଅନ୍ତୁ ।'

ଜଣେ ପ୍ରୌଢ଼ା ଓ ଜଣେ ଯୁବତୀ ପୁତ୍ର ଓ ପତିର ଆହତ ହୋଇଥିବା ସମ୍ବାଦ ଶୁଣି କାନ୍ଦି କାନ୍ଦି ଆସିଲେ । ନଗରପାଳଙ୍କ ନିର୍ଦ୍ଦେଶରେ ସେହି ସ୍ତ୍ରୀମାନଙ୍କର ବିଳାପ ବନ୍ଦ ହେଲା । ତେବେ ସେମାନଙ୍କର ଲୁହ ଦେଖି ଅମିତାଙ୍କର ଆଖି ମଧ୍ୟ ଲୁହ ଛଳଛଳ ହୋଇଗଲା ।

ସୂର୍ଯ୍ୟାସ୍ତ ହୋଇ ସାରିଥାଏ । ବିପଣୀମାନଙ୍କରେ ସାଂଧ୍ୟ ଗହଳ ଚହଳ ବଢ଼ୁଥାଏ । ଅନ୍ଧାର ସମୟରେ ମହାରାଣୀଙ୍କର ବାହାରେ ରହିବା ଉଚିତ ନୁହେଁ । ଆହତ ସୈନିକମାନଙ୍କର ଶିବିକାରୁ ଚାଲିଯିବା ପରେ ବି ଅମିତା ରାଜପ୍ରାସାଦକୁ ଫେରିବା ପାଇଁ ଶିବିକାରୂଢ଼ ହେବାକୁ ସ୍ୱୀକାର କରୁ ନ ଥିଲେ । ଆହତ ସୈନିକର ମଥା କୋଳରେ ଥାପି କାନ୍ଦୁଥିବା ଦେଖି ତାଙ୍କର ମଧ ମାତା ମନେ ପଡ଼ି ସେ ମଧ ମାତାଙ୍କ ନିକଟକୁ ଯିବାକୁ ବ୍ୟାକୁଳ ଆଗ୍ରହ ପ୍ରକାଶ କଲେ ।

ନଗରପାଳ ଅତ୍ୟନ୍ତ ବିବ୍ରତ ହେଉଥିଲା । ଏଇସବୁ ଅବ୍ୟବସ୍ଥା ପାଇଁ ମହାମାତ୍ୟ ତାକୁ କ'ଣ କହିବେ ! ସେଭଳି ସ୍ଥିତିରେ ନିଜେ ନିର୍ଣ୍ଣୟ ନେଇ କ'ଣ ଅବା କରିପାରିଥାନ୍ତା ? ସେ ଅଶ୍ୱାରୋହଣ କରି ଦ୍ରୁତଗତିରେ ମହାମାତ୍ୟଙ୍କ ସହିତ ପରାମର୍ଶ ଓ ଆଦେଶ ନିମନ୍ତେ ପ୍ରସ୍ଥାନ କଲା ।

ମହାମାତ୍ୟ ସେତେବେଳେ ଜଣେ ବିଶେଷ ଗୁପ୍ତଚରଠାରୁ ବାଳିକା ମହାରାଣୀଙ୍କର ମାତାଙ୍କୁ ସ୍ମରଣ କରି ରାଜପଥରେ କାନ୍ଦିବା ଏବଂ ବାଳବୁଦ୍ଧିରେ ପ୍ରଜାଙ୍କୁ ଯୁଦ୍ଧକୁ ନ ଯିବା ପାଇଁ କହୁଥିବା ଘଟଣା ସମ୍ବନ୍ଧରେ ଶୁଣୁଥିଲେ । ସେ ରାଜ୍ୟର ସୁରକ୍ଷା ନିମନ୍ତେ ସବୁକିଛି ତ୍ୟାଗ କରି ଦେଇପାରିବେ । ଆପଣାର ଏକମାତ୍ର ପୁତ୍ର ମୟଂକକୁ ଯୂଥପ କରି ଯୁଦ୍ଧକ୍ଷେତ୍ରକୁ ପଠେଇ ସାରିଥିଲେ । ସେ ଅଶୋକଙ୍କୁ ପ୍ରତିରୋଧ କରିବା ପାଇଁ ଆପଣାର ଓ ରାଜ୍ୟର ସବୁକିଛି ବିନିଯୋଗ କରି ଦେବାକୁ ପ୍ରସ୍ତୁତ ଥିଲେ । ମହାରାଣୀ ସେହି ଯୁଦ୍ଧରେ ପ୍ରଜା ଯୋଗ ଦିଅନ୍ତୁ ନାହିଁ ବୋଲି କହୁଥିଲେ । ସେହି ସମ୍ବାଦ ଶୁଣି ମହାମାତ୍ୟ ଅଧୀର ହୋଇ ଉଠିଲେ ।

ମହାରାଣୀ ବାଳିକା, ତେବେ ସେ କଳିଙ୍ଗର ଅଧିପତି ରାଜେଶ୍ୱରୀ ମଧ । ରାଜ୍ୟର ଅଧିପତି ଯଦି ପ୍ରଜାଙ୍କ ସମକ୍ଷରେ କାନ୍ଦି ପ୍ରଜାଙ୍କୁ ଯୁଦ୍ଧକୁ ନ ଯିବାପାଇଁ କହିବ ତେବେ କ'ଣ ହେବ ? ସେତେବେଳେ ତାଙ୍କର ଦ୍ୱାରରେ ନଗରପାଳ ଉପସ୍ଥିତ ହୋଇଥିବାର ସମ୍ବାଦ ମିଳିଲା ।

ନଗରପାଳ ଉପସ୍ଥିତ ହେବା ମାତ୍ରକେ ମହାମାତ୍ୟ କହିଲେ— ଶତ୍ରୁର ପ୍ରତିରୋଧ ପ୍ରକ୍ରିୟାକୁ ନିର୍ବଳ କରିବାର କୌଣସି କାରଣ ନ ରହିବା ଉଚିତ । ରାଜଶକ୍ତି ପ୍ରଜାର କାତର କରୁଣା ଉପରେ ନିର୍ଭର କରିପାରିବ ନାହିଁ । ରାଜଶକ୍ତିକୁ ପ୍ରଜାର ସମ୍ମାନ ଏବଂ ବିଶ୍ୱାସ ଆବଶ୍ୟକ । ଏତେବେଳେ କଳିଙ୍ଗ ରାଜ୍ୟ ଏବଂ ରାଜେଶ୍ୱରୀଙ୍କ ପ୍ରତି ତାହାହିଁ କର୍ତ୍ତବ୍ୟ ଓ ଧର୍ମ । ଯୁଦ୍ଧକାଳରେ ମହାରାଣୀଙ୍କର ରାଜପ୍ରାସାଦରୁ ବାହାରକୁ ଆସିବା ଆଦୌ ଉଚିତ ହେବ ନାହିଁ । ସାମନ୍ତ ପ୍ରତାପଙ୍କୁ ଆଦେଶ ଦିଅ ଯେ ରାଜପ୍ରାସାଦର ଦ୍ୱାର ମହାରାଣୀ ପ୍ରବେଶ କରିବା ପରେ ପରେ

ବନ୍ଦ କରିଦେବେ ଏବଂ ତାହା ଯୁଦ୍ଧକାଳରେ ଖୋଲା ଯିବ ନାହିଁ । ରାଜପ୍ରାସାଦ ମଧ୍ୟରେ ମହାରାଣୀଙ୍କର ବିନୋଦପାଇଁ ସମସ୍ତ ଆବଶ୍ୟକ ବ୍ୟବସ୍ଥା କରିବେ ଏବଂ ମହାରାଣୀ ପ୍ରାସାଦ ବାହାରକୁ ବାହାରିବେ ନାହିଁ ।

ନଗରପାଳ ଶଙ୍କିତ ସ୍ୱରରେ ନତଶିର ହୋଇ ନିବେଦନ କଲା– 'ମହାମତି ଆଚାର୍ଯ୍ୟଙ୍କର ଆଦେଶ ପାଳନ ହେବ ମାତ୍ର ମହାରାଣୀ ରାଜମାତାଙ୍କ ବିନା ପ୍ରାସାଦକୁ ଫେରିବେ ନାହିଁ ବୋଲି ହଠ କରି ରହିଛନ୍ତି । ତାଙ୍କର ଇଚ୍ଛା ବିରୋଧରେ ତାଙ୍କୁ କିପରି ପ୍ରାସାଦକୁ ନିଆ ଯାଇପାରିବ !'

ଆଚାର୍ଯ୍ୟଙ୍କର କପାଳରେ ସଦା ରହିଥିବା ଚିନ୍ତାର ରେଖା ଅଧିକ କୁଞ୍ଚିତ ହୋଇ ଉଠିଲା । ଘଡ଼ିଏ ପାଇଁ ସେ ନଗରପାଳଙ୍କୁ ଦେଖି ମୌନ ରହିଲେ ଏବଂ ଭର୍ତ୍ସନା ସ୍ୱରରେ କହିଲେ– 'ଚିତ୍ରରଥ ! ତୁମେ ଏଇ ବୁଦ୍ଧିରେ ନଗରର ବ୍ୟବସ୍ଥା କରୁଛ ? ନଗରପାଳ ଗୋଟାଏ ବାଳିକାର ହଠରେ ଉପାୟ କରିପାରିବ ନାହିଁ ?'

ନଗରପାଳ ମହାମାତ୍ୟଙ୍କର ଆଦେଶ ଓ ଭର୍ତ୍ସନା ଶୁଣି ଚିନ୍ତାରେ ମଥାନତ କରି ରାଜପଥର ତ୍ରିଛକିରେ ଉପସ୍ଥିତ ହେଲା । ସନ୍ଧ୍ୟାର ଅନ୍ଧକାର ଅଧିକ ଗଭୀର ହୋଇ ସାରିଥିଲା । ମହାରାଣୀଙ୍କର ଶିବିକାର ଚାରିପଟେ ଗହଳି ମଧ୍ୟ ବଢ଼ି ଯାଇଥିଲା । ନଗରପାଳ ସେଇ ଜନଗହଳିର କିଞ୍ଚିତ ଦୂରରେ ତାର ଘୋଡ଼ା ଅଟକେଇ ଠିଆ ହେଲା । ସଂକେତରେ ଜଣେ ରାଜପୁରୁଷଙ୍କୁ ପାଖକୁ ଡାକି ଅତ୍ୟନ୍ତ ଧୀର ସ୍ୱରରେ କିଛି ନିର୍ଦ୍ଦେଶ ଦେଇ, ଆପଣାର ଅଶ୍ୱଦେଇ ରାଜପ୍ରାସାଦକୁ ପଠେଇ ଦେଲା । ସନ୍ଧ୍ୟାକାଳରେ ରାଜପ୍ରାସାଦ ଶ୍ୟାମଳ ଓ ଧୂସର ଦେଖାଯାଉଥିଲା । ନଗରପାଳ ରାଜପ୍ରାସାଦକୁ ଏକ ଲୟରେ ଅନେଇ ରହିଥାଏ ।

ସନ୍ଧ୍ୟାଗମନ ହେତୁ ପ୍ରାସାଦ ଦ୍ୱାରର ତୋରଣ ଉପରେ ମଶାଲ ସବୁ ଜଳୁଥିଲେ । ପ୍ରାସାଦର ଆଉ କେତେକ ସ୍ଥାନରେ ମଧ୍ୟ ଦୀପ ପ୍ରଜ୍ୱଳିତ ହୋଇ ସାରିଥିଲା, ମାତ୍ର ଅନ୍ତଃପୁରର ଦକ୍ଷିଣଭାଗର ଅଟ୍ଟାଳିକାର ଦ୍ୱିତଳ ଅନ୍ଧକାରାଚ୍ଛନ୍ନ ହୋଇଥିଲା । ମାତ୍ର ନଗରପାଳଙ୍କର ଅନେଇ ରହିଥିବା ଭିତରେ ସେହି ପ୍ରକ୍ଷର ଗବାକ୍ଷମାନେ ଆଲୋକିତ ହୋଇଉଠିଲେ । ରାଜମାତାଙ୍କର ତୀର୍ଥ ଗମନ ପରେ ସେହି ପ୍ରକ୍ଷ ଅନ୍ଧକାରାଚ୍ଛନ୍ନ ହୋଇ ରହୁଥିଲା ।

ନଗରପାଳ କେତେଜଣ ରାଜପୁରୁଷ ଓ ସାଧାରଣ ଜନତାଙ୍କୁ ପାଖକୁ ଡାକି କିଛି ଆଦେଶ ଦେଲେ । ସେମାନେ ତୁରନ୍ତ ମହାରାଣୀଙ୍କର ଶିବିକା ନିକଟକୁ ଯାଇ ବିସ୍ମିତ ସ୍ୱରରେ ପାଲିଙ୍କିର ଚତୁଷ୍ପାର୍ଶ୍ୱରେ ରହିଥିବା ଅଙ୍ଗରକ୍ଷକମାନଙ୍କୁ ସମ୍ବୋଧିତ କରି କହିଲେ– 'ଆରେ ଦେଖ ! ରାଜମାତାଙ୍କର ପ୍ରାସାଦରେ ଦୀପ ଜଳୁଛି ! କ'ଣ ରାଜମାତା ତୀର୍ଥାଟନରୁ ଫେରିଆସିଲେ ?'

'ପରମ ଭଗବତୀ ରାଜମାତାଙ୍କର ଜୟ ହେଉ, ଜୟ ହେଉ !' ଶିବିକାର ଚତୁଷ୍ପାର୍ଶ୍ୱରେ ଜୟଘୋଷ ହେବାକୁ ଲାଗିଲା ।

ଅମିତା ମାତାଙ୍କର ଜୟଘୋଷ ଶୁଣିଲେ । ସେ ମାତାଙ୍କର ଅଟ୍ଟାଳିକା ପ୍ରଦୀପାଲୋକିତ ହୋଇଥିବା ମଧ୍ୟ ଦେଖିଲେ ଏବଂ ଆନନ୍ଦରେ ତାଳି ବଜେଇବାକୁ ଲାଗିଲେ ... 'ମାଆ ଆସିଗଲେ ... ଆସିଗଲେ !'

'ମାଆଙ୍କ ପାଖକୁ ଯିବା... ଶୀଘ୍ର ଚାଲ !' ଅମିତା ବ୍ୟାକୁଳ ହେବାକୁ ଲାଗିଲେ ।

ଅମିତା ନିଜେ ଯାଇ ଶିବିକାରେ ବସିପଡ଼ି ଆଦେଶ ଦେଲେ 'ଚାଲ, ଶୀଘ୍ର ଚାଲ ।'

ବାଳିକା ମହାରାଣୀଙ୍କର ଶିବିକା ରାଜପ୍ରାସାଦ ଅଭିମୁଖରେ ବଢ଼ିଚାଲିଲା । ହିତା, କଞ୍ଚୁକୀ, ଅଙ୍ଗରକ୍ଷକ, ଯବନୀମାନେ ପାଲିଙ୍କି ସାଙ୍ଗରେ ଚାଲିବାକୁ ଲାଗିଲେ ।

ରାଜପ୍ରାସାଦର ମୁଖ୍ୟଦ୍ୱାରର ପ୍ରାଙ୍ଗଣରେ ଶିବିକା ପ୍ରବେଶ କରିବା ମାତ୍ରକେ ଦ୍ୱାରର ବିଶାଳ କବାଟ ପଡ଼ିଗଲା । ଆଦେଶ ହେଲା– ଏ କବାଟ କେବଳ ମାତ୍ର କର୍ମାନ୍ତାଧିଷ୍ଠାୟକଙ୍କର ଅନୁମତିରେ ହିଁ ଖୋଲିବ ।

## ଆଚାର୍ଯ୍ୟଙ୍କର ଅସହାୟତା

କଳିଙ୍ଗନଗରର ପୂର୍ବ ଭାଗରେ ପ୍ରାଚୀର ମଧ୍ୟରେ ପୁରାତନ ଓ ଜୀର୍ଣ୍ଣଦୁର୍ଗ ସେ ସମୟରେ ମଧ୍ୟ ଥିଲା । ଏକଦା ଦୁର୍ଗ ନଗର-ପ୍ରାଚୀରର କିଛି ଦୂରରେ ଥିଲା । ସେ ସମୟରେ ଦୁର୍ଗଟି ସାମୁଦ୍ରିକ ଦସ୍ୟୁମାନଙ୍କ କବଳରୁ ନଗରକୁ ରକ୍ଷା କରିବା ନିମନ୍ତେ ସୈନିକମାନଙ୍କର ଛାଉଣୀ ଥିଲା । ସମ୍ରାଟଙ୍କର ପିତାମହ ମହାରାଜ ବିଶାଳ ପୂର୍ଣ୍ଣତଃ ସମୁଦ୍ର-ଦସ୍ୟୁ-ଦମନ କରିଥିଲେ । ନଗର ବସତି ଧୀରେ ଧୀରେ ବଢ଼ି ବଢ଼ି ଗଲା । ନଗରର ପୁରାତନ ପ୍ରାଚୀର ଭାଙ୍ଗି ନୂତନ ଗଢ଼ା ହେବା ଫଳରେ ଦୁର୍ଗ ପ୍ରାଚୀର ଭିତରକୁ ଆସିଗଲା ।

ଦୁର୍ଗର ଚାରିପଟେ ନୋଳିଆମାନଙ୍କର ବସତି ଥିଲା । ଯୁଦ୍ଧ ଆରମ୍ଭ ହୋଇ ଯିବା ପରେ ରାଜ୍ୟର ଉତ୍ତର-ସୀମାରୁ ଅନେକ ଶରଣାର୍ଥୀ ଆସି ଉପେକ୍ଷିତ ଦୁର୍ଗରେ ଆଶ୍ରୟ ନେଇଥିଲେ । ସେମାନେ କିଛି ମାସ ସେଇ ଦୁର୍ଗରେ ନିର୍ବିଘ୍ନ ରହିଥିଲେ ମାତ୍ର ନଗରରେ ବଳି-ନିଷେଧର ଘୋଷଣାର ପରିଣାମସ୍ୱରୂପ ଉତ୍ପାତ ହେବାରୁ ଦିନେ ରାତ୍ରିକାଳରେ ସୈନିକମାନେ ଦୁର୍ଗ ଘେରାଉ କରି ଶରଣାର୍ଥୀମାନଙ୍କୁ ବାହାର କରି ଦେଇଥିଲେ ଏବଂ ଦୁର୍ଗରେ ପହରା ଦେଇ ରହିଲେ ।

ବଳି ନିଷେଧ କାଣ୍ଡ ପରେ ମହାମାତ୍ୟଙ୍କର ପରମ ବିଶ୍ୱାସପାତ୍ର ସାମନ୍ତ ଯୂଥପ ଏକଶତ ସଶସ୍ତ୍ର ପଦାତିକ ଏବଂ ପଚାଶ ଅଶ୍ୱାରୋହୀ ସୈନିକଙ୍କ ସହିତ ଦୁର୍ଗକୁ ସଦା ଘେରି ରହିଥିଲେ । ଜନସାଧାରଣଙ୍କୁ ଦୁର୍ଗ ଭିତରକୁ ବା କାହିଁକି ଦୁର୍ଗ ପାଖକୁ ଯିବାକୁ ବି ଅନୁମତି ମିଳୁ ନ ଥିଲା । ପ୍ରଜା ଏବଂ ପୌରଜନଙ୍କ ମଧ୍ୟରେ ଦୁର୍ଗ ପ୍ରସଙ୍ଗରେ ବହୁ ରହସ୍ୟମୟ କିମ୍ବଦନ୍ତୀ ପ୍ରଚାରିତ ହେଉଥିଲା । କେତେକ କହୁଥିଲେ ଚଣ୍ଡ ଅଶୋକ ତାଙ୍କର ଅଠାନବେ ଜଣ ଭାଇଙ୍କୁ ହତ୍ୟା କରି ଦେଇଛନ୍ତି ଏବଂ ତାଙ୍କର ଗୋଟିଏ ଭାଇ ପ୍ରାଣ ରକ୍ଷା କରିବାକୁ ଚାଲିଆସିଛି । ସେ ଏଇ ଦୁର୍ଗରେ ଶରଣାର୍ଥୀ ହୋଇ ରହିଛି । କେତେକ କହୁଥିଲେ ଉତ୍ତର ସୀମାରୁ କେତେକ ମଗଧ ସେନାପତିଙ୍କୁ ବନ୍ଦୀକରି ଅଣାଯାଇଛି ଏବଂ ମହାମାତ୍ୟ ସେମାନଙ୍କୁ ଏହି ଦୁର୍ଗରେ ରଖିଛନ୍ତି । ଯୁଦ୍ଧ ପରେ ସେମାନଙ୍କର ନ୍ୟାୟ ବିଚାର ହେବ । କେତେକ ବିଶ୍ୱାସ କରୁଥିଲେ ଯେ ଦୁର୍ଗରେ କାମରୂପରୁ ଆସିଥିବା ମହାନ୍ ତାନ୍ତ୍ରିକ ଅଶୋକଙ୍କର ବିନାଶ ନିମନ୍ତେ ତନ୍ତ୍ରଶକ୍ତିର ସାଧନା କରୁଛନ୍ତି ।

ଏ କଳ୍ପନା ସବୁର ଗୋଟାଏ କାରଣ ମଧ୍ୟ ଥିଲା ।

ପ୍ରତିଦିନ ପ୍ରଥମ ପ୍ରହରରେ ଜଣେ ଦାସୀ ପୂଜା ସାମଗ୍ରୀ ଓ ନୈବେଦ୍ୟପାତ୍ର ନେଇ ବାହାରେ ଓ ନଗରର କୌଣସି ଦେବାଳୟ ଅଥବା ଚୈତ୍ୟରେ ପୂଜା ଅର୍ପଣ କରି ଫେରିଆସେ । ସେ ଦାସୀ ସମ୍ଭବତଃ ମୂକ କିମ୍ବା ତାକୁ ମୌନ ଆଚରଣର ଆଦେଶ ଥିଲା । ଆଖପାଖର କେହି ହେଲେ ତାକୁ କାହା ସହିତ କଥା ହେବା ଦେଖି ନ ଥିଲେ । ମହାମାତ୍ୟ ଯୁଦ୍ଧକାଳରେ ଶ୍ରୀଷ ଦୁର୍ଗରେ ରାଜମାତାଙ୍କର ରହଣି ବ୍ୟବସ୍ଥା କରି ତାଙ୍କର ସେବା ନିମନ୍ତେ ଉପଯୁକ୍ତ ଦାସ ଦାସୀ ନିଯୁକ୍ତ କରିଥିଲେ । ସେମାନଙ୍କ ମଧ୍ୟରୁ କେବଳମାତ୍ର ଦାସୀ ମାତଙ୍ଗୀକୁ ରାଜମାତାଙ୍କର ପୂଜା ନୈବେଦ୍ୟ ନେଇ ନଗରକୁ ଆସିବାପାଇଁ ଅନୁମତି ମିଳିଥିଲା ।

ମାତଙ୍ଗୀ ସମସ୍ତ ଆଚାର୍ଯ୍ୟକୁଳ ଏବଂ ମହାମାତ୍ୟଙ୍କର ବିଶେଷ ବିଶ୍ୱାସପାତ୍ରୀ ଦାସୀ ଥିଲା । ମାତଙ୍ଗୀ ରାଜମାତାଙ୍କର ପୂଜା ନୈବେଦ୍ୟ କୌଣସି ଦେବାଳୟ ଅଥବା ଚୈତ୍ୟରେ ଅର୍ପଣ କରି ଫେରିବା ସମୟରେ ମଝିରେ ମଝିରେ ଆଚାର୍ଯ୍ୟଙ୍କର ପ୍ରାସାଦକୁ ଯାଇ ରାଜମାତାଙ୍କର କୁଶଳ-ସମାଚାର ଶୁଣେଇ ଆସୁଥିଲା ।

ବାଧ୍ୟ ହୋଇ ଶ୍ରୀଷ ଦୁର୍ଗକୁ ଆସିବା ପରେ ରାଜମାତା ଆତ୍ମସମ୍ମାନର ରକ୍ଷା ଏବଂ ମନର ଶତ୍ରୁ କାମ, କ୍ରୋଧ, ଲୋଭ, ମୋହାଦିକୁ ବଶୀଭୂତ କରିବା ନିମନ୍ତେ ଚିରମୌନବ୍ରତ ଧାରଣ କରିଥିଲେ । ସେ ବହୁ ସମୟ ଧ୍ୟାନାବସ୍ଥିତ ହୋଇ ରହୁଥିଲେ କିମ୍ବା ଧର୍ମଗ୍ରନ୍ଥ ଅଥବା ସୂତ୍ରପାଠ କରୁଥିଲେ । ସେ କେବେହେଲେ

କାହାକୁ ଡାକି କିଛି କହୁ ନ ଥିଲେ । କେହି କିଛି ପ୍ରାର୍ଥନା ଅଥବା ନିବେଦନ କଲେ ସଂକେତରେ ହଁ ଅଥବା ନାହିଁର ସଂକ୍ଷିପ୍ତ ଉତ୍ତର ଦେଉଥିଲେ ।

ମହାମାତ୍ୟଙ୍କର ଆଦେଶ ଥିଲା, ମାତଙ୍ଗୀ ରାଜମାତାଙ୍କର ପ୍ରତ୍ୟେକ କଥାରେ ସତର୍କ ଦୃଷ୍ଟି ରଖିଥିବ । ନିରନ୍ତର ରାଜମାତାଙ୍କର କାର୍ଯ୍ୟଧାରାର ନିରୀକ୍ଷଣ ଏବଂ ପ୍ରତି ମୁହୂର୍ତ୍ତରେ ତାଙ୍କର ପାଖେ ପାଖେ ରହିଥିବା ଫଳରେ କ୍ରମଶଃ ମାତଙ୍ଗୀ ମନରେ ରାଜମାତାଙ୍କ ପ୍ରତି ଶ୍ରଦ୍ଧା ଏବଂ ଅନୁରାଗ ଉତ୍ପନ୍ନ ହେବାକୁ ଲାଗିଲା । ରାଜମାତା ତ ମୌନ ରହୁଥିଲେ କିନ୍ତୁ ଆପଣାର ସନ୍ତୋଷ ନିମନ୍ତେ ମାତଙ୍ଗୀ ଚାହୁଁଥିଲା ଯେ ରାଜମାତା ତାକୁ ଆଦେଶ କରନ୍ତେ ଯଦି ସେ ତାଙ୍କର ସେବାର ଅବସର ପାଆନ୍ତା ।

ମାତଙ୍ଗୀ ନିମନ୍ତେ ମଧ୍ୟ ନଗରରୁ ଆସିବା ପରେ ମୌନ ହୋଇ ରହିବା କଠିନ ଥିଲା । ନିରନ୍ତର କୂଟନୀତିର ବାତାବରଣରେ ରହି ସେ ନିଜେ ନିରକ୍ଷର ହୋଇଥିଲେ ହେଁ କୂଟନୀତିର ବ୍ୟବହାର ସମ୍ବନ୍ଧରେ ଧାରଣା ଥିଲା । ସେ ଦାସଦାସୀଙ୍କୁ କିଛି କହନ୍ତା ଏବଂ ରାଜମାତାଙ୍କ ନିକଟକୁ ସମ୍ବାଦ ପଠାଇବାଠାରୁ ଭଲ ଯେ ସେ ତାଙ୍କର ସମୀପରେ ସବୁ କହି ତାଙ୍କର ବିଶ୍ୱାସପାତ୍ରୀ ହେବା ସହିତ ମହାମାତ୍ୟଙ୍କର ମଧ୍ୟ ବିଶ୍ୱସନୀୟା ହୋଇ ରହିଥାନ୍ତା ।

ପାଞ୍ଚ ଛଅ ବର୍ଷର ବାଳିକାଙ୍କୁ ଦେଖି ମାତଙ୍ଗୀର ସ୍ମୃତି କ୍ଷୁବ୍ଧ ହୋଇ ଉଠୁଥିଲା । ଛବିଶ-ସତେଇଶ ବର୍ଷ ତଳେ ତା'ର ସେହି ବୟସର ଝିଅଟିଏ ପୀଡ଼ିତ ହୋଇ ତା'ର କୋଳ ଖାଲି କରି ଯାଇଛି । ସନ୍ତାନ ବିୟୋଗର ଦୁଃଖ ତାର ହୃଦୟରୁ ଦୂର ହୋଇ ପାରି ନାହିଁ । ମାତଙ୍ଗୀ, ନଗରରେ ମାତାଙ୍କ ବିୟୋଗରେ ବ୍ୟାକୁଳ ବାଳିକା ମହାରାଣୀଙ୍କର ଆକୁଳ କ୍ରନ୍ଦନର ସମାଚାର ଶୁଣି ତାର ହୃଦୟରେ କୋହ ଜାତ ହୁଏ ଏବଂ ଆଖିରୁ ଲୁହ ଗଡ଼ିଆସେ । ମାତଙ୍ଗୀ ରାଜମାତାଙ୍କର ସମ୍ମୁଖରେ ବସି ସେଇ ସମ୍ବାଦ ନ ଶୁଣେଇ ରହିପାରିବା ଅସମ୍ଭବ ହୋଇଉଠିଲା । ଏହା ପୂର୍ବରୁ ସେ ରାଜମାତାଙ୍କୁ ମହାସେନାପତିଙ୍କର ସୀମା ଅଭିମୁଖରେ ଯୁଦ୍ଧ ପାଇଁ ସଶସ୍ତ୍ର ପ୍ରସ୍ଥାନ ଏବଂ ବହୁସଂଖ୍ୟାରେ ଆହତ ସୈନ୍ୟମାନଙ୍କର ନଗରକୁ ଆସୁଥିବା ବିଷୟ କହି ସାରିଥିଲା । ଶତ୍ରୁସେନାର ନିତ୍ୟ ରାଜଧାନୀର ନିକଟବର୍ତ୍ତୀ ହେଉଥିବା ସମ୍ବାଦ ମଧ୍ୟ ସେ ରାଜମାତାଙ୍କୁ ଶୁଣେଇ ସାରିଛି । ରାଜମାତା ଏ ସବୁ ଶୁଣି, ଆଖି ବୁଜି ଶରଣାଗତ ମନ୍ତ୍ର ଜପ କରିବାରେ ଲୀନ ହୋଇଯାଆନ୍ତି ।

ଦିନେ ଦେବାଳୟରେ ନୈବେଦ୍ୟ ଅର୍ପଣ କରି ଫେରିଆସି ମାତଙ୍ଗୀ ମହାରାଣୀଙ୍କ ନିକଟରେ ନିବେଦନ କଲା— ଭଗବତୀ ନଗର ମଧ୍ୟରେ ଆତଙ୍କ ଭରିଗଲାଣି । ସବୁଠାରେ ଯୁଦ୍ଧରୁ ଆହତ ହୋଇ ଫେରିଆସିଥିବା ସୈନିକ ହିଁ ଦେଖାଯାଉଛନ୍ତି ।

ସମସ୍ତେ କହୁଛନ୍ତି, ଶତ୍ରୁ ଆସି ରାଜଧାନୀର ଅତି ନିକଟରେ ପହଞ୍ଚିଲାଣି । ନଗରବାସୀ ମଧ୍ୟ ଶତ୍ରୁସେନାର ଆଗମନ ବିଷୟ ନେଇ ଆତଙ୍କିତ । କହୁଛନ୍ତି, ଆଚାର୍ଯ୍ୟ ମହାମାତ୍ୟ ରାଜପ୍ରାସାଦର ଦ୍ୱାର ବନ୍ଦ କରାଇଛନ୍ତି ଏବଂ ରାଜପ୍ରାସାଦର ସୁରକ୍ଷା ନିମନ୍ତେ ବହୁସଂଖ୍ୟକ ସଶସ୍ତ୍ର ପ୍ରତିହାରୀ ରହିଛନ୍ତି । ବାଳିକା ମହାରାଣୀ ପ୍ରାୟ ଏକ ପକ୍ଷ ହେବ ନଗର ବିହାର ନିମନ୍ତେ ବାହାରି ନାହାନ୍ତି ।

ରାଜମାତା ଉତ୍ତର ଦେଲେ– 'ଭଗବାନ୍ ରକ୍ଷା କରିବେ ।' ଏବଂ ଆଖି ବୁଜି ମନ୍ତ୍ର ଜପ କରିବାକୁ ଲାଗିଲେ । ରାଜମାତା ଆଖି ଖୋଲିଲେ । ମାତଙ୍ଗୀ ସେ ପର୍ଯ୍ୟନ୍ତ ହାତ ଯୋଡ଼ି ରହିଥାଏ ।

ରାଜମାତା ମାତଙ୍ଗୀକୁ ସଂବୋଧନ କରି କହିଲେ– 'ମାତଙ୍ଗୀ, ତୁ ମୋର କାମଟିଏ କରିଦେବୁ ?

ମାତଙ୍ଗୀ ବିନୀତ ଭାବରେ ମଥା ନୁଆଁଇ ନେଲା ।

ରାଜମାତା ତଥାଗତଙ୍କର ଧାତୁପାତ୍ରର ବେଦୀରୁ ଗୋଟାଏ ଶୁଷ୍କ ଶ୍ୱେତପୁଷ୍ପ ଆଣି କହିଲେ– 'ଏହି ପୁଷ୍ପ ଏକଲକ୍ଷ ମନ୍ତ୍ରର ଜପ ଶକ୍ତି ସହିତ ସମାନ । ତୁ ଏହା ଝିଅ ଅମିତାର ଦାସୀ ହିତାକୁ ନେଇ ଦେବୁ । ସେ ଏହି ପୁଷ୍ପର କବଚ କରି ଅମିତାର ଶରୀରରେ ବାନ୍ଧିଦେବ । ମନ୍ତ୍ର ଶକ୍ତି ସଙ୍କଟ କାଳରେ ଅମିତାର ରକ୍ଷା କରିବ ।

ମାତଙ୍ଗୀ ଭୂମି ସ୍ପର୍ଶକରି ମୁଣ୍ଡ ନୁଆଁଇ ରାଜମାତାଙ୍କୁ ପ୍ରଣାମ କଲା ଏବଂ ସେହି ମନ୍ତ୍ରସିଦ୍ଧ ପୁଷ୍ପ ଅଞ୍ଜଳି ପ୍ରସାରଣ କରି ଗ୍ରହଣ କଲା ।

ତା'ପର ଦିନ ମାତଙ୍ଗୀ ରାଜମାତାଙ୍କର ପୂଜାନୈବେଦ୍ୟ ନେଇ ଶ୍ରୀଷ ଦୁର୍ଗରୁ ନଗରକୁ ଗଲା ଏବଂ ସେଠାରୁ ଆଚାର୍ଯ୍ୟଙ୍କର ଭବନରେ ପହଞ୍ଚିଲା । ଶ୍ରୀଷ ଦୁର୍ଗର କୁଶଳ ସମାଚାର ଶୁଣେଇ ସେ ରାଜପ୍ରାସାଦ ସମ୍ମୁଖସ୍ଥ ରାଜପଥକୁ ଆସିଲା ।

ରାଜପ୍ରାସାଦର ସମ୍ମୁଖ ପଥରେ ମାତଙ୍ଗୀର ପୂର୍ବ ପରିଚିତା ଜଣେ ବୃଦ୍ଧାର ଦହି ଦୋକାନ ଥିଲା । ବୃଦ୍ଧାର କୁଶଳ ମଙ୍ଗଳ ପଚାରି ମାତଙ୍ଗୀ ନଗରରେ ଭରି ରହିଥିବା ଆତଙ୍କ ସମ୍ବନ୍ଧରେ ଚିନ୍ତା ପ୍ରକାଶ କଲା । କହିଲା– ଶୁଣିଛି, ରାଜପ୍ରାସାଦରେ ନିତ୍ୟ ରକ୍ଷାନିମନ୍ତେ ମହତ୍ ପୂଜା ହେଉଛି । ସହସ୍ର ଲୋକଙ୍କୁ ପ୍ରସାଦ ସେବନ କରାଯାଉଛି । ଶତଶତ ବାଳକ ବାଳିକା କ୍ରୀଡ଼ା ନିମନ୍ତେ ପ୍ରାସାଦକୁ ଆସୁଛନ୍ତି ।

ବୃଦ୍ଧା ମୁହଁ ଫୁଲେଇ କହିଲା– 'କିଏ କହୁଛି ? ଦୂର ପର୍ବତ ସୁନ୍ଦର ଦିଶେ । ଆମେ ତ ଏଇ ଦ୍ୱାର ଆଗରେ ରହିଛୁ । ଏଇନେ ରାଜପ୍ରାସାଦରେ ଆଉ

କ'ଣ ବା ଅଛି ଯେ ? ଏଇନେ ତ ରାଜପ୍ରାସାଦ-ଦ୍ୱାର ବି ଫିଟୁ ନାହିଁ । ସେଇଆ, ଦଶ-ପନ୍ଦର ଜଣ ବାଳକ-ବାଳିକା ରାଜପ୍ରାସାଦକୁ ଆସନ୍ତି । ସେଇମାନେ ହୁଏତ ପ୍ରସାଦ ପାଉଥିବେ ... ସେ କ'ଣ ... ?

ବୃଦ୍ଧା ରାଜମାର୍ଗରେ ବାଳକମାନେ ଘେରି ରହି ଚାଲିଥିବା ଗୋଟିଏ ଦାସୀଙ୍କୁ ସଂକେତରେ ଦେଖେଇ କହିଲା– 'ସାମନାରେ ବାଳକମାନଙ୍କୁ ସାଙ୍ଗରେ ନେଇ ମହାରାଣୀଙ୍କର ଦାସୀ ହିତାହିଁ ଯାଉଛି । ତୁ ଦେଖିପକା, କେତେ ଶହ ବାଳକ ଯାଉଛନ୍ତି । ଏଇ ଦାସୀ ତ ମହାରାଣୀଙ୍କ ଲାଗି ବାଛି ବାଛି କଣ୍ଢେଇ ଆଣେ ଆଉ ପିଲାମାନଙ୍କୁ ଡାକିନିଏ ।

ବୃଦ୍ଧା କହି ଚାଲିଥାଏ   ଆମର କ'ଣ ହାନି ଲାଭ ଅଛି ପ୍ରାସାଦରେ । ଆଗେ ଗୋଟାଏ ଦିନରେ କୋଡ଼ିଏ କୋଡ଼ିଏ କାର୍ଷାପଣର ଦହି ବିକ୍ରି ହେଉଥିଲା, ମିଠେଇ କୁଡ଼ମୁଡ଼ ବିକ୍ରି ହଉଥିଲା । ବେଶ୍ ଚଳି ଯାଉଥିଲା । ଯୋଉଦିନରୁ ନଗର ଶ୍ରେଷ୍ଠୀର ରକ୍ଷିତା ଏଇ ପାଖରେ ବଟା ଭାଙ୍ଗ ଦୋକାନ ଖୋଲି ବସିଛି, ସିଏ ବି ଗଲା । ସେ ମଲାମୁହାଁ ଏ ବୁଢ଼ୀ ବୟସରେ କେଳି...

ମାତଙ୍ଗୀ ବୃଦ୍ଧାର କଥା ଅଧାରେ ଛାଡ଼ି ଆଣ୍ଠୁରେ ହାତ ଭରା ଦେଇ ଉଠିଲା– 'ଯାଉଛି, ସେଇଠି ମୋତେ ନ ଦେଖି ପିଲାମାନେ କାନ୍ଦିବା ଆରମ୍ଭ କରିଦେବେଣି !'

ମାତଙ୍ଗୀ ପ୍ରଥମେ ଧୀରେ ଧୀରେ ପୁଣି ଦ୍ରୁତଗତିରେ ହିତାର ଅନୁସରଣ କଲା । ହିତାର ପାଖକୁ ଆସି କହିଲା– 'ଦେଖ ଲୋ ଝିଅ, ତୋର କାର୍ଷାପଣ ପଡ଼ିଗଲା । ତରବର ହେଇ ତୋର କୌଣସି କଥାକୁ ନଜର ବି ନାହିଁ ।'

ମାତଙ୍ଗୀ ନଇଁପଡ଼ି ଉଠିବା ବାହାନାରେ କାର୍ଷାପଣଟିଏ ହିତା ହାତକୁ ବଢ଼େଇ ଦେଲା ।

ହିତା ନଗର ବଜାରକୁ ଆସିଲେ କେବେ କେମିତି ନଗର ଶ୍ରେଷ୍ଠୀଙ୍କର କେହି ଦାସୀ କୌଣସି ନା କୌଣସି ବାହାନାରେ ତା ସାଙ୍ଗରେ କିଛି ପ୍ରସଙ୍ଗରେ କଥା ହୋଇ ଯାଉଥିଲେ । ସେ ମାତାଙ୍କ ଲାଗି ମହାରାଣୀଙ୍କ ବ୍ୟାକୁଳତାର ସମାଚାର ପାଇ ଶ୍ରେଷ୍ଠୀର କଥା ମଧ୍ୟ ଶୁଣେଇ ଯାଏ ।

ହିତା ଅପରିଚିତା ବୃଦ୍ଧା ଦାସୀକୁ ଦେଖି, ସେ ଶ୍ରେଷ୍ଠୀର ଦାସୀ ଏବଂ କିଛି କହିବାକୁ ଚାହୁଁଛି ବୋଲି ଅନୁମାନ କଲା । ହିତା ମାତଙ୍ଗୀ ହାତରୁ କାର୍ଷାପଣ ନେଇନେଲା ଓ କହିଲା– 'ମୋ ଅଣ୍ଟିରୁ ପଡ଼ିଗଲା ଯେତେବେଳେ ଏହା ମୋ ପାଖରେ ରହିବା ଉଚିତ ନୁହେଁ । ଏ ରହିବାକୁ ଚାହୁଁନି ମଧ୍ୟ ।' ତାପରେ ସେ ତା ସହିତ ରହିଥିବା କଞ୍ଚୁକୀକୁ ସମ୍ବୋଧନ କରି କହିଲା– 'ମାମୁ, ଏ

ତମ ଭାଗର । ଶୋଷ ତ ହେବଣି ନିଶ୍ଚୟ । ମାଉସୀର ଦୋକାନ କୋଉ ଦୂର ବାଟ ! ସେଇ ଦେଖ ପଛକୁ ... ।'

କଞ୍ଚୁକୀ ପାଳିତର ମଦ୍ୟ ତୃଷା କେବେହେଲେ ଶାନ୍ତ ହୁଏ ନାଇଁ । ସେ କାର୍ଷାପଣ ଧରି ସାଙ୍ଗେ ସାଙ୍ଗେ ମାଉସୀଙ୍କ ଦୋକାନକୁ ଦଉଡ଼ିଗଲା ।

ମାତଙ୍ଗୀ ହିତା ସାଙ୍ଗରେ ଚାଲିଥିଲା । ହିତାର କାନ ପାଖରେ ମାତଙ୍ଗୀ ଧୀରଗଳାରେ କହିଲା – 'ଭଗବତୀ ରାଜମାତାଙ୍କର ସନ୍ଦେଶ ଅଛି । ରାଜମାତାଙ୍କର ତୋ ଉପରେ ଅତୁଟ ବିଶ୍ୱାସ । ...'

'ରାଜମାତା ତ ତୀର୍ଥାଟନ କରୁଛନ୍ତି ।' ହିତା ସନ୍ଦେହ ଓ ବିସ୍ମୟ ପ୍ରକାଶ କଲା ।

'ଏ ବୃଦ୍ଧାବସ୍ଥାରେ ମୋର କି ଲୋଭ ? ମିଛ କାହିଁକି କହିବି ?' ମାତଙ୍ଗୀ କହିଲା – 'ମୋତେ ବିଶ୍ୱାସ କର, ମୁଁ ତୋଠାରୁ କିଛି ଚାହୁଁ ନାହିଁ । ରାଜମାତା ଶ୍ରୀଷ ଦୁର୍ଗରେ ଅଛନ୍ତି ଏବଂ ତୁ ତାଙ୍କୁ ଏକ୍ରପ୍ରକାର ବନ୍ଦିନୀ ମନେକର । ମୁଁ ଆଚାର୍ଯ୍ୟଙ୍କର ଦାସୀ, ରାଜମାତାଙ୍କର ସେବା ନିଯୁକ୍ତ ହୋଇ ରହିଛି । ବୁଝିଲୁ ?'

ଆପଣାର ବିସ୍ମୟ ଆୟତ୍ତ କରି ହିତା ପ୍ରଶ୍ନ କଲା – 'ଭଗବତୀ କି ବାର୍ତ୍ତା ଦେଇଛନ୍ତି ?'

ମାତଙ୍ଗୀ କହିଲା – 'ରାଜମାତା ତପ କରୁଛନ୍ତି । କିନ୍ତୁ ଆପଣାର ଝିଅ ପାଇଁ କେଉଁ ମାତା ଚିନ୍ତିତ ହେବ ନାହିଁ ? ରାଜମାତା ମୋତେ ଏକ ଲକ୍ଷ ମନ୍ତ୍ରର ଜପସିଦ୍ଧ ଫୁଲଟିଏ ଦେଇଛନ୍ତି । ସେହି ପୁଷ୍ପକୁ କବଚରେ ରଖି ମହାରାଣୀଙ୍କର ଶ୍ରୀଅଙ୍ଗରେ ବାନ୍ଧିଦେବୁ । ତାହା ସଂକଟ ମୋଚନ କରିବ । ଏହା ରାଜମାତାଙ୍କର ଇଚ୍ଛା ।'

ହିତା ମାତଙ୍ଗୀର ଅଞ୍ଚଳରେ ବନ୍ଧା ହୋଇଥିବା ପତ୍ରଠୋଲା ଆଦରରେ ଗ୍ରହଣ କରି ଆପଣା ପଣତରେ ବାନ୍ଧି ସଜଳ ନେତ୍ରରେ କହିଲା – 'ମହାରାଣୀ ସକୁଶଳ ଅଛନ୍ତି ମାତ୍ର ରାଜମାତାଙ୍କ ଲାଗି ଅତ୍ୟନ୍ତ ବ୍ୟାକୁଳ । ଭଗବାନ୍ ଓ ଦେବତାମାନଙ୍କର ସହାୟତା ହିଁ ଏକମାତ୍ର ଅବଲମ୍ବନ । ପରମ ଭଗବତୀଙ୍କୁ ଦାସୀର ଭୂସ୍ପର୍ଶ ନିବେଦନ କହିଦେବୁ ।

× × × × ×

ରାଜପ୍ରାସାଦରୁ ବାହାରି ନଗରକୁ ଯାଇ ନ ପାରିବା ଫଳରେ ଅମିତାଙ୍କର ମାତାଙ୍କ ଲାଗି ବ୍ୟାକୁଳତା ସମାପ୍ତ ହେଲା ନାହିଁ । ପ୍ରାସାଦର କର୍ମାନ୍ତାଧିଷ୍ଠାୟକ ସାମନ୍ତ ପ୍ରତାପ ସେହି କାରଣରୁ ଅତ୍ୟଧିକ ଚିନ୍ତିତ ଥିଲେ । ସାମନ୍ତ ହିତାକୁ ଡାକି କଠୋର ଚେତାବନୀ ଦେଇଥିଲେ ।

'ତୋ'ର ବୁଦ୍ଧି-ଶୁଦ୍ଧି କ'ଣ ହେଲା ? ତୁ ପ୍ରମାଦ ହେତୁ ବର୍ତ୍ତମାନ ଆଉ ରାଜସେବାର ଯୋଗ୍ୟ ହୋଇ ରହି ନାହୁଁ । ବାଳିକା ପର୍ଯ୍ୟନ୍ତକୁ ଭୁଲେଇ ରଖି ପାରୁ ନାହୁଁ ? ଭବିଷ୍ୟତରେ ବାଳିକା ମହାରାଣୀଙ୍କର ବ୍ୟାକୁଳ ହେବାର ସମାଚାର ମିଳିଲେ ତୋତେ ଦଣ୍ଡକକୁ ଦେଇ ଅନ୍ୟ କୌଣସି ଦାସୀକୁ ସେବାନିଯୁକ୍ତ କରିବାକୁ ପଡ଼ିବ ।'

ସାମନ୍ତ ପ୍ରତାପ ହିତାକୁ ଶୁଣେଇ ଶୁଣେଇ କଞ୍ଚୁକୀ ଉଦ୍ଧାଳ ସହିତ ଅନ୍ୟାନ୍ୟ ଚତୁର ଦାସୀଙ୍କ ପ୍ରସଙ୍ଗରେ କଥା ହେଲେ ଏବଂ ମଥା ନୁଆଁଇ ହିତାକୁ କଣେଇ ଦେଖି କହିଲା – 'ଏହାକୁ କିଛି ଅନ୍ୟ କାର୍ଯ୍ୟରେ ଲଗେଇବାକୁ ଦଣ୍ଡକକୁ କହିବ କିମ୍ବା କିଛିଦିନ ପାଇଁ କାଳକୋଠରିରେ ପକେଇ ରଖ । ଯଦି ଏ କୌଣସି କାମର ନୁହେଁ ଏହାକୁ ମହାରାଣୀଙ୍କ ପଛରେ ଲଗେଇ ଲାଭ କ'ଣ ? ... ଠିକ୍ ଅଛି, ସେ ଏଇନେ ଯାଉ । ମୁଁ ଅନ୍ୟ ଯୋଗ୍ୟ ଦାସୀ ସମ୍ବନ୍ଧରେ ଚିନ୍ତା କରୁଛି ।'

ହିତା ଫେରିଆସି ଅନେକ କାନ୍ଦିଲା । ସେ ଜାଣିପାରୁଥିଲା ଯେ ସେ ଅନେକ ଉପରକୁ ଚଢ଼ିଯାଇଛି ମାତ୍ର ବୃକ୍ଷରେ କୌଣସି ଫଳ ନାହିଁ । ଉପରେ ରାକ୍ଷସ ବସିଛି ଏବଂ ଧକ୍କା ଦେଇ ତାକୁ ନିର୍ଦ୍ଦୟ ଭାବରେ ତଳକୁ ଫୋପାଡ଼ି ଦେବାକୁ ବସିଛି ।

ହିତା କଳ୍ପନା କରିଥିଲା – ରାଜ୍ୟ, ପ୍ରଜା ଓ ସବୁକିଛି ମହାରାଣୀଙ୍କ ନିମନ୍ତେ ହିଁ ରହିଛି । ମହାରାଣୀଙ୍କର ଦୁଃଖରେ ପରାସ୍ତ ହୋଇ ସେ ତାଙ୍କର ଇଚ୍ଛା ପୂରଣ କରିବେ । ସେ ମଧ୍ୟ ମହାରାଣୀଙ୍କର ନାବରେ ଲୁଚି ରହିଥିବା ମୂଷିକ ଭଳି ବାଧା ନଦୀ ପାର କରିଯିବ ।  ଆଚାର୍ଯ୍ୟ ମହାମାତ୍ୟ ତ ରାକ୍ଷସ ଠାରୁ ମଧ୍ୟ କଠୋର ମନେହେଲା । ସେ ତ ସ୍ୱୟଂ ରାଜା ପାଲଟି ଯାଇଛି । ସେଇ ମୋଦକୁ ବାନ୍ଧି ଜଙ୍ଗଲ ପଥରେ ନେଇ ଯୁଦ୍ଧ ସାମଗ୍ରୀ ବହନ କରିବା କାର୍ଯ୍ୟରେ ଲଗେଇଥିଲା ।

ହିତାକୁ ମାଉସୀଠାରୁ ସମାଚାର ମିଳିଥିଲା – ସହସ୍ର ଲୋକ, ଯେଉଁମାନଙ୍କ ପ୍ରତି ରାଜପୁରୁଷ ଅପ୍ରସନ୍ନ ଥିଲେ, ସେମାନଙ୍କୁ ବନ୍ଦୀ କରି ରଣକ୍ଷେତ୍ରରେ ଯୁଦ୍ଧସାମଗ୍ରୀ ବହନ କରିବା କାର୍ଯ୍ୟରେ ଲଗା ଯାଇଥିଲା । ସେଭଳି ସହସ୍ର ସହସ୍ର ଲୋକ ଦିନରାତି ଅସ୍ତ୍ର ଶସ୍ତ୍ର ଓ ଅନ୍ନ ମୁଣ୍ଡେଇ ରଣକ୍ଷେତ୍ରକୁ ଯାଉଥିଲେ ଓ ସେଇ ଗାଣ୍ଟୁଆରେ ଆହତମାନଙ୍କୁ ମୁଣ୍ଡେଇ ନଗରକୁ ଆଣୁଥିଲେ । ସେହି ଲୋକମାନେ ମାର୍ଗରେ ଥକି ଶିଥିଳ ହୋଇ ପଡୁଥିଲେ, ରାଜପୁରୁଷମାନେ ସେମାନଙ୍କୁ କୋରଡ଼ା ମାରି ଶୀଘ୍ର ଚାଲିବାକୁ ବାଧ୍ୟ କରୁଥିଲେ ।

ହିତା ମହାରାଣୀଙ୍କ ନିମନ୍ତେ ପୁତ୍ତଳିକା ଏବଂ ପଶୁମାନଙ୍କର ମୁଖା ନେବାକୁ ବିଟ୍‌ଠଳ ପାଖକୁ ଯାଇଥିଲା । ସେ ମାଉସୀ ପାଖରୁ ଶୁଣିଥିବା ଖବର ଶୁଣାଇ ପଚାରିଲା – 'ଏହା କ'ଣ ସତ୍ୟ ?'

ବିଟ୍‌ଠଳ ଉଦାସ ସ୍ୱରରେ ଉତ୍ତର ଦେଲା – 'ହୁଁ, ମୁଁ ମଧ୍ୟ ସେହିଭଳି ଶୁଣିଛି । ଏହି ରାଜପୁରୁଷମାନେ ଛୁଞ୍ଚିକୁ ଲଙ୍ଗଳ କରି କାମ କରିବା ବିଚାର କରୁଛନ୍ତି । ଏମାନଙ୍କ ବୁଦ୍ଧିର କି ଭରସା । ମୋତେ କହିଥାନ୍ତେ ମୁଁ ସେମାନଙ୍କୁ ମୋଦ ବଦଳରେ ଦୁଇଟି ଦାସ ଦେଇଥାନ୍ତି । ବୈଶାଳୀର ନର୍ତ୍ତକୀର କାମ ଅଧାରେ ରହିଛି । ନଗରପାଳକୁ କିଛି କହିବି ଯଦି ରାଜ୍ୟାଦେଶ ପ୍ରତି ଅସନ୍ତୋଷ ପ୍ରକାଶ କରିବାର ଅପରାଧୀମାନଙ୍କ ମଧ୍ୟରେ ଗଣା ହେବି ।

ମୋଦର ଅବସ୍ଥାର ଅନୁମାନ କରି ହିତାର ମନ ଖଣ୍ଡ ବିଖଣ୍ଡିତ ହେଉଥିଲା । ସେ ଥରେ ମାତ୍ର ଦଣ୍ଡକର ଅପ୍ରସନ୍ନତା ଫଳରେ କୋରଡ଼ା ମାଡ଼ ଖାଇଥିଲା । ସେଇ ସ୍ମୃତିରେ ହିଁ ତା'ର ଛାତି ଥରି ଯାଉଥିଲା । କେଜାଣି କେତେ କୋରଡ଼ା ମୋଦ ପ୍ରତିଦିନ ସହନ କରୁଥିବ ?

ହିତା ମନେ ମନେ ଭାବେ – 'ମୋର କ୍ଷମତା ଥିଲେ ମୋର ପିଠିକୁ ତା ଲାଗି ଢାଲ କରି ନିଅନ୍ତି ଆଉ ମୋଦର ପୀଡ଼ା ସହିଯାଆନ୍ତି । ମୋର ଶରୀର କ୍ଷତ ବିକ୍ଷତ ହୋଇଯାଆନ୍ତା ପଛକେ ମୋଦ ଆହତ ହୁଅନ୍ତା ନାହିଁ । ମୋଦ କୋରଡ଼ା ମାଡ଼ ନ ପଡୁ ବୋଲି ଖରା ଆଉ ଧୂଳିରେ ବୋଝ ମୁଣ୍ଡେଇ କେତେ ବାଟ ଚାଲୁ ନ ଥିବ ? ନିରନ୍ତର ଦଉଡୁ ଥିବ । କ୍ଳାନ୍ତି, ଶୋଷ, ରୌଦ୍ରତାପ ତାକୁ ଅତିଷ୍ଠ କରି ପକାଉଥିବ । କେତେ ଝାଳ ତା'ର ଶରୀରରୁ ବୋହି ଯାଉ ନ ଥିବ ? ଯେମିତି ସରୋବରରେ ବୁଡ଼ି ଆସିଥିବା ମଣିଷ !

ତାକୁ ମଧ୍ୟ କୋରଡ଼ା ମାଡ଼ ଖାଇବାକୁ ଦଣ୍ଡକ ପାଖକୁ ପଠେଇ ଦିଅନ୍ତୁ ବୋଲି ହିତା ମନକରେ । ଯେଉଁ ପୀଡ଼ା ମୋଦ ସହନ କରୁଛି ସେ ତାହା ମଧ୍ୟ ସହନ କରୁ । ସେଭଳି ଭାବରେ ଜୀବନ ହାରିଦେଉ । ଯଦି ସେ ମୋଦର ମରଣ ସମାଚାର ପାଇବ ତେବେ ଅବଶ୍ୟ ଜୀବନ ହାରିଦେବ । ପ୍ରାସାଦ ଛାତରୁ କିମ୍ବା କୂଅକୁ ଡେଇଁ ଜୀବନ ହାରିଦେବ ।

ହିତାର ଶ୍ରେଷ୍ଠୀ ସୌମିତ୍ର ଉପରେ କ୍ରୋଧ ଆସେ । ଶ୍ରେଷ୍ଠୀ ହିଁ ମୋତେ ମହାରାଣୀଙ୍କ ମନରେ ମାତାଙ୍କ ପ୍ରତି ବ୍ୟାକୁଳତା ଜାଗରିତ କରିବାର ମୂର୍ଖାମୀ କରିବାକୁ ବଢେଇଛି । ଶ୍ରେଷ୍ଠୀ ହିଁ ମୋଦକୁ ଦେବାଳୟରେ ଶଙ୍ଖ ବଜେଇ ରାଜମାତାଙ୍କର ପ୍ରତ୍ୟାଗମନ ନିମନ୍ତେ ପ୍ରାର୍ଥନା କରିବାର ପରାମର୍ଶ ଦେଇଛି । ଏତେ ଲୋକର ସର୍ବନାଶ କରି ତାକୁ କ'ଣ ମିଳିଲା ? ନଗରକୁ ଯାଇ ଥରେ ଅଧେ ମୋଦକୁ

ଦେଖିଆସିବାର ଅବସର ବି ରହିଲା ନାହିଁ । ଭଗବତୀ ରାଜମାତା ଯେତେବେଳେ ଫେରିଥାଆନ୍ତେ ସେତେବେଳେ ଦେଖା ଯାଇଥାନ୍ତା । ମୁଁ ତ ସବୁ କଥାକୁ ଭାଗ୍ୟ ବୋଲି ଧରି ନେଇଥିଲି । ସନ୍ତୋଷ ଥିଲା । ଏଇ ଦୁଷ୍ଟ ଶ୍ରେଷ୍ଠୀ ନିଆଁ ଲଗେଇ ସବୁ ଭସ୍ମ କରିଦେଲା ।

ସାମନ୍ତ ପ୍ରତାପଙ୍କ କ୍ରୋଧ ଆଗରେ ମୁଣ୍ଡ ନୁଆଁଇ ନବା ଛଡ଼ା ହିତା ଆଉ କ'ଣ ବା କରିପାରିବ ? ସେ ଗୁପ୍ତ ଉପାୟରେ ବାଳିକା ମନରେ ଯେ ବାରମ୍ବାର ମାତାଙ୍କ ସ୍ମୃତି-ବ୍ୟାକୁଳତା ଜାଗ୍ରତ କରାଇଛି ତାର ପ୍ରଭାବ ସହସା କିଭଳି ତୁଟିଯିବ ?

ଅମିତା ଉଠି ହିତାକୁ କହିଲେ– 'ହିତୁ, ଆଜି ମାତା ସ୍ୱପ୍ନରେ ଆସିଲେ ନାହିଁ ।'

ହିତାର ମୁଖମଣ୍ଡଳରେ ଭୟର କାଳିମା ବୋଳି ହୋଇଗଲା । ସେ କାତର ସ୍ୱରରେ ଅନୁରୋଧ କଲା– 'ଭଗବତୀ, ମାତାଙ୍କୁ ଏଭଳି ସ୍ମରଣ କରନ୍ତି ନାହିଁ । ଭଗବତୀ ଏବେ ବଡ଼ ହେଲେଣି ।'

ହିତାର ମୁଖମଣ୍ଡଳରେ ଭୟ ଏବଂ କାତରତା ଅମିତାଙ୍କୁ ବିସ୍ମିତ କଲା । ସେ ପଚାରିଲେ– 'କାହିଁକି ମନେକରନ୍ତି ନାହିଁ ?'

ଆଉ କା'ର ଆସିଯିବା ପୂର୍ବରୁ ହିତା ଚାପାଗଳାରେ କହିଲା– ମହାରାଣୀ ମାତାଙ୍କ ସ୍ମୃତିରେ କାନ୍ଦୁଥିବା କେହି ଦେଖିବ ଯଦି ତା'ହେଲେ ଦଣ୍ଡକ ଦାସୀକୁ କୋରଡ଼ା ମାଡ଼ ଦେବ ।

ସେତେବେଳେ ଅମିତା ମୌନ ରହିଗଲେ । ମାତ୍ର ଅମିତା ତାଙ୍କୁ ସ୍ନାନ କରେଇବା ସମୟରେ ଏକାନ୍ତ ଦେଖି ସେ ପ୍ରଶ୍ନ କଲେ– 'ମୁଁ ମାତାଙ୍କୁ ମନେ ପକେଇଲେ ଦଣ୍ଡକ ତୋତେ ମାରିବ କାହିଁକି ?'

ହିତାର ଆଖି ଲୁହ ଛଳଛଳ ହୋଇ ଉଠିଲା । କହିଲା– ଭଗବତୀ, ଦାସୀର ଭାଗ୍ୟ ହିଁ ସେହିଭଳି । ମହାରାଣୀ ଲୋକଙ୍କ ଆଗରେ ମାତାଙ୍କୁ ସ୍ମରଣ କରିବେ ନାହିଁ ।

ହିତାର ଦୁଃଖୀ ହେବାର ଭୟ ବାଳିକା ମନକୁ ପ୍ରଭାବିତ କଲା । ସେ ଆଉ କାହାରି ଆଗରେ ବି ମାତାଙ୍କୁ ମନେ ପକେଇଲେ ନାହିଁ । ମନେପଡ଼ିଲେ ସେ ଉଦାସ ହେଉଥିଲେ ଏବଂ ଏକାନ୍ତ ସମୟରେ ହିଁ ହିତା ସହିତ ମାତାଙ୍କ ବିଷୟରେ କଥା ହେଲେ ।

ହିତା ଅମିତାଙ୍କୁ ଛାତିରେ ଜଡ଼େଇ ଧରି ଆଶ୍ୱାସନା ଦିଏ... 'ଭଗବତୀ, ରାଜମାତା ଅବଶ୍ୟ ଆସିବେ ।' ଏବଂ ସେ କଳ୍ପନା କରେ ରାଜମାତା ଆସିଲେ

ସେ ମୋଦର ରକ୍ଷା ଲାଗି ପ୍ରାର୍ଥନା କରିବ । ପରିଣାମ ଯାହା ହେଉ ସେ କାନ୍ଦି କାନ୍ଦି ରାଜମାତାଙ୍କୁ ଅବଶ୍ୟ ପ୍ରାର୍ଥନା କରିବ ।

ଅମିତାଙ୍କର ହିତା ସହିତ ମାତାଙ୍କ ସମ୍ବନ୍ଧରେ ଆଳାପ କ୍ରମଶଃ ଏକ ରହସ୍ୟ ସମ୍ବନ୍ଧରେ ପରିଣତ ହେଲା । ଅମିତାଙ୍କ ପାଇଁ ଏକମାତ୍ର ହିତା ହିଁ ବିଶ୍ୱାସପାତ୍ରୀ । ଅମିତା କଥା ଗୋପନ ରଖିବା ମଧ୍ୟ ଜାଣିଗଲେ । ଯେତେବେଳେ ବି ସେ ହିତା ସହିତ ମାତାଙ୍କ ସମ୍ବନ୍ଧରେ କଥା ହେବାକୁ ଚାହୁଁଥିଲେ ସେତେବେଳେ ସେ ତାକୁ ପ୍ରମୋଦ ଉଦ୍ୟାନକୁ କିମ୍ବା ଛାତ ଉପରକୁ ଯିବାପାଇଁ ଆଗ୍ରହ ପ୍ରକାଶ କରିବାକୁ ଲାଗିଲେ । ପ୍ରାସାଦର ଛାତ ଉପରକୁ ଯାଇ ହିତା ବହୁକ୍ଷଣ ଧରି ରାଜପଥକୁ ଅନେଇ ରହୁଥିଲା, କାଳେ ଦୂରରୁ ହେଉ ପଛକେ ମୋଦ ଆଖିରେ ପଡ଼ିବ ବୋଲି ଆଶାକରି ।

ମହାରାଣୀ ନଗରକୁ ବିନୋଦ ନିମନ୍ତେ ଯାଇପାରୁ ନ ଥିଲେ । ପ୍ରାୟ ସମସ୍ତ ଆମୋଦର ବ୍ୟବସ୍ଥା ତାଙ୍କ ପାଇଁ ପ୍ରାସାଦ ମଧ୍ୟରେ ହୋଇଥିଲା । ତା ବାହାରେ ହିତା ନଗରକୁ ଯାଇ ମହାରାଣୀଙ୍କ ସହିତ ଖେଳିବେ ବୋଲି କିଛି ବାଳକ ବାଳିକାଙ୍କୁ ଡାକି ଆଣୁଥିଲା । ସେ ସେଇ ଅବସରରେ କେବେ କେମିତି ମାଉସୀ ପାଖକୁ ଯାଇ ସୁଖ ଦୁଃଖ କଥା ହୋଇ ଆସୁଥିଲା । ଅଥବା ବିଟ୍ଠଳ ପାଖକୁ ଯାଇ ମୋଦ ସମ୍ବନ୍ଧରେ କିଛି ଖବର ପାଇ ମନର ସଧ ପୂରା କରି ଆସୁଥିଲା । ତେବେ କୌଣସି ସମ୍ବାଦ ହିଁ ନ ଥିଲା ।

ହିତା ମାତଙ୍ଗୀ ଠାରୁ ରାଜମାତା ତୀର୍ଥାଟନ କରିବାକୁ ନ ଯାଇ ଶ୍ରୀଷ ଦୁର୍ଗରେ ଅଛନ୍ତି ବୋଲି ସମାଚାର ପାଇ ଏତେ ବିକ୍ଷିପ୍ତ ହୋଇଗଲା ଯେ କୌଣସି କ୍ଷେତ୍ରରେ ସ୍ଥିର ହୋଇ ରହିବା ବସିବା ବି ସମ୍ଭବ ହେଲା ନାହିଁ । ଅଧୀରତାରେ ସେ ବାରମ୍ବାର ଅମିତାଙ୍କୁ ବାହୁରେ ଭିଡ଼ି ଧରୁଥିଲା ।

ହିତାର ଅଧୀରତା ଦେଖି ଅମିତା ପଚାରିଲେ – 'ତୋର କ'ଣ ହେଲା ହିତୁ ?'

ହିତା ଏହି ରହସ୍ୟ ଖୋଲିବା ଲାଗି ମନେ ମନେ ଆଶଙ୍କା କରି କହିଲା – 'ଭଗବତୀ ମହାରାଣୀ, କିଛି ନାହିଁତ ! ଦାସୀ ମହାରାଣୀଙ୍କ ଲାଗି ବଳି ପଡ଼ି ଯାଉ... !' ତେବେ ଏତେ ବଡ଼ ରହସ୍ୟର ବୋଝ ମୁଣ୍ଡେଇ ହିତା ରୁଦ୍ଧଶ୍ୱାସ ହେବା ଭଳି ଅନୁଭବ କରୁଥିଲା । ପ୍ରାସାଦରେ ସେ ଏ କଥା କାହାକୁ ହେଲେ କହି ନାହିଁ । ମାଆକୁ କହିବ ଯଦି ସେ କେବଳ ଶିକ୍ଷା ଦେବ... 'ଚୁପ୍‌କର, ତୋର କ'ଣ ପଡ଼ିଛି ? ଏ କଥା ଜିଭରେ ଧଇଲୁ ନା, ଜିଭଟି ହରେଇବୁ ।'

ଶ୍ରେଷ୍ଠୀ ସୌମିତ୍ରର ପରାମର୍ଶରେ ହିଁ ହିତା ସବୁ ସଂକଟ ମୁଣ୍ଡେଇଛି; ତେବେ ଏ ରହସ୍ୟ ବି ସେ ତା'ଛଡ଼ା ଆଉ କାହା ଆଗରେ ଖୋଲି ଦେଇପାରିବ ?

ହିତା କଞ୍ଚୁକୀ ପାଳିତକୁ ସୁରକ୍ଷା ନିମନ୍ତେ ସାଙ୍ଗରେ ନେଇ ମହାରାଣୀଙ୍କ ଲାଗି ପୁତ୍ତଳିକା ଆଣିବା ଲାଗି ବିଟ୍‌ଠଳ ପାଖକୁ ଗଲା । ବିଟ୍‌ଠଳ ହିତାକୁ ଦେଖିଲେ ମୋଦକୁ ମନେପକେଇ ଉଦାସ ହୋଇ ଯାଉଥିଲା । କିନ୍ତୁ ରାଜପ୍ରାସାଦର ଲୋକଙ୍କୁ ଦାସୀ ହୋଇଥିଲେ ହେଁ କିଭଳି ଉପେକ୍ଷା କରିବ ? ସେ ପୁରସ୍କାରସ୍ୱରୂପ ହିତାକୁ ପାଞ୍ଚ କାର୍ଷାପଣ ଓ ପାଳିତ ହାତରେ ବି କିଛି ଧରେଇ ଦେଲା ।

ହିତା ବିଟ୍‌ଠଳ ପାଖରୁ ପାଇଥିବା କାର୍ଷାପଣ ମଧ୍ୟ ପାଳିତକୁ ଧରେଇ ଦେଲା । କହିଲା– 'ମାମୁ, ତମକୁ ହେଲେ କେତେବେଳେ ଅବସର ମିଳୁଛି, ମନଭରି ପିଇ ନବ ଯେ । ମୁଁ କାର୍ଷାପଣ ନେଇ କ'ଣ କରିବି । ତମ ଆସିବା ଯାଏ ଏଇଠି ଅଛି, ଶୀଘ୍ର ଆସିବ ।'

ହିତା ପାଳିତକୁ ମଦ ଦୋକାନକୁ ପଠେଇ ଶୀଘ୍ର ଆସିବାକୁ କହିଲା ସିନା; ସେ ଜାଣିଥିଲା ଯେ ଏତେ କାର୍ଷାପଣ ପାଇ ପାଳିତ ଦୁଇ ଘଡ଼ି ପୂର୍ବରୁ କଦାପି ଫେରିବ ନାହିଁ । ପାଳିତର ଯିବା ପରେ ପରେ ହିତା ଦ୍ରୁତଗତିରେ ଏକାକୀ ଶ୍ରେଷ୍ଠୀ ସୌମିତ୍ରଙ୍କ ଭବନକୁ ଚାଲିଗଲା । ଶ୍ରେଷ୍ଠୀର କକ୍ଷର ଦ୍ୱାରରକ୍ଷକ ହିତାକୁ ଚିହ୍ନିଗଲା ଏବଂ ଶ୍ରେଷ୍ଠୀ ମଧ୍ୟ ତାକୁ ଭିତରକୁ ଡକେଇ ନେଲା ।

ହିତା ପ୍ରଥମେ ଲୁହ ଗଡ଼େଇ ଶ୍ରେଷ୍ଠୀଙ୍କର ପରାମର୍ଶକ୍ରମେ ଚାଲି ମୋଦର ଦୁରବସ୍ଥାର କାରଣ ହୋଇଥିବା ଏବଂ ତାର ସଂକଟ କଥା କହିଲା । ତା'ର ପରାମର୍ଶ ପାଇଁ ହିଁ ସେ ପ୍ରାସାଦରେ କର୍ମାନ୍ତାଧିଷ୍ଠାୟକ ସାମନ୍ତଙ୍କର କ୍ରୋଧର ପାତ୍ରୀ ହୋଇଛି । ସେ ଏଇନେ କ'ଣ କରିବ ?

ସୌମିତ୍ର ମୋଦ ଓ ହିତାର ଦୁର୍ଭାଗ୍ୟ କଥା ଶୁଣି କହିଲା– 'ତୁ ଏବେ କହ, ଆଚାର୍ଯ୍ୟଙ୍କର ଅନ୍ୟାୟରୁ କିଏ ବର୍ତ୍ତିଛି ! ତୁ ରାଜମାତା ଓ ମହାରାଣୀଙ୍କର ଏକମାତ୍ର ବିଶ୍ୱସ୍ତ ଦାସୀ । ତୁ ଏହା ନ କଲେ ଆଉ କିଏ କରିବ ? ମାତ୍ର ଦେବତା ତ ଦୀର୍ଘ ସାଧନାରେ ପ୍ରସନ୍ନ ହୁଅନ୍ତି । ଦେବତା ଉପର ପରୀକ୍ଷା କରନ୍ତି । ତୋର ଦେବତାଙ୍କ ଉପରେ ବିଶ୍ୱାସ ନାହିଁ, ତେବେ କ'ଣ ଆଚାର୍ଯ୍ୟଙ୍କର ଦୟାକୁ ପରତେ ଯିବୁ ?'

ହିତା ଆଉ ଅଧିକ କାଳ ତାର ରହସ୍ୟ ଗୋପନ ରଖି ପାରିଲା ନାହିଁ– 'ସ୍ୱାମୀ ଜାଣନ୍ତି, ମହାରାଣୀ କୌଶସି ଦୂର ତୀର୍ଥକୁ ଯାଇ ନାହାନ୍ତି । ଏଇ ନଗରର ଶ୍ରୀଷ ଦୁର୍ଗରେ ଅଛନ୍ତି । ଦୁର୍ଗକୁ ସଶସ୍ତ୍ର ପ୍ରହରୀ ଘେରି ରହିଛନ୍ତି । ସେଠାକୁ କାହାରି ହେଲେ ପ୍ରବେଶ ନାହିଁ ।'

ହିତାଠାରୁ ରହସ୍ୟ ସମାଚାର ଶୁଣି ଶ୍ରେଷ୍ଠୀ କିଛି କାଳ ମୌନ ହୋଇ ବିଚାର କଲା, ତା'ପରେ ଅର୍ଦ୍ଧ ନିମୀଳିତ ଆଖିରେ ହିତାକୁ ଅନେଇ କହିଲା– 'ତାହା

ତୁ କ'ଣ ଜାଣି ନ ଥିଲୁ ? ଯଦି ସେଦିନ ମହାରାଣୀଙ୍କୁ ଉତ୍ତର ସିଂହଦ୍ୱାରକୁ ନ ନେଇ ଶ୍ରୀଷ ଦୁର୍ଗକୁ ନେଇ ଯାଇଥାନ୍ତୁ, ତାହାହେଲେ କ'ଣ ହୋଇଥାନ୍ତା ? ମହାରାଣୀ ବାଳିକା ହେଲେ କ'ଣ ହେଲା ତାଙ୍କୁ କିଏ ଅଟକେଇ ପାରିବ ? ମୋଦର ରକ୍ଷା ରାଜମାତାଙ୍କର ଆଦେଶ ବିନା କିଏ କରିପାରିବ ? ରାଜ୍ୟ ଆଚାର୍ଯ୍ୟଙ୍କର ନୁହେଁ ରାଜମାତା ଅଥବା ମହାରାଣୀଙ୍କର । ରାଜମାତା କ'ଣ ଜାଣନ୍ତି ନାହିଁ ଯେ ଅନାଚାର ହୋଇଛି । ତାଙ୍କର ଛାନ ଜାଣିଲୁଣି ଯେତେବେଳେ ଅଧୀର କାହିଁକି ?'

ହିତା ନିରାଶାରେ ଆପଣାର ଦୁଇହାତ ପତେଇ ଆପଣାର ଅସହାୟତା ପ୍ରକାଶ କଲା – କହିଲା – 'ସ୍ୱାମୀ, ଏଇନେ ତ ମହାରାଣୀ ମଧ୍ୟ ପ୍ରାସାଦରେ ବନ୍ଦିନୀ । ପ୍ରାସାଦ ଦ୍ୱାର ଖୋଲିବ ନାହିଁ... ଏ ଦାସୀର କି ସାମର୍ଥ୍ୟ !'

ଶ୍ରେଷ୍ଠୀ ହିତା ପାଖକୁ ନଇଁଆସି ବୁଝେଇ ଦେଲା – 'ତୁ ତୋର ସାମର୍ଥ୍ୟ କ'ଣ ଜାଣି ନାହୁଁ । ତୋର ଚତୁରତା ପାଇଁ ନଗରରେ ତ୍ରାହି ତ୍ରାହି ଶୁଭୁଛି । ଏ ସବୁ ଆଚାର୍ଯ୍ୟର କୂଟ । କୂଟକୁ କୂଟ କାଟେ । ଭେଦର ମାର୍ଗ ଖୋଜିବାକୁ ସ୍ତ୍ରୀଠାରୁ ଆଉ କିଏ ଅଧିକ ସମର୍ଥ ହେବ ? ଆଚାର୍ଯ୍ୟର ବନ୍ଦୀ ହୋଇଥିବା ବାଳିକା ମହାରାଣୀଙ୍କର ପ୍ରାଣରକ୍ଷାର ବି କି ବିଶ୍ୱାସ ଅଛି ? ଏବଂ ମୋଦର ଜୀବନ ରକ୍ଷା ମଧ୍ୟ ରାଜାମାତାଙ୍କର ଆଦେଶରେ ହିଁ ସମ୍ଭବ ହେବ । ତାଙ୍କ ଛଡ଼ା ଆଉ କିଏ କରିପାରିବ ?

ସାମନ୍ତ ପ୍ରତାପ ମହାରାଣୀଙ୍କର ବିନୋଦ ନିମନ୍ତେ ପ୍ରତ୍ୟେକ ସମ୍ଭବ ଆୟୋଜନ କରିଥିଲେ, ଯେପରିକି ମହାରାଣୀ ନଗରକୁ ଯିବାପାଇଁ ଇଚ୍ଛା କରିବେ ନାହିଁ । ପ୍ରାସାଦର ସଭାଭବନ ଅନେକ ପ୍ରକାରର ପୁତ୍ତଳିକା, ଅନ୍ୟାନ୍ୟ ଖେଳନା, ଫଳ ଫୁଲ, ମିଷ୍ଟାନ୍ନରେ ପରିପୂର୍ଣ୍ଣ ହୋଇ ରହୁଥିଲା । ପ୍ରାସାଦକୁ ମାଙ୍କଡ଼ ଓ ଭାଲୁନାଚ କରୁଥିବା ନଟମାନେ ବି ଆସୁଥିଲେ କିନ୍ତୁ ବାଳିକା ମହାରାଣୀଙ୍କର ସବୁଠାରୁ ପ୍ରିୟ ଖେଳ ପଶୁ ସଭାରେ ବିଲୁଆର ରାଜ୍ୟାଭିଷେକ ସେଦିନ ଥିଲା ।

ପଶୁମାନଙ୍କର ସେ ନାଟକ ଏକ ପ୍ରାଚୀନ ଲୋକକଥାର ଆଧାରରେ ରଚିତ ହୋଇଥିଲା । ବିଲୁଆଟିଏ ଭୋକରେ ବ୍ୟାକୁଳ ହୋଇ ଜଙ୍ଗଲରୁ ଗାଆଁକୁ ଚାଲିଗଲା । ଗାଆଁରେ କୁକୁରମାନେ ବିଲୁଆ ପଛରେ ଗୋଡ଼େଇଲେ । ବିଲୁଆ ଜୀବନ ବିକଳରେ ଗୋଟାଏ ଧୋବା ଘରେ ପଶି ତାର ନୀଳ କୁଣ୍ଡରେ ପଡ଼ିଗଲା । କୁଣ୍ଡରୁ ବାହାରିବା ପରେ ତାର ସମଗ୍ର ଶରୀର ନୀଳବର୍ଣ୍ଣ ହୋଇ ଯାଇଥାଏ । ନୀଳ ବର୍ଣ୍ଣ ରଙ୍ଗା ବିଲୁଆଟି ଜଙ୍ଗଲରେ ପହଞ୍ଚିବା ପରେ ପଶୁମାନେ ତାକୁ ଚିହ୍ନିପାରିଲେ ନାହିଁ । ତାକୁ ଦେଖି ଡରିଲେ ।

ଜଙ୍ଗଲର ରାଜା ସିଂହ ଭୟାତୁର ହୋଇ ନୀଳବର୍ଣ୍ଣୀ ଶୃଗାଳକୁ ପଚାରିଲେ– 'ହେ ବିଚିତ୍ର ଜୀବ, ତମେ କିଏ ?'

ନୀଳବର୍ଣ୍ଣ ଶୃଗାଳ ଅବସର ଅନୁକୂଳ ଗମ୍ଭୀର ସ୍ୱରରେ କହିଲା– 'ହେ ପଶୁଗଣ, ମୋତେ ଭଗବାନ୍ ସ୍ୱର୍ଗରୁ ପଠେଇଛନ୍ତି । ମୁଁ ସମସ୍ତ ପଶୁ ଜଗତର ରାଜା ହୋଇ ପାଳନ କରିବି ।

ପ୍ରାସାଦରେ ଏକତ୍ରିତ ହୋଇଥିବା ବାଳକ ବାଳିକା ଓ ଅମିତା ସିଂହ, ବାଘ, ଚିତା, ଭାଲୁ, ମହିଷ, ଶୃଗାଳ, କୁକୁର ଆଦିଙ୍କର ମୁଖା ପିନ୍ଧି ନେଉଥିଲେ । ଯେଉଁ ବାଳକ ଯେଉଁ ପଶୁର ମୁଖା ପିନ୍ଧୁଥିଲା ସେ ତାରି ବୋଲିରେ ରଡ଼ି କରୁଥିଲା । ସ୍ୱର୍ଗରୁ ରାଜା ହେବାକୁ ଆସିଥିବା ନୀଳବର୍ଣ୍ଣ ଶୃଗାଳର ମୁଖାଧାରୀ ବାଳକ ଏକ ନୀଳ ବର୍ଣ୍ଣ ପୋଷାକ ମଧ୍ୟ ପିନ୍ଧୁଥିଲା ।

ନୀଳବର୍ଣ୍ଣ ଶୃଗାଳକୁ ସିଂହାସନରେ ବସେଇ ତା'ର ରାଜ୍ୟାଭିଷେକ କରାଯାଉଥିଲା । ହିତା ଆଉ ବାପୀ ଯେତେବେଳେ ଶୃଗାଳ ଭଳି ରଡ଼ି କରୁଥିଲେ ସେତେବେଳେ ନୀଳବର୍ଣ୍ଣ ଶୃଗାଳ ମଧ୍ୟ ପୂର୍ବ ଅଭ୍ୟାସ ଅନୁସାରେ ସେଭଳି ପାଟି କରୁଥିଲା । ତା'ର ସେଇ ରଡ଼ିରୁ ସବୁ ବଣ୍ୟ ପଶୁ ତାକୁ ଚିହ୍ନି ଯାଉଥିଲେ ଏବଂ ତା ଉପରେ ଏକାସାଙ୍ଗରେ ଆକ୍ରମଣ କରି ଗୋଡ଼ାଉଥିଲେ ।

ଅମିତାଙ୍କୁ ନୀଳବର୍ଣ୍ଣ ଶୃଗାଳର ଖେଳ ଭାରି ଭଲ ଲାଗୁଥିଲା । ଏ ଖେଳ ବାରମ୍ବାର ଖେଳାଯାଏ ଏବଂ ପ୍ରତ୍ୟେକ ଥର ନୂଆ ବାଳକଟିଏ ନୀଳବର୍ଣ୍ଣ ଶୃଗାଳ ହୁଏ ।

ଅମିତା ଦ୍ୱିପ୍ରହର ବିଶ୍ରାମରୁ ଉଠିବାପରେ ମୁହଁ ଧୁଏଇ, କୁଳି କରେଇବାକୁ ଯେତେବେଳେ ହିତା ଶୟନକକ୍ଷ ସମୀପସ୍ଥ ସ୍ନାନାଗାରକୁ ନେଲା ସେତେବେଳେ ଅବସର ପାଇ ସେ ଚୁପିଚୁପି କହିଲା– 'ଭଗବତୀ ମହାରାଣୀ, ରାଜମାତା ତୀର୍ଥରୁ ଫେରିଲେଣି । ଦୁଷ୍ଟ ଆଚାର୍ଯ୍ୟ ଓ ସାମନ୍ତ ତାଙ୍କୁ ଏଠାକୁ ଆସିବାକୁ ଦେଉ ନାହାନ୍ତି । ମହାରାଣୀ କାହାକୁ କିଛି କହିବେ ନାହିଁ । ଯେମିତି ଦାସୀ କହିବ ସେଭ଼ଳି ସେ ତା' ସାଙ୍ଗରେ ନଗର ବାହାରକୁ ଚାଲିଯିବେ । ଏଇ ଖେଳ ପରେ ସେମାନେ ସନ୍ଧ୍ୟା ହେବା ପରେ ରାଜମାତାଙ୍କ ପାଖକୁ ଯିବେ ।'

ଅମିତା ହିତାଠାରୁ କଥା ଗୁପ୍ତ କରି ରଖିବା ଶିଖି ସାରିଥିଲେ । ସେ ସରଳ ଆଖିରେ ହିତାକୁ ଦେଖି ବିଶ୍ୱାସ ଦେଲେ ଯେ କଥା ଗୋପନରେ ରଖିବେ ଏବଂ ତା ସାଙ୍ଗରେ ନଗରକୁ ଯିବେ ।

ଅପରାହ୍ଣରେ ବାଳିକା ମହାରାଣୀ ବାଳକ ବାଳିକାଙ୍କ ସହିତ ନୀଳବର୍ଣ୍ଣ ଶୃଗାଳର ରାଜ୍ୟାଭିଷେକ ଖେଳ ଖେଳୁଥିଲେ । ଥରେ ସରିବା ପରେ ମଧ୍ୟ ଅନେକବାର

ଖେଳାଗଲା । ଖେଳ ସରିବା ପରେ ବାଳକମାନେ ପଶୁମାନଙ୍କର ମୁଖାପିନ୍ଧି ପ୍ରମୋଦ ଉଦ୍ୟାନକୁ ଯାଇ ଆଉ ଗୋଟାଏ ଖେଳ ଖେଳିବା ଆରମ୍ଭ କଲେ । ତାଙ୍କର ରାଜପୋଷାକ ହେତୁ ସମସ୍ତେ ଅମିତାଙ୍କୁ ଚିହ୍ନି ନେଉଥିଲେ । ହିତା ବସ୍ତ୍ର ଅଦଳ ବଦଳ କରିଦେଲା ।

ବାଳକମାନେ ପଶୁମାନଙ୍କର ମୁଖା ପିନ୍ଧି ଅଳିନ୍ଦ ପାର୍ଶ୍ୱସ୍ଥ ଅଗଣାର ଡାହାଣ ପଟେ ଥିବା ବଡ଼ ଅଗଣାରେ ଲୁଚକାଳି ଖେଳ ଆରମ୍ଭ କରିଦେଲେ । ସନ୍ଧ୍ୟାର ଈଷତ୍ ଅନ୍ଧାର ହେଲା ପଛକେ ଖେଳ ସମାପ୍ତ ହେଲା ନାହିଁ । ହିତା ସେଭଳି ଖେଳେଇ ଚାଲିଥାଏ । ଉଦ୍ଧାଳ ଓ ବାପୀ ବୟସ ହେତୁ ଅବଶ ହୋଇ ପଡ଼ିଥାନ୍ତି ଏବଂ ଗୋଟାଏ କୋଣକୁ ବସିଥାନ୍ତି ଏବଂ ହିତା ବାଳକମାନଙ୍କୁ ସେହିଭଳି ବାହାର ଅଗଣାରେ ଖେଳେଇ ଚାଲିଥାଏ ।

ଅନ୍ଧାର ଘନ ହେବା ପରେ ହିତା ବାଳକମାନଙ୍କୁ ଡାକି କହିଲା– 'ଚାଲ ଅନ୍ଧାର ହେଲା । ଚାଲ ମୁଁ ତମକୁ ପ୍ରାସାଦ ବାହାରେ ଛାଡ଼ିଆସିବି ।'

ପିଲାମାନେ ମୁଖା ଖୋଲି ବସିଲାରୁ ହିତା କହିଲା– ଥାଉ, ଥାଉ । ଘରକୁ ନେଇଯାଅ । ଘରେ ବି ଖେଳିବ ।

ପଶୁମାନଙ୍କର ମୁଖାପିନ୍ଧି ବିଭିନ୍ନ ପଶୁଙ୍କର ବୋଲିରେ ଡାକ ଦେଉଥିବା ବାଳକମାନଙ୍କ ଘେରରେ ରହି ହିତା ପ୍ରାସାଦ ସମ୍ମୁଖର ଅଗଣାକୁ ଆସିଲା ଏବଂ ଦ୍ୱାର ପଟକୁ ଆଗେଇଗଲା । ସେ ଦୁଇହାତରେ ଦୁଇଜଣ ବାଳିକାଙ୍କର ହାତ ଧରିଥିଲା । ସେ ଭିତରୁ କୁକୁରର ମୁଖା ପିନ୍ଧିଥିବା ଝିଅଟି ଅମିତା । ସବୁ ବାଳକ ବାଳିକା ଆପଣା ମୁଖା ଅନୁସାରେ ଡାକ ପାରି ନାଚି ଡେଇଁ ହିତା ସାଙ୍ଗରେ ଆଗେଇ ଗଲେ ।

ପ୍ରାସାଦ ଦ୍ୱାରର ତୋରଣରେ ସନ୍ଧ୍ୟା ମଶାଲ ଜଳି ସାରିଥିଲା । ଦ୍ୱାର ପାଖରେ ପହଞ୍ଚି ବାଳକମାନେ ଦ୍ୱାରପାଳକୁ ଡରେଇବାକୁ ଉଚ୍ଚୈସ୍ୱରରେ ପଶୁମାନଙ୍କର ରଡ଼ି କରୁଥିଲେ । ଅମିତା ମଧ୍ୟ କୁକୁର ପରି ଭୁକି ଚାଲିଥିଲେ । ଦ୍ୱାରପାଳମାନେ ସେମାନଙ୍କୁ ଦେଖି ହସିବାକୁ ଲାଗିଲେ । ସୈନିକମାନେ ଅବରୁଦ୍ଧ ବିଶାଳ କବାଟର ପାର୍ଶ୍ୱବର୍ତ୍ତୀ ଅର୍ଗଳ ଖୋଲିଦେଲେ ।

ସେତେବେଳେ ହିତାର ସର୍ବାଙ୍ଗ ସ୍ୱେଦାକ୍ତ ହୋଇ ଉଠିଥିଲା । କେହି ତାକୁ କିଛି ପଚାରି ଦେଇଥିଲେ ତା ମୁହଁରୁ ପଦେହେଲେ କଥା ବାହାରି ନ ଥାନ୍ତା । ସେ ଓଠ କାମୁଡ଼ି, ମହାରାଣୀ ଏବଂ ଆଉ ଜଣେ ବାଳିକାର ହାତ ଧରି ଅନେକ ରବ କରୁଥିବା ବାଳକ ବାଳିକାଙ୍କ ଘେରରେ ସେମାନଙ୍କୁ କିଛି ଦୂର ଯାଇ ଛାଡ଼ିଆସିବା ବାହାନାରେ ସଂକୀର୍ଣ୍ଣ ଅର୍ଗଳ ପଥ ଦେଇ ଚାଲିଗଲା ।

ପ୍ରାସାଦ ଦ୍ୱାରରେ କିଛି ଦୂରରେ ମଶାଲର ଧୂମିଳ ପ୍ରକାଶରେ ପ୍ରାସାଦକୁ ଆସୁଥିବା ବାଳକ ବାଳିକାଙ୍କୁ ନେବାକୁ ଆସିଥିବା ଦାସ, ସେବକ ଅଥବା ସମ୍ବନ୍ଧୀ ଅଭିଭାବକମାନେ ଅପେକ୍ଷା କରୁଥିଲେ । ବାଳକ ବାଳିକାଙ୍କ ମୁଖା ଲଗେଇ ରହିଥିବା ହେତୁ କେହି ସେମାନଙ୍କୁ ଚିହ୍ନିବା ସମ୍ଭବପର ନ ଥିଲା ମାତ୍ର ପିଲାମାନେ ସେମାନଙ୍କର ରକ୍ଷକଙ୍କୁ ଚିହ୍ନି ସେହିଭଳି ରବ କରି ଚାଲିଗଲେ ।

ସେତେବେଳଯାଏଁ ଅମିତାଙ୍କର ହାତ ଧରି ହିତା ଠିଆ ହୋଇରହିଥିଲା ଏବଂ ତା'ର ଗୋଡ଼ ଥରି ଯାଉଥିଲା । ସେ ଯଥାସମ୍ଭବ ଶୀଘ୍ର ଗତିରେ ପାଖର ଗଳି ରାସ୍ତାକୁ ବଢ଼ିଗଲା । ତାର ମନେ ହେଉଥିଲା ଯେମିତି ସେ ସ୍ୱୟଂ ମୃତ୍ୟୁର ଅତଳ ଗହ୍ୱରକୁ ତେଇଁ ଧୀରେ ଧୀରେ ଖସି ଚାଲିଛି । ଏଇମାତ୍ର ପଛରୁ ଯୂଥପ ଓ ଦଣ୍ଡକର ବଜ୍ରଗମ୍ଭୀର ଡାକରା ଶୁଭିବ ଏବଂ ସେମାନଙ୍କର ଖଡ଼୍‌ଗ ପିଠିରୁ ଛାତିକୁ ବାହାରି ଆସିବ ।

ରାଜପ୍ରାସାଦରୁ ପ୍ରାୟ ଶହେ ପାହୁଣ୍ଡ ପରେ ହିତା ଅମିତାଙ୍କର ହାତ ଧରି ଗଳିରାସ୍ତାରେ ଚାଲିଗଲା । ଗଳିର ଅନ୍ଧକାର ଓ ଏକାନ୍ତରେ ସେ ମହାରାଣୀଙ୍କର ମୁଖାଖୋଲି ଫିଙ୍ଗିଦେଲା । ଗଳିରେ କିଛି ଦୂରରେ ଜଣେ ସାଧାରଣ ଗୃହସ୍ଥର କବାଟ ଖୋଲା ଥିଲା । ହିତା ଅମିତାକୁ ନେଇ ଘରର ଅଗଣାକୁ ଚାଲିଆସିଲା ।

ଗୃହସ୍ୱାମୀ ଜଣେ ଯୁବତୀକୁ ଗୋଟାଏ ବାଳିକାର ହାତ ଧରି ଆପଣା ଗୃହରେ ପ୍ରବେଶ କରୁଥିବା ଦେଖି ପାଟି କଲା– 'ଆରେ କିଏ ତୁ ? କୁଆଡ଼େ ଯାଉଛୁ । ଏଠି ଶରଣାର୍ଥୀଙ୍କ ପାଇଁ ସ୍ଥାନ ନାହିଁ । ଏହା ଧର୍ମଶାଳା କିମ୍ବା ଦେବାଳୟ ନୁହେଁ । ଯା' - ବାହାର !'

'ସାବଧାନ, ସସମ୍ମାନ ସାବଧାନ ।' ହିତା ଚେତାବନୀ ଦେଲା । 'କଳିଙ୍ଗ ରାଜେଶ୍ୱରୀ ରାତ୍ରିରେ ଆପଣାର ପ୍ରଜାମାନଙ୍କର ଅବସ୍ଥା ଦେଖିବାକୁ ଆସିଛନ୍ତି । ସଂଯତ ହୋଇ ଚିହ୍ନ ଓ ଦେଖ ।'

ଗୃହସ୍ୱାମୀ କିଛିକ୍ଷଣ ପାଇଁ କାଠ ପାଲଟିଗଲା । ସ୍ତବ୍ଧ ହୋଇ କ୍ଷମା ଯାଚନାରେ ମହାରାଣୀଙ୍କୁ ପ୍ରଣାମ କଲା । ଗୃହସ୍ଥର ପତ୍ନୀ ଅଳିନ୍ଦରେ ଖଟ ଉପରେ ବସି ଶିଶୁପୁତ୍ରକୁ କ୍ଷୀର ପିଅଉଥିଲା । ସେ ମଧ୍ୟ ଶିଶୁମୁଖରୁ ସ୍ତନ ଛଡ଼େଇ ନେଇ ଖଟ ଉପରେ ଶୁଏଇ ଦେଇ ପଣତ ଟେକି ଓଢ଼ଣା ଟାଣି ମହାରାଣୀଙ୍କୁ ଦଣ୍ଡବତ ପ୍ରଣାମ କଲା ।

ସହସା ସ୍ତନଛଡ଼ା ହୋଇ ଖଟରେ ପଡ଼ିଥିବା ଶିଶୁ ଚିତ୍କାର କରିବାକୁ ଲାଗିଲା । ଅମିତା ହିତାର ହାତ ଛାଡ଼ି ଶିଶୁ ଆଡ଼କୁ ଦଉଡ଼ିଗଲେ ଏବଂ ତାକୁ କୌତୂହଳୀ ହୋଇ ନିରେଖି ଦେଖିଲେ । – 'ହିତୁ, ଦେଖ୍ ଶିଶୁ ! କେତେ ଛୋଟ ଶିଶୁ !'

ଅମିତାଙ୍କୁ ଏତେ ଛୋଟ ଶିଶୁକୁ ଦେଖିବାର ଏବଂ ସ୍ପର୍ଶ କରିବାର ଅବସର କେବେହେଲେ ମିଳି ନ ଥିଲା । ସେ ଶିଶୁ ସାଙ୍ଗରେ ଖେଳିବାକୁ ଲାଗିଲେ ।

ଗୃହସ୍ଥ ତୁରନ୍ତ ଜଳପାତ୍ର ଆଣି ଆସିଲେ । ତାଙ୍କର ପତ୍ନୀ ପରାତଟିଏ ନେଇ ଆସିଲେ ଓ ସେମାନେ ଖଟ ଉପରେ ବସିଥିବା ମହାରାଣୀଙ୍କର ପାଦ ଧୋଇବାକୁ ଲାଗିଲେ ।

ହିତା ମହାରାଣୀଙ୍କ ପକ୍ଷରୁ ପ୍ରଶ୍ନ କଲା– ମହାମହିମାମୟୀ କଳିଙ୍ଗ ରାଜେଶ୍ୱରୀ ଜାଣିବାକୁ ଚାହାନ୍ତି– ପ୍ରଜାଙ୍କର କିଛି କଷ୍ଟ ଅଛି କି ? ପ୍ରଜା କିଛି ପ୍ରାର୍ଥନା କରିବାକୁ ଚାହେଁ କି ?

ଗୃହସ୍ଥ ପୁନଶ୍ଚ ଭୂସ୍ପର୍ଶ ପ୍ରଣାମ କରି ଉତ୍ତର ଦେଲା– 'ଅନ୍ନଦାତାଙ୍କର କୃପାରୁ ସବୁ କୁଶଳ ।'

ଅମିତା କାନ୍ଦୁଥିବା ଶିଶୁକୁ କୋଳ କରିବାକୁ ଆତୁର ହୋଇ ପଡ଼ିଲେ । କାଳେ ଶିଶୁକୁ ପକେଇଦେବେ ବୋଲି ହିତାର ଭୟ ହେଉଥିଲା । ହିତା ଶିଶୁକୁ ନିଜେ ଟେକି ନେଇ ତାଙ୍କୁ ଛୁଇଁଇ ଦେଇ ବୁଝେଇ ଦେଲା– 'ଭଗବତୀ ମହାରାଣୀ, ପୁଅକୁ ଭୋକ ହେଉଛି । କ୍ଷୀର ଖାଇବ ବୋଲି କାନ୍ଦୁଛି । ସେ ତାର ମାତାଠାରୁ ଦୁଧ ଖାଇବ । ମହାରାଣୀ ଦେଖିବେ ।'

ହିତା ଶିଶୁକୁ ତାର ମାଆ କୋଳକୁ ବଢ଼େଇ ଦେଲା । ମାତାର ସ୍ତନ ମୁଖରେ ଧରି ଶିଶୁ ଦୁଗ୍ଧପାନ କରି ମୌନ ହୋଇଗଲା । ଅମିତା କୌତୂହଳ ଏବଂ ବିସ୍ମୟରେ ତାକୁ ଅନେଇ ରହିଥିଲେ ।

ଗୃହସ୍ଥଙ୍କର ଦ୍ୱିତୀୟ ସନ୍ତାନ ଅମିତାଙ୍କର ବୟସର ବାଳିକାଟିଏ । ସେ ବାଳିକା ଅଳିନ୍ଦର ଗୋଟାଏ କୋଣକୁ ବସି ଗୋଟାଏ ଗିନାରେ ମୁଢ଼ି ଖାଉଥିଲା । ସହସା ଆଗନ୍ତୁକଙ୍କର ଆସିବା ଏବଂ ଆପଣାର ମାତା-ପିତା ସଂଭ୍ରମ ସହିତ ବ୍ୟସ୍ତ ହୋଇ ପଡ଼ିବା ଦେଖି ସେ ଶଂକି ଯାଇଥିଲା । ମାତ୍ର ଅମିତାଙ୍କର ତା'ର ସାନଭାଇକୁ କୋଳ କରିନେବା ଦେଖି ତା'ର ଭୟ ଦୂର ହୋଇଗଲା ଏବଂ ସେ ଖଟ ପାଖକୁ ଆସି ଅମିତାଙ୍କର ସୁନ୍ଦର ସ୍ୱଚ୍ଛ ଚିକ୍କଣ କୁଞ୍ଚିତ କେଶ ଓ ଆଭାବନ୍ତ ମୁଖକୁ ଅନେଇ ରହିଲା ।

ଆପଣାର ସମବୟସୀ ଜଣେ ବାଳିକାକୁ ଆପଣା ପାଖରେ ଦେଖି ଅମିତା ତାକୁ ସମ୍ବୋଧନ କରି ପଚାରିଲେ– 'ତୋ' ନାଁ କ'ଣ ?'

ବାଳିକା ଉତ୍ତର ଦେଲା– 'ମାୟା'

ଅମିତା ପଚାରିଲେ– 'ତୋ ପାଖରେ କେମିତି କଣ୍ଢେଇ ଅଛି ଦେଖିବା !'

ମାୟା ତୁରନ୍ତ ଅଳିନ୍ଦ କୋଣକୁ ଯାଇ ମାଟିର ଦୁଇଟି କଣ୍ଢେଇ ନେଇ ଆସିଲା ଆଉ କହିଲା – 'ଗୋଟିଏ କଣ୍ଢେଇ, ଆରଟି ହାତୀ ।'

ଅମିତା ଖଟରୁ ଓହ୍ଲେଇ ଆସିଲେ । ଦୁଇଜଣ ଘଡ଼ିକେ ସଖୀ ପାଲଟିଗଲେ ଏବଂ କଣ୍ଢେଇକୁ ହାତୀ ଉପରେ ବସେଇ ଖେଳିବାକୁ ଲାଗିଲେ । ଗୃହସ୍ଥ ଏବଂ ତାର ପତ୍ନୀ ଆଦରରେ ମୌନ ରହି ବାଳିକା ମହାରାଣୀଙ୍କର କ୍ରୀଡ଼ା ବିନୋଦ ଉପଭୋଗ କରିବାକୁ ଲାଗିଲେ ।

× × × × ×

ହିତା ବାଳକମାନଙ୍କୁ ନେଇ ମୁଖ୍ୟ ଦରଜାର ଅଗଣାକୁ ଯିବା ପରେ ବାପୀ ଚଉତରାରୁ ଉଠି ଉଦ୍ଧାଳକୁ ସମ୍ବୋଧିତ କଲା – 'ମାମୁ, ପିଲାମାନେ ଗଲେଣି, ଚାଲ !'

ଗଣ୍ଠିବାତ ପାଇଁ ଉଦ୍ଧାଳର ଆଣ୍ଠୁ ଦରଜ ହେଉଥିଲା । ସେ ତା'ର ପୀଡ଼ାକୁ ଅଭିଶାପ ଦେଇ, ଆଣ୍ଠୁ ଜଂଘ ମାଲିସ କରି ଅଣ୍ଟାରେ ହାତ ଭରା ଦେଇ କଷ୍ଟରେ ଉଠିଲା ଏବଂ ମୁଖ୍ୟଦ୍ୱାର ପଟ ଅଗଣାକୁ ବାପୀକୁ ଯାଉଥିବା ଦେଖି କହିଲା – 'ସେପଟେ କୁଆଡ଼େ ଯାଉଛୁ ? ହିତା ମହାରାଣୀଙ୍କୁ ଅନ୍ତଃପୁରର ଅଗଣାକୁ ନେଇଯାଇଥିବ । ସିଧା ଚାଲ ।' ଆଉ ଦୁହେଁ ଭିତର ଦ୍ୱାର ଦେଇ ଅନ୍ତଃପୁରର ଅଗଣାକୁ ଚାଲିଗଲେ ।

ବାଳିକା ମହାରାଣୀଙ୍କର କକ୍ଷରେ ପ୍ରକାଶ ଜଳି ସାରିଥିଲା ମାତ୍ର ଭିତରେ କେହି ନ ଥିଲେ । ଉଦ୍ଧାଳ ଅଳିନ୍ଦରେ ଠିଆ ହୋଇଥିବା ଯବନୀକୁ ଦେଖି କହିଲା – 'ମହାରାଣୀ କ'ଣ ପ୍ରମୋଦ ଉଦ୍ୟାନକୁ ଯାଇଛନ୍ତି ? ଏବଂ ମନେ ମନେ ହିତା ମହାରାଣୀଙ୍କୁ ପ୍ରମୋଦ ଉଦ୍ୟାନର ବିଶାଳ ଜଳକୁଣ୍ଡ ଆଡ଼କୁ ନେଇଯାଇଛି ବୋଲି ଅନୁମାନ କଲା । ଅମିତାଙ୍କର ଜଳକୁଣ୍ଡର ଥମିଲା ପାଣିରେ ଖେଳିବାକୁ ଭାରି ମନ । ସନ୍ଧ୍ୟାବେଳେ ହିତା ପ୍ରାୟ ସେଠାରେ ମହାରାଣୀଙ୍କର ହାତମୁହଁ ଧୋଇଦିଏ ।

ବାପୀ ସ୍ନାନ କକ୍ଷକୁ ଯାଇ ଗାମୁଛା ଓ ଅମିତାଙ୍କର ଜୋତା ନେଇଆସି ଉଦ୍ଧାଳର ପଛେ ପଛେ ପ୍ରମୋଦ ଉଦ୍ୟାନକୁ ଗଲା ।

ସେଠାରେ କେହି ନ ଥିଲେ ।

ବାପୀ କହିଲା – ହୋଇପାରେ ମହାରାଣୀ ସଭାଭବନରେ କଣ୍ଢେଇମାନଙ୍କ ସାଙ୍ଗରେ ଖେଳିବାକୁ ଯାଇଥିବେ ।

ବାପୀ ଓ ଉଦ୍ଧାଳ ମନ୍ଥର ଗତିରେ ଅନ୍ତଃପୁର ଓ ବାହାର ଅଗଣା ମଝିରେ ରହିଥିବା ସଭାଭବନର ଅଳିନ୍ଦରେ ପହଞ୍ଚିଲେ । ଅଳିନ୍ଦ ଆଲୋକିତ ହୋଇ ରହିଥିଲା ମାତ୍ର ଭବନ ମଧ୍ୟରେ ଆଲୁଅ ନ ଥିଲା ।

ଉଦ୍ଧାଳ ଅଳିନ୍ଦରେ ଠିଆହୋଇଥିବା ଯବନୀଙ୍କୁ ବିସ୍ମିତ ହୋଇ ପଚାରିଲା – 'ମହାରାଣୀ ଆସି ନାହାନ୍ତି ? ସେ ପ୍ରମୋଦ ଉଦ୍ୟାନରେ ମଧ୍ୟ ନାହାନ୍ତି ।'

ଯବନୀ ବିଜ୍ଞ ଭଳି କହିଲା – 'ଏଇଠି ଖୋଜୁଛ ? ଜାଣିନ ସଞ୍ଜବେଳେ ଅନ୍ତଃପୁରର ପଛପଟେ ଯୂଇ ଫୁଲ ଫୁଟେ । ହିତା କଣ୍ଢେଇମାନଙ୍କ ପାଇଁ ମାଳା ଗୁନ୍ଥେଇବ ବୋଲି ମହାରାଣୀଙ୍କୁ ଆଉ କୁଆଡ଼କୁ ନେବ ?'

ଉଦ୍ଧାଳ ଓ ବାପୀ ତା'ପରେ ଅନ୍ତଃପୁରର ପଛପଟେ ବଗିଚାକୁ ଗଲେ । ଅନ୍ଧାରରେ ଯୂଇ ଗଛ ଆଚ୍ଛନ୍ନ ହୋଇ ରହିଥିଲା । ସେଥିରେ ଫୁଟିଥିବା ଫୁଲଗୁଡ଼ିକ ଆଭାହୀନ ମନେ ହେଉଥିଲେ । ଫୁଲର ସୁବାସରେ ଅନ୍ଧକାର ପରିପୂର୍ଣ୍ଣ ହୋଇ ରହିଥିଲା ମାତ୍ର ହିତା ଓ ଅମିତା କେହି ହେଲେ ସେଠାରେ ନ ଥିଲେ ।

ଉଦ୍ଧାଳ ରାଗିଯାଇ କହିଲା – 'ତୋ'ର ଡାହାଣୀ ଝିଅ ଆମ ବୁଢ଼ାଙ୍କ ସାଙ୍ଗରେ ବି ଲୁଚକାଳି ଖେଳିଲାଣି । ମହାରାଣୀଙ୍କୁ ନେଇ କେଜାଣି କୋଉଠି ଲୁଚିଗଲା । ଏ ଗୋଡ଼ ଦରଜ ଲାଗି ମୁଁ କୁଆଡ଼େ କୁଆଡ଼େ ଯାଇ ପାରିବି ? ତୁ ଇ ତାକୁ ଖୋଜ । ଭଣ୍ଡାର ଘର ପଟକୁ ଚାଲି ଯାଇଥିବ । ଆଉ କୁଆଡ଼େ ଯିବ ?

ଉଦ୍ଧାଳ ଓ ବାପୀ ବଗିଚାରୁ ଅନ୍ତଃପୁର ଅଗଣାକୁ ଫେରିଆସିଲେ । ଏଠି ସେଠି ଠିଆ ହୋଇ ରହିଥିବା ଯବନୀମାନଙ୍କୁ ପଚାରି ପଚାରି ଭଣ୍ଡାର ଘର ପର୍ଯ୍ୟନ୍ତ ଆସିଲେ । କେହିହେଲେ ମହାରାଣୀ ଓ ହିତାକୁ ସେ ପଟକୁ ଆସିଥିବା କଥା କହିଲେ ନାହିଁ । ଉଦ୍ଧାଳକୁ ହିତାର ସେଇ ବାଲ୍ୟ କୌତୁକ ଲାଗି ପ୍ରଚଣ୍ଡ କ୍ରୋଧ ହେଉଥିଲା । ଏହା ବି କିଭଳି ଚପଳତା ?

ବାପୀ କହିଲା – 'ହୁଏତ ନଗର ପ୍ରକାଶ ଦେଖେଇବାକୁ ଛାତ ଉପରକୁ ନେଇ ଯାଇଥିବ ।

ଅଳିନ୍ଦର ଶିଳା ଉପରେ ବସିପଡ଼ି ଉଦ୍ଧାଳ କହିଲା – 'ମୁଁ ଅଛି ଏଠି, ତୁ ଯାଇ ଦେଖି ଆ ।'

ବାପୀ ହିତା ଓ ମହାରାଣୀଙ୍କୁ ଛାତ ଉପରେ ବି ପାଇଲା ନାହିଁ । ତାର ଛାତି ଥରିବାକୁ ଲାଗିଲା । ଭୀଷଣ କ୍ରୋଧ ହେଲା... ଏ କିଭଳି ଚପଳତା ? ମନେ ମନେ ଚିନ୍ତା କଲା ଝିଅର ଚଞ୍ଚଳତା ତ କିଛି ଦିନ ହେଲା ଶାନ୍ତ ଥିଲା । ବାପୀର ହୃଦୟ ଥରିଯାଉଥାଏ ଭୟରେ, ଚିନ୍ତାରେ – କେଜାଣି କୁଆଡ଼େ ଗଲା... କୋଉଠି ଥିବ ?

ଉଦ୍ଧାଳ ବାପୀଠାରୁ ମହାରାଣୀ ଛାତ ଉପରେ ନ ଥିବା କଥା ମଧ୍ୟ ଶୁଣିଲା ଏବଂ ଭୟରେ ଅଧୀର ହୋଇ ପଡ଼ିଲା । ବାପୀ ତା'ଠାରୁ ମଧ୍ୟ ଅଧିକ ବ୍ୟାକୁଳ ହେଉଥିଲା । ଉଦ୍ଧାଳ ଓ ବାପୀର ଆଦେଶ ଅନୁରୋଧରେ ଅନେକ ଯବନୀ ଓ କଞ୍ଚୁକୀ, ସେବକ, ପ୍ରହରୀ ମଶାଲ ନେଇ ହିତା ଓ କଞ୍ଚୁକୀକୁ ଖୋଜିବାକୁ ଗଲେ । କେତୋଟି ମୁହୂର୍ତ୍ତ ଭିତରେ ହିଁ ସେମାନେ ପ୍ରତ୍ୟେକ ଉଦ୍ୟାନ ଓ ପ୍ରାସାଦର କକ୍ଷ ସମୂହ ଖୋଜିନେଲେ । ସମସ୍ତଙ୍କୁ ମହାରାଣୀଙ୍କୁ ଦେଖିଥିବାର ଅନ୍ତିମ ସମୟ ପଚରାଗଲା ଏବଂ ସମସ୍ତେ ଏଭଳି ଆତଙ୍କିତ ହୋଇଯାଇଥିଲେ ଯେ ଭାବି ଭାବି ଉତ୍ତର ଦେବାକୁ ଲାଗିଲେ । ନିଶ୍ଚିନ୍ତ ହୋଇ ରହିଯିବା ମଧ୍ୟ ଏକପ୍ରକାର ଅପରାଧ ଭଳି ମନେହେଲା ।

ଯବନୀ, କଞ୍ଚୁକୀ ଓ ଦାସୀମାନେ ମହାରାଣୀଙ୍କୁ କିଛି ସମୟ ପୂର୍ବେ ଏଣେତେଣେ ଯିବା ଦେଖିଥିଲେ ବୋଲି ସ୍ୱୀକାର କରୁଥିଲେ । ଅନ୍ତଃପୁର ପ୍ରାଙ୍ଗଣର ପ୍ରହରୀ କହିଲା – ବାଳକମାନଙ୍କର ଖେଳ ପରେ ମହାରାଣୀ ଓ ଦାସୀ ହିତା ଅନ୍ତଃପୁରକୁ ଯାଇଛନ୍ତି ମାତ୍ର ପରେ ଆଉ ବାହାରି ନାହାନ୍ତି ।

ଯବନୀ କଞ୍ଚୁକୀ ଓ ପ୍ରହରୀମାନଙ୍କର ମୁହଁ ଝାଉଁଳିଗଲା । ଛାତିର ଗତି ବଢ଼ିଗଲା । ସମସ୍ତେ ଆଶଙ୍କା କଲେ ସବୁରି ଅଲକ୍ଷ୍ୟରେ ସେଭଳି କିଛି ଦୁର୍ଘଟଣା ହୋଇ ନାହିଁ ତ ? ପ୍ରାସାଦ ମଧ୍ୟସ୍ଥ ସମସ୍ତ କୂପ, ବାମ୍ଫିରେ ଦଉଡ଼ିରେ ମଶାଲ ବାନ୍ଧି, ଦାସଦାସୀଙ୍କୁ ଉତାରି ଦେଖାଗଲା ମାତ୍ର କିଛି ବୋଲି କିଛି ଜଣାପଡ଼ିଲା ନାହିଁ ।

ବାପୀର ଆଖିରୁ ନିରନ୍ତର ଅଶ୍ରୁଧାରା ବହି ଚାଲିଥିଲା । ସମସ୍ତ ଯବନୀ, କଞ୍ଚୁକୀ, ସେବକ ଓ ପ୍ରହରୀମାନେ ପୁଣିଥରେ ପ୍ରାସାଦ ଓ ଉଦ୍ୟାନର ପ୍ରତ୍ୟେକ ସ୍ଥାନ ଖୋଜି ନେଲେ । ବୃକ୍ଷ ଓ କୂପ ଆଦି ବି ଛାଡ଼ିଲେ ନାହିଁ । ସିଂହତ୍ରସ୍ତ ମେଣ୍ଢାଭଳି ବାପୀ ଓ ଉଦ୍ଧାଳକୁ ସମସ୍ତେ ଘେରି ରହିଥିଲେ । କାହାକୁ ହେଲେ କୌଣସି ପ୍ରକାର ଉପାୟ ଦିଶୁ ନ ଥିଲା । କ'ଣ କରାଯାଇପାରିବ ?

ଏହି ବିକଟ ପରିସ୍ଥିତିର ସୂଚନା ପ୍ରାସାଦର କର୍ମାନ୍ତାଧିଷ୍ଠାୟକ ସାମନ୍ତ ପ୍ରତାପଙ୍କୁ ଦେବା ଅତ୍ୟନ୍ତ ଆବଶ୍ୟକ । ମାତ୍ର ଉଦ୍ଧାଳ ଏଭଳି ଏକ ସମାଚାର୍ ନେଇ ସାମନ୍ତଙ୍କ ଆଗକୁ ଯିବା ଅପେକ୍ଷା ଆପଣା ଛାତିରେ କଟାରି ମାରି ପ୍ରାଣତ୍ୟାଗ କରିବା ଶ୍ରେୟସ୍କର ମନେ କରୁଥିଲା ।

ଉଦ୍ଧାଳର ପାଟିରୁ କଥା ବାହାରୁ ନ ଥାଏ । ପୁଣି ଖୋଜାହେଲା, ମାତ୍ର ସବୁ ବୃଥା । ପ୍ରାୟ ଦୁଇ ପ୍ରହର ବିତିଗଲା, କିଛି ହେଲେ ଜଣା ପଡ଼ିଲା ନାହିଁ । ମନେହେଲା ଯେଭଳି ମହାରାଣୀଙ୍କୁ ଖୋଜିବାରେ ଗୋଟାଏ ଯୁଗରୁ ଅଧିକ ହୋଇଗଲାଣି ।

ବାପୀ ମୂର୍ଚ୍ଛିତ ହୋଇ ପଡ଼ିଗଲା ।

ଉଦ୍ଦାଳ ଦୁଇ ଆଣ୍ଠୁ ଉପରେ କହୁଣି ରଖି ମଥା ନୁଆଁଇ ଅନେକବେଳ ବସିରହିଲା । ଆଖିରେ ଲୁହ ଭରି ଯାଉଥିବା ହେତୁ କିଛି ଦେଖିପାରିବା ମଧ୍ୟ ସମ୍ଭବ ହେଉ ନ ଥାଏ । ହୃଦୟ ଓ ମନରେ ଭୟଙ୍କର ଆଘାତ ହେତୁ ଚାଲିଯିବାକୁ ଅସମର୍ଥ ଉଦ୍ଦାଳ ଗୋଟାଏ ଦାସର କାନ୍ଧ ଉପରେ ହାତ ରଖି ମୃତ୍ୟୁର ସମ୍ମୁଖୀନ ହେବାକୁ ସାହସ ସଞ୍ଚୟ କରି ସାମନ୍ତ ପ୍ରତାପଙ୍କର କକ୍ଷ ଆଡ଼କୁ ବଢ଼ିବାକୁ ଲାଗିଲା ।

ଯୁଦ୍ଧକାଳରେ ସାମନ୍ତ ପ୍ରତାପ କେବଳମାତ୍ର ପ୍ରାସାଦର ବ୍ୟବସ୍ଥାରେ ରହୁ ନ ଥିଲେ, ଦିନର ଅଧିକାଂଶ ସମୟରେ ସେ ପ୍ରାସାଦ ବାହାରେ ରହି ଆସୁଥିବା ସୈନିକମାନଙ୍କର ପଞ୍ଜିକରଣ ଏବଂ ସେମାନଙ୍କୁ ରଣକ୍ଷେତ୍ରକୁ ପ୍ରେରଣର ବ୍ୟବସ୍ଥାରେ ବି ସାହାଯ୍ୟ କରୁଥିଲେ । ବୃଦ୍ଧାବସ୍ଥା ହେତୁ ବେଶୀ ସମୟ ଅଶ୍ୱପୃଷ୍ଠରେ ରହିବା ମଧ୍ୟ ତାଙ୍କ ପକ୍ଷରେ କ୍ଳାନ୍ତିକର ଥିଲା । ତେଣୁ ଆପଣା ଭବନକୁ ଫେରିଆସିବା ପରେ ଅନେକ ସମୟ ପାଇଁ ଦାସୀ ପଦ ମଞ୍ଜାଳନ କରୁଥିଲା, ତା'ପରେ ପୁଣି କିଛି ବିଶ୍ରାମ କରି ସେ କାର୍ଯ୍ୟପାଇଁ ମାନସିକ ସ୍ତରରେ ପ୍ରସ୍ତୁତ ହୋଇପାରୁଥିଲେ ।

ସାମନ୍ତଙ୍କର ବୃଦ୍ଧାପତ୍ନୀ ପୃଥା, କଞ୍ଚୁକୀ, ଉଦ୍ଦାଳ ସାମନ୍ତଙ୍କର ଦର୍ଶନ ପାଇଁ ଆସିଛି ବୋଲି ଶୁଣିଲେ । ସେତେବେଳେ ସାମନ୍ତଙ୍କର ନଗର ପରିକ୍ରମା କରି ଫେରିବାର ଅଧ ଘଡ଼ି ବି ହୋଇ ନ ଥିଲା । ଦାସୀ ତାଙ୍କର ପାଦ ମଞ୍ଜାଳନ କରୁଥିଲା । ସାମନ୍ତ କ୍ଳାନ୍ତିରେ ଅର୍ଦ୍ଧଚେତନ ପ୍ରାୟ ରହିଥିଲେ । ଆର୍ଯ୍ୟେ ପୃଥା ଉଦ୍‌ବିଗ୍ନ ହୋଇ କହିଦେଲେ – 'କଞ୍ଚୁକୀକୁ ବାହାରେ ଅପେକ୍ଷା କରିବାକୁ କହ । ଆର୍ଯ୍ୟପୁତ୍ରଙ୍କର ମଧ୍ୟ କେତେ କେତେବେଳେ ବିଶ୍ରାମ ଆବଶ୍ୟକ ।

ସାମନ୍ତଙ୍କର ଦର୍ଶନ ଲାଭ କରିବାର ଅବସର ନ ପାଇ ଏବଂ ନାସ୍ତିବାଣୀ ଶୁଣି ଉଦ୍ଦାଳ ଠିଆ ହୋଇ ରହିପାରିଲା ନାହିଁ । ଅଗଣାର ଭୂମିରେ ଗଡ଼ି ଉଚ୍ଚୈସ୍ୱରରେ କାନ୍ଦିବାକୁ ଲାଗିଲା – 'ହାୟ ଭଗବତୀ ମହାରାଣୀ'

କଞ୍ଚୁକୀର ବିଳାପ ଶୁଣି ଆର୍ଯ୍ୟେ ପୃଥାଙ୍କର ହୃଦୟ ଆଶଙ୍କିତ ହୋଇଉଠିଲା । ସେ ପତିଙ୍କ ବିଶ୍ରାମରେ ବାଧା ଦେବାକୁ ବାଧ୍ୟ ହେଲେ ।

କାନ୍ଦି କାନ୍ଦି ଉଦ୍ଦାଳ ବାଳକମାନଙ୍କର କ୍ରୀଡ଼ା ପରେ ମହାରାଣୀ ପ୍ରାସାଦରୁ ଅଦୃଶ୍ୟ ହୋଇ ଯାଇଥିବା ସମ୍ବାଦ ସାମନ୍ତଙ୍କୁ ଶୁଣେଇଲା ।

ସାମନ୍ତ ବିଶ୍ରାମ ଲାଗି ପର୍ଯ୍ୟାପ୍ତ ବସ୍ତ୍ର ପିନ୍ଧି ନ ଥିଲେ । ସେ ସେହି ଅବସ୍ଥାରେ ପ୍ରାଙ୍ଗଣକୁ ଚାଲିଆସିଲେ । ସାମନ୍ତ ସର୍ବପ୍ରଥମେ ଦଣ୍ଡକକୁ ହିତାର ମାତା ଦାସୀ

ବାପୀଠାରୁ ବିଷୟ ଅବଗତ ହେବାର ଆଦେଶ ଦେଲେ । ସେ ସାଙ୍ଗେ ସାଙ୍ଗେ ଚାରିଜଣ ପ୍ରସିଦ୍ଧ ଜ୍ୟୋତିଷ ଏବଂ ତାନ୍ତ୍ରିକଙ୍କୁ ଡକେଇ ଆଣିବାକୁ ଅଶ୍ୱାରୋହୀ ପଠେଇବାର ଆଦେଶ ଦେଲେ ।

ବାପୀ ମୂର୍ଚ୍ଛାଯାଇ ଅଚେତ ହୋଇ ପଡ଼ିରହିଥିଲା । ଦଣ୍ଡକର ନିର୍ଦ୍ଦେଶରେ ଦୁଇଜଣ ଦାସ ତାକୁ ଅନୁଶାସନ ପ୍ରାଙ୍ଗଣକୁ ନେଇଗଲେ । ତାକୁ ଔଷଧ ଶୁଙ୍ଘେଇ ସଚେତ କରାହେଲା ଏବଂ ଯାତନାର ଭୟ ଦେଖାଇ ପଚରାଗଲା । ଯାତନା ଦିଆଗଲା ମଧ୍ୟ, ମାତ୍ର କୌଣସି ରହସ୍ୟ ଉଦ୍‌ଘାଟିତ ହେଲା ନାହିଁ ।

ବାପୀ ପୁଣି ଅଚେତ ହୋଇପଡ଼ିଲା । ତାକୁ ପୁଣି ସଚେତ କରାହେଲା । ଚେତା ଆସିଲା ପରେ ସେ କାନ୍ଦି କାନ୍ଦି ରାଣ ପକେଇ ମୁଁ କିଛି ଜାଣି ନାହିଁ କହିବା ଛଡ଼ା ଆଉ କିଛି କହୁ ନ ଥାଏ । ତାକୁ ନିର୍ଯ୍ୟାତିତ କରିବା ଫଳରେ ସେ ପୁଣି ଅଚେତ ହୋଇ ପଡ଼ିଗଲା ।

ସାମନ୍ତଙ୍କର ଆଜ୍ଞାରେ ଅନେକ ଯବନୀ, କଞ୍ଚୁକୀ, ସେବକ ସୈନିକମାନେ ମଶାଲ ନେଇ ପ୍ରାସାଦର ପ୍ରତ୍ୟେକ ଅଂଶ ଦେଖିଲେ । ଉଦ୍ୟାନ ତନ୍ନତନ୍ନ କରି ଖୋଜାହେଲା । କୂପ ତଡ଼ାଗରେ ବୁଡ଼ି ଖୋଜା ହେଲା, ମାତ୍ର ସମସ୍ତ ପ୍ରଚେଷ୍ଟା ନିରର୍ଥକ ହେଲା, ବୃଥା ହେଲା ।

ସାମନ୍ତ ସଶସ୍ତ୍ର ସୈନିକ ଏବଂ ମଶାଲଧାରୀମାନଙ୍କୁ ନେଇ ପ୍ରାସାଦ ଅନ୍ତଃପୁରର ଗୁପ୍ତ ଗୁହାମାର୍ଗର ଦ୍ୱାରକୁ ଗଲେ । ଗୁପ୍ତ ମାର୍ଗର କକ୍ଷଦ୍ୱାରକୁ ମଶାଲ ଆଲୋକରେ ସାବଧାନତା ସହକାରେ ନିରୀକ୍ଷଣ କଲେ । କୌଣସି ଚିହ୍ନବର୍ଣ୍ଣ ମିଳିଲା ନାହିଁ । ସେଠାରେ ଅଙ୍କିତ ଗୁପ୍ତ ଚିହ୍ନ ଯଥାବତ୍ ରହିଥିଲା । ଦ୍ୱାରଦେଶରେ ବୁଢ଼ିଆଣୀ ଜାଲ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ଅବସ୍ଥାରେ ଥିଲା ।

ରାଜପ୍ରାସାଦର ସବୁ ଯବନୀ, ଦାସଦାସୀ, ସେବକ ଏବଂ ପ୍ରହରୀମାନଙ୍କୁ ଅନ୍ତଃପୁର ପ୍ରାଙ୍ଗଣରେ ବସେଇ ଦିଆହେଲା, ଧାଡ଼ି କରି । ଦଣ୍ଡକ ସହିତ ଆହୁରି କେତେକ ଦାସ ହାତରେ ବେତ, ଚାବୁକ, ଶାଙ୍କୁଳି, ଲାଠି, କେତେକ ବର୍ଚ୍ଛା ଖଡ଼୍‌ଗ ପର୍ଯ୍ୟନ୍ତ ଧାରଣ କରି ଠିଆ ହୋଇଥିଲେ । ଯବନୀ ଓ ଦାସଦାସୀଙ୍କ ଉପରେ କୋରଡା ମାଡ଼ ଆରମ୍ଭ ହୋଇଗଲା । ସେମାନଙ୍କୁ ରହସ୍ୟୋଦ୍‌ଘାଟନର ପୁରସ୍କାର ସ୍ୱରୂପ ମୁକ୍ତି ଓ ଧନଲୋଭ ଦିଆଗଲା । ଆତଙ୍କ ଓ ପୀଡ଼ା ହେତୁ ସେମାନେ ଏତେ ମୂଢ଼ ପାଲଟିଗଲେ ଯେ ପ୍ରତ୍ୟେକ ଉତ୍ତରରେ 'ହଁ' ଛଡ଼ା ଆଉ କିଛି ବି କହିପାରିଲେ ନାହିଁ ।

ସାମନ୍ତ ଗୁପ୍ତ ମାର୍ଗଦ୍ୱାର ନିରୀକ୍ଷଣ କରି ଫେରିବା ବେଳକୁ ତାନ୍ତ୍ରିକ ଏବଂ ଜ୍ୟୋତିଷ ଆସି ସାରିଥିଲେ । ସାମନ୍ତ ସେମାନଙ୍କୁ ବାଳିକା ମହାରାଣୀଙ୍କର କୁଶଳ ତଥା ଉପସ୍ଥିତି ସମ୍ବନ୍ଧରେ ଗଣନା କରି କହିବାକୁ ଅନୁରୋଧ କଲେ । ଜଣେ ତାନ୍ତ୍ରିକ ସମାଧିସ୍ଥ ହୋଇ ଦିବ୍ୟଦୃଷ୍ଟିରେ ମହାରାଣୀଙ୍କୁ ଦେଖିବାର ପ୍ରୟାସ କଲା ।

ଜଣେ ଜ୍ୟୋତିଷ ଗଣନା କରି କହିଲେ– 'ମହାରାଣୀ ମିତ୍ରର ରୂପ ଧାରଣ କରିଥିବା ଜଣେ ଶତ୍ରୁର କବଳରେ ଅଛନ୍ତି । ମହାରାଣୀ କୌଣସି ଚତୁଷ୍ପଦୀ ସବାରିରେ ଯାଇ ନାହାନ୍ତି । କୌଣସି ମନୁଷ୍ୟ କାନ୍ଧେଇ କିମ୍ବା କାଖ କରି ନେଇଛି । ସେ ଭିତ୍ତିରେ ଛିଦ୍ର ମାର୍ଗରେ ଯାଇଛନ୍ତି । ଯେ ଯେଉଁ ମାର୍ଗରେ ଯାଇଛନ୍ତି ସେଇ ମାର୍ଗରେ ସମ୍ଭବତଃ ଫେରିଆସିବେ । ସେ ଦକ୍ଷିଣ-ପୂର୍ବ ଦିଗରେ ଯାଉଛନ୍ତି । ପୂର୍ବରେ ସାଗର, ତେଣୁ ଜଳ-ଯାତ୍ରା ମଧ୍ୟ ସମ୍ଭବ । ସେ ପରଇଛାର ପ୍ରଭାବରେ ରହିଛନ୍ତି । ସେ ପ୍ରାସାଦ ପରିଧିର ବାହାରେ କିନ୍ତୁ ଆପଣା ରାଜ୍ୟର ସୀମା ମଧ୍ୟରେ ଅଛନ୍ତି । ଶତ୍ରୁ, ମହାରାଣୀଙ୍କ ଦ୍ୱାରା ଆପଣାର ଇଚ୍ଛା ପୂରଣ କରେଇବା ଉଦ୍ଦେଶ୍ୟରେ ନେଇଯାଇଛି । ମାତ୍ର ମହାରାଣୀଙ୍କ ଗ୍ରହାବସ୍ଥିତି ବିଜୟର ସୂଚନା ଦେଉଛି । ସେ ପ୍ରସନ୍ନ ଏବଂ ସକୁଶଳ ଫେରିଆସିବେ ।

ସାମନ୍ତ ତୁରନ୍ତ ଦଶଜଣ ସଶସ୍ତ୍ର ସୈନିକଙ୍କୁ ମଶାଲ ନେଇ ରାଜପ୍ରାସାଦ ପ୍ରାଚୀରର ଛିଦ୍ର ଖୋଜିବାକୁ ପଠେଇଲେ ।

ତାନ୍ତ୍ରିକ ବିଚାର କରି କହିଲେ– ମହାରାଣୀଙ୍କୁ ପ୍ରାସାଦରୁ ଶତ୍ରୁପକ୍ଷର ମନ୍ତ୍ର ବଳ ପ୍ରସ୍ଥାପନ ପ୍ରକ୍ରିୟା ଦ୍ୱାରା ସଶରୀର ସ୍ଥାନାନ୍ତରଣ କରାଯାଇଛି । ମନ୍ତ୍ର ପ୍ରୟୋଗୀ ମନ୍ତ୍ରର ପ୍ରଭାବ ଶିଥିଳ କରିବ ଅଥବା ମନ୍ତ୍ର ଦ୍ୱାରା କ୍ରିୟାର ଶାନ୍ତି ବିଧାନ ହେବା ପରେ ସେ ରାଜପ୍ରାସାଦକୁ ଫେରିଆସିବେ ।

ସାମନ୍ତ ଅଧୀର ହୋଇ ପ୍ରଶ୍ନ କଲେ– 'ଗୁରୁବର, ଆକାଶ ମାର୍ଗରେ ଶରୀର ସ୍ଥାନାନ୍ତରିତ କରିଦେବାର ପ୍ରବଳ ସିଦ୍ଧ ଶକ୍ତି କେଉଁ ସିଦ୍ଧ ପୁରୁଷ ପାଖରେ ଅଛି !'

ତାନ୍ତ୍ରିକ ରହସ୍ୟପୂର୍ଣ୍ଣ ସ୍ୱରରେ ଉତ୍ତର ଦେଲା– ମଗଧରେ ମହାନ ତାନ୍ତ୍ରିକ ସିଦ୍ଧ ଅଛନ୍ତି । କ'ଣ ସ୍ୱୟଂ କଳିଙ୍ଗର ମହାସ୍ଥବିର ଜୀବକଙ୍କର ଆକାଶ ମାର୍ଗରେ ବିଚରଣର ସିଦ୍ଧି ନାହିଁ ?

ସାମନ୍ତ କାତର ହୋଇ ପ୍ରଶ୍ନ କଲେ– 'ଗୁରୁବର, ଆପଣ କ'ଣ ସେଇ ମନ୍ତ୍ର ଯୋଗକୁ ଶିଥିଳ କରିପାରିବେ ନାହିଁ ?

ତାନ୍ତ୍ରିକ ଉତ୍ତର ଦେଲେ– 'ମୁଁ ନବମ ସ୍ଥାନ ପର୍ଯ୍ୟନ୍ତ ସଞ୍ଚରଣ କରିପାରିବି ମାତ୍ର ଆକାଶ ବିଚରଣ ଓ ସ୍ଥାନାନ୍ତରଣ ପ୍ରସ୍ଥାପନ ଦଶମ ଦ୍ୱାରର କ୍ରିୟା ସିଦ୍ଧି । ସେହି ଯୋଗସାଧନା ଲାଗି ଆଉ ଗୋଟାଏ ବର୍ଷ ଲାଗିବ ।'

ସାମନ୍ତ ପଚାରିଲେ– କ'ଣ ମହାସ୍ଥବିର ଜୀବକ ଏହି ମନ୍ତ୍ର ଯୋଗକୁ ଶାନ୍ତ କରିବାକୁ ସମର୍ଥ ?

ତାନ୍ତ୍ରିକ ସ୍ୱୀକାର କଲା– 'ହଁ ମହାସ୍ଥବିରଙ୍କର ସେ ଶକ୍ତି ରହିଛି ।'

ସାମନ୍ତ ପୁଣି ବିଚାର କରି ପ୍ରଶ୍ନ କଲେ– 'ମନ୍ତ୍ରଯୋଗକାରୀର ନିଜର ଅନ୍ତ ହେବାପରେ ତା'ର ମନ୍ତ୍ରର ପ୍ରଭାବର ମଧ୍ୟ ଅନ୍ତ ହୋଇଯିବ ନାହିଁ ।'

ତାନ୍ତ୍ରିକ ନିଷେଧର ସଂକେତରେ ଚେତାବନୀ ଦେଲା– କଦାପି ନୁହେଁ, ଯଦି ମନ୍ତ୍ର ଯୋଗୀ ମହାରାଣୀଙ୍କୁ ପଶୁ ଯୋନିର ରୂପ ଦେଇଛନ୍ତି; ତାହେଲେ ସେହି ଯୋଗରେ ମହାରାଣୀଙ୍କୁ ସେ ସ୍ୱୟଂ ହିଁ ମୁକ୍ତ କରିପାରିବ ।

ରାତିର ଦ୍ୱିତୀୟ ପ୍ରହର ଅଧା ବିତି ସାରିଥିଲା । ସାମନ୍ତ ଆପଣାକୁ ଜଳହୀନ ମୀନ ସଦୃଶ ଅସମର୍ଥ ଓ ବ୍ୟାକୁଳ ମନେ କରୁଥିଲେ । ମହାମାତ୍ୟଙ୍କୁ ତୁରନ୍ତ ସମ୍ବାଦ ଦେବା ଉଚିତ ଥିଲା, କିନ୍ତୁ ଏଭଳି ସମ୍ବାଦ ଆଚାର୍ଯ୍ୟଙ୍କୁ ଦେବା ଅପେକ୍ଷା ସେ ସ୍ୱୟଂ ଶୂଳିରେ ଚଢ଼ିବା ଶ୍ରେୟସ୍କର ମନେ କରୁଥିଲେ । ସମ୍ବାଦ ପାଇ ମହାମାତ୍ୟ କ'ଣ କରିବେ ? ମାତ୍ର ତାହା ତାଙ୍କର କର୍ତ୍ତବ୍ୟ ଥିଲା !

ସାମନ୍ତ ତୁରନ୍ତ ଦୁଇଜଣ ଅଶ୍ୱାରୋହୀଙ୍କ ସହିତ ଅତିବେଗରେ ମହାବିହାର ଅଭିମୁଖରେ ପ୍ରସ୍ଥାନ କଲେ । ରାତ୍ରି କାଳରେ ମହାବିହାରର ମୁଖ୍ୟ ଦ୍ୱାର ଅବରୁଦ୍ଧ ହୋଇ ରହିଥିଲା । ଅର୍ଗଳ ଖୋଲେଇବାକୁ ଅନେକ ବେଳ ଲାଗିଲା ।

ସାମନ୍ତ ମହାସ୍ଥବିରଙ୍କର ଦର୍ଶନ ନିମନ୍ତେ ପ୍ରାର୍ଥନା କଲେ । ଜଣେ ଭିକ୍ଷୁ ତାଙ୍କୁ ମାର୍ଗ ଦେଖେଇ ଜଣେ ସ୍ଥବିରଙ୍କ ସହିତ ଭେଟ କରାଇଲେ । ସାମନ୍ତଙ୍କ ସମ୍ମୁଖରେ ଉପସ୍ଥବିର ଆଖି ମଳିମଳି ଆସି ଉପସ୍ଥିତ ହେଲେ । ସାମନ୍ତ ପ୍ରାର୍ଥନା କଲେ, ମହାରାଣୀଙ୍କ ସଂକଟରେ ମହାସ୍ଥବିରଙ୍କ ଆଶୀର୍ବାଦର ଆବଶ୍ୟକତା ହେତୁ ଆସିଛି ।

ନିଦ୍ରାଆରକ୍ତ ଆଖି ମଳି ମଳି ସ୍ଥବିର ଅସଙ୍ଗ ପ୍ରଶ୍ନ କଲେ– 'ସାମନ୍ତ, ମହାରାଣୀଙ୍କର କଷ୍ଟ କ'ଣ କହନ୍ତୁ ।'

ସାମନ୍ତ କହିଲେ– 'ଭନ୍ତେ, ତାହା ଏକ ରହସ୍ୟ'

ସ୍ଥବିର ଅସଙ୍ଗ ଭାବି ଉତ୍ତର ଦେଲେ– 'ସିଦ୍ଧ ମହାସ୍ଥବିର ସଂପ୍ରତି ସମାଧିସ୍ଥ ଅବସ୍ଥାରେ ଆକାଶମାର୍ଗରେ ନିଶାଚରଣ ହେତୁ ସ୍ଥାନାନ୍ତରିତ ହୋଇ ରହିଛନ୍ତି । ବିହାରରେ ତାଙ୍କର ସ୍ଥୂଳ ଶରୀର ନାହିଁ ।'

ସାମନ୍ତ ମୌନ ହେଲେ । ତାଙ୍କର ସନ୍ଦେହ ହେଲା– 'ମହାସ୍ଥବିର ଜୀବକ ହିଁ ମନ୍ତ୍ରବଳରେ ସବୁ ଉତ୍ପାତ କରୁଛନ୍ତି । କିନ୍ତୁ ସାମନ୍ତ ଅସହାୟ । ତାଙ୍କ ଲାଗି ମହାମାତ୍ୟଙ୍କ ନିକଟକୁ ସମାଚାର ପ୍ରେରଣ ବ୍ୟତୀତ ଅନ୍ୟ କୌଣସି ମାର୍ଗ ନ ଥିଲା ।'

× × × × ×

ଯୁଦ୍ଧକାଳରେ ନିୟମ ଅନୁସାରେ ରାତ୍ରିର ପ୍ରଥମ ପ୍ରହର ପରେ ଭେରୀ ଏବଂ ନରସିଂହା ନାଦୋପରାନ୍ତ ଘୋଷଣା ହେଲା–

'ମହାମହିମାମୟୀ କଳିଙ୍ଗ ରାଜେଶ୍ୱରୀଙ୍କର ଜୟ ହେଉ । ପ୍ରଜା ଓ ପୌରଜନ ଶୁଣନ୍ତୁ । ରାଜ୍ୟ ଓ ନଗରର ସୁରକ୍ଷା ନିମନ୍ତେ ମହାରାଣୀଙ୍କର ଆଦେଶ– 'ଏକ ଘଡ଼ି ରାତ୍ରିଠାରୁ ସୂର୍ଯ୍ୟୋଦୟ ପୂର୍ବ ପର୍ଯ୍ୟନ୍ତ ପ୍ରଜା ଏବଂ ପୌରଜନ ସେମାନଙ୍କର ଗୃହଦ୍ୱାରର ବାହାରକୁ ବାହାରିବେ ନାହିଁ । ନଗର ରକ୍ଷକ ଏବଂ ରାଜପୁରୁଷ ସନ୍ଦିଗ୍ଧ ଅବସ୍ଥାରେ ଦେଖାଯାଉଥିବା ବ୍ୟକ୍ତି ଉପରେ ପ୍ରହାର କରିବେ । ପ୍ରଜାଜନ ସନ୍ଦେହ-ଆଶଂକାର କାରଣ ଦେଖିଲେ କଂସା ବଜେଇ ରାଜପୁରୁଷଙ୍କୁ ସଂକେତ ଦେବେ ।'

ହିତା ମହାରାଣୀଙ୍କ ପକ୍ଷରୁ ଗୃହସ୍ଥକୁ ସମ୍ବୋଧିତ କରି କହିଲା– 'ପରମଭଗବତୀ ରାଜେଶ୍ୱରୀ ପ୍ରଜାଙ୍କର ଅବସ୍ଥା ଦେଖିବାକୁ ଅନ୍ୟତ୍ର ଯିବେ ।'

ହିତା ଅମିତାଙ୍କୁ ଗୃହସ୍ଥର ଗୃହରୁ ଗଳିକୁ ନେଇଆସିଲା । ତାଙ୍କର ହାତ ମୁଠେଇ ଧରି ବଜାର ଅଭିମୁଖରେ ଆଗେଇଗଲା । ସଂକୀର୍ଣ୍ଣ ବୀଥୀ ନିର୍ଜନ ଓ ଅନ୍ଧକାରାଚ୍ଛନ୍ନ ଥିଲା । ହିତାର ଛାତି ଥରି ଉଠୁଥିଲା ଏବଂ ପାଦ ଏଣେତେଣେ ପଡୁଥିଲା– ଟଳମଳ ହେଉଥିଲା । ସାହସ ପାଇବା ପାଇଁ ସେ ଅମିତାଙ୍କୁ ବୁଝେଇ ବସିଲା– ଭଗବତୀ ମହାରାଣୀ, ଧୈର୍ଯ୍ୟ ଧରନ୍ତୁ, ଆପଣ ମାତାଙ୍କ ସହିତ ସାକ୍ଷାତ କରିବାକୁ ଯାଉଛନ୍ତି । କେହି, ଅଥବା କୌଣସି ରାଜପୁରୁଷ ପ୍ରଶ୍ନକଲେ କହିବେ– ମହାରାଣୀ ରାଜପ୍ରାସାଦରୁ ପ୍ରଜାଙ୍କର ସ୍ଥିତି ନିରୀକ୍ଷଣ କରିବାକୁ ବାହାରିଛନ୍ତି ।

ସଂକୀର୍ଣ୍ଣ ବୀଥୀର ସମାପ୍ତି ପରେ ହିତା ଅମିତାଙ୍କୁ ନେଇ ପଣ୍ୟମାର୍ଗରେ ପହଞ୍ଚିଲା । ପଣ୍ୟରେ ଉଭୟ ପାର୍ଶ୍ୱର ଦୋକାନ ବନ୍ଦ ହୋଇ ସାରିଥିଲା । ଗୋଟାଏ ଦୋକାନ ସାମନାରେ ବସିଥିବା କୁକୁର ଅପରିଚିତଙ୍କୁ ଦେଖି ଭୁକିବା ଆରମ୍ଭ କରିଦେଲା । ହିତା ଆପଣାକୁ ଅସହାୟ ମନେକଲା । କୁକୁରକୁ ମହାରାଣୀ ପ୍ରଜାଙ୍କର ଅବସ୍ଥା ଦେଖିବାକୁ ଆସିଛନ୍ତି କହି ତୁନି କରାଇହେବ ନାହିଁ, ସେ ଅମିତାଙ୍କୁ ନେଇ ପୂର୍ବଦିଶାର ମାର୍ଗରେ ଯିବା ବିଚାରରେ ଆଗେଇ ଗଲା ।

ହିତା ସମ୍ମୁଖଭାଗରେ ଏବଂ ପଛରେ ମଧ୍ୟ କିଛି ଦୂରରେ ମଶାଲ ଜଳୁଥିବା ଦେଖି ଭୟଭୀତ ହେଲା ଅଥଚ ଆଗେଇଗଲା ଏବଂ କିଛି ଦୂରମାତ୍ର ଯାଇଥିବ– କର୍କଶ ଗଳାରେ ପଚାରୁଥିବା 'କିଏ ? କିଏ ?' ଶୁଣି ରହିଛି କି ନାହିଁ ତାର ମଥା ଉପର ଦେଇ ତୀବ୍ର ବେଗରେ ଶରଟିଏ ଚାଲିଗଲା ।

ହିତା ଭୟରେ ଥରିଗଲା । ସେ ଅମିତାଙ୍କର ସୁରକ୍ଷା ନିମନ୍ତେ ତାଙ୍କୁ ଆପଣା ଶରୀରର ଆଢୁଆଳକୁ ନେଇନେଲା ଏବଂ ଏକ ବନ୍ଦ ଦୋକାନର ବିରାଟ କାଠ କବାଟ ଉପରେ ଭରା ଦେଇ ଠିଆ ହେଲା । ଭୟାର୍ତ୍ତ କଣ୍ଠରେ ଉଚ୍ଚୈସ୍ୱରରେ କହିଲା ... 'କଳିଙ୍ଗର ମହାରାଣୀ ...'

ସେ ତା'ର ବାକ୍ୟ ପୂରା କରିପାରିଛି କି ନାହିଁ ଆଉ ଏକ ବାଣ ପ୍ରଚଣ୍ଡ ବେଗରେ ଆସି କାଠ କବାଟକୁ ବିଦ୍ଧ କଲା– ସେଇ ବାଣ ମଧ୍ୟ ତାକୁ ଛୁଇଁ ନ ଛୁଇଁଲା ଭଳି କାନ୍ଧ ଉପର ଦେଇ ଯାଇଥିଲା ।

ହିତା ଅମିତାଙ୍କୁ ଆପଣା ଛାତିରେ ଭିଡ଼ି ଧରି ଆପଣାର ଶକ୍ତିମତେ ଚିତ୍କାର କରି କହିଲା– 'ମହାରାଣୀଙ୍କର ଜୟ ହେଉ ! ରାଜେଶ୍ୱରୀଙ୍କର ଜୟ ହେଉ ! ସାବଧାନ ! ପରମଭଗବତୀଙ୍କର ଜୟ ହେଉ... ସସମ୍ମାନ ସାବଧାନ !'

ହିତା ଦେଖିଲା, ମଶାଲ ଓ ବର୍ଚ୍ଛା ଟେକି କେତେକ ସୈନିକ ସେମାନଙ୍କ ଆଡ଼କୁ ଆସୁଛନ୍ତି । ସୈନିକମାନଙ୍କର ତୀବ୍ରଗତି ହେତୁ ମଶାଲର ଶିଖା ପଛକୁ ପ୍ରସାରିତ ହୋଇ ରହିଛି । ସୈନିକମାନେ ଆସି ସେମାନଙ୍କୁ ଘେରିଗଲେ । ସେମାନଙ୍କର ମୁଖମଣ୍ଡଳକୁ ବିସ୍ମୟ ଓ ସନ୍ଦେହ ଆଚ୍ଛନ୍ନ କରି ରଖିଥିଲା ।

ହିତା ଅମିତାଙ୍କୁ ଆଗକୁ ଆଣି ସୈନିକମାନଙ୍କୁ ସମ୍ବୋଧିତ କଲା– 'ସୈନିକ, ଚିହ୍ନ ! ପରମଭଗବତୀ କଳିଙ୍ଗ ରାଜେଶ୍ୱରୀଙ୍କୁ ଚିହ୍ନ ! ପ୍ରଜାଙ୍କର ମାତା ମହାରାଣୀ ସଂକଟକାଳରେ ପ୍ରଜାଙ୍କର ଅବସ୍ଥା ଦେଖିବାକୁ ଆସିଛନ୍ତି ।'

ସୈନିକମାନେ ମହାରାଣୀଙ୍କର ଚାମରଧାରିଣୀ ଦାସୀକୁ ଚିହ୍ନିଲେ । ସନ୍ଦେହଜନକ ପରିସ୍ଥିତି ହେତୁ କିଛି ସଂଭ୍ରମରେ ସେମାନେ ଭୂସ୍ପର୍ଶ ପ୍ରଣାମ କରି ମହାରାଣୀଙ୍କର ଜୟ ଘୋଷ କଲେ । ସୈନିକମାନଙ୍କର ନାୟକ ନତଶିର ହୋଇ ପ୍ରାର୍ଥନା କଲା– ପରମଭଗବତୀ ରାଜେଶ୍ୱରୀ ଆଦେଶ କରନ୍ତୁ ।

ଅମିତା ହିତାର କଥାର ସମର୍ଥନ କରି କହିଲେ– 'ମୁଁ ନଗରରେ ପ୍ରଜାମାନଙ୍କର ଅବସ୍ଥା ଦେଖିବାକୁ ଆସିଛି ।'

ନାୟକ ନତଶିର ହୋଇ ପୁନଶ୍ଚ ବିନୟ ପ୍ରଦର୍ଶନ କଲା । ତାର ଆଦେଶରେ ଦୁଇଟି ଦୀର୍ଘ ବର୍ଚ୍ଛାରେ ବସ୍ତ୍ର ବାନ୍ଧି ମହାରାଣୀଙ୍କର ଶିବିକା ପ୍ରସ୍ତୁତ ହୋଇଗଲା ।

ସୈନିକମାନେ ଖଡ଼୍‌ଗ କୋଷମୁକ୍ତ କରି ସମ୍ମାନ ପ୍ରଦର୍ଶନ କଲେ ଏବଂ ଅମିତାଙ୍କର ଶିବିକା ଆରୋହଣ ପରେ ଉଭୟ ପାର୍ଶ୍ୱରେ ରହି ଚାଲିବାକୁ ଲାଗିଲେ । ହିତା ମହାରାଣୀଙ୍କର ଶରୀର ଉପରେ ହାତ ରଖି ଶିବିକା ସହିତ ଚାଲିଥାଏ ।

ହିତା ସୈନିକମାନଙ୍କୁ ମହାରାଣୀଙ୍କର ନିର୍ଦ୍ଦେଶ ସ୍ୱରୂପ କହିଲା— 'ମହାରାଣୀ ଶ୍ରୀଷ ଦୁର୍ଗ ଅଭିମୁଖରେ ଯିବେ ।'

ମହାରାଣୀଙ୍କର ଶିବିକା ସମ୍ମୁଖରେ ଜଳୁଥିବା ମଶାଲମାନଙ୍କର ପ୍ରକାଶରେ ଶ୍ରୀଷ ଦୁର୍ଗର ଉନ୍ନତ ଦ୍ୱାର ଦେଖାଗଲା । ଦୁର୍ଗ ଦ୍ୱାର ବନ୍ଦ ହୋଇ ରହିଥିଲା । ଦ୍ୱାର ପଟୁ ଆହ୍ୱାନ ଶୁଭିଲା— 'କିଏ ? ସାବଧାନ ! ଆଗେଇ ଆସ ନାହିଁ !'

ମହାରାଣୀଙ୍କର ସୈନିକମାନେ ହୁଙ୍କାର ଦେଇ ଉତ୍ତର ଦେଲେ— 'କଳିଙ୍ଗ ମହାରାଣୀଙ୍କର ଜୟ ! ସସମ୍ମାନ ସାବଧାନ ! ମହାରାଣୀଙ୍କର ନିମନ୍ତେ ମାର୍ଗ ଦିଅ !'

ଦୁର୍ଗଦ୍ୱାରର ଉଭୟ ପାର୍ଶ୍ୱରେ ଅଶ୍ୱାରୋହୀ ସୈନିକ ବର୍ଚ୍ଛା ଉଠେଇ ଏବଂ ଦ୍ୱାର ସମ୍ମୁଖ ଭାଗରେ କେତେଜଣ ଖଡ଼୍‌ଗଧାରୀ ସୈନିକ ରହିଥିଲେ । ଦ୍ୱାର ତୋରଣ ଉପରେ ଧନୁର୍ଦ୍ଧର ସୈନିକମାନେ ପ୍ରତ୍ୟଞ୍ଚା ଟାଣି ରହିଥିଲେ । ଦ୍ୱାର-ରକ୍ଷକ ସୈନିକମାନଙ୍କର ନାୟକ ଯୂଥପ କିଛି ପାଦ ଆଗେଇଆସି ଗମ୍ଭୀର ସ୍ୱରରେ ଚେତାବନୀ ଦେଲା... 'ରହ, କିଏ ? ମହାରାଣୀଙ୍କର ଆଦେଶରେ ଦ୍ୱାର ବନ୍ଦ ହୋଇ ରହିଛି ।'

ହିତା ଆପଣା ସହିତ ଚାଲିଥିବା ସୈନିକମାନଙ୍କୁ ଆଦେଶ ଦେଲା— ମହାରାଣୀ ଦୁର୍ଗରେ ପ୍ରବେଶ କରି ରାଜମାତାଙ୍କର ଦର୍ଶନ କରିବେ ।'

ଶିବିକା ସହିତ ଚାଲିଥିବା ସେନାନାୟକ ପଚାରିଲେ— 'ଭଗବତୀ ରାଜମାତା କ'ଣ ତୀର୍ଥାଟନରୁ ଫେରିଲେଣି ?'

'ରାଜମାତା ବର୍ତ୍ତମାନ ଦୁର୍ଗରେ ଅଛନ୍ତି । ମହାରାଣୀ ଦୁର୍ଗରେ ପ୍ରବେଶ କରିବେ ।' ହିତା ଉତ୍ତର ଦେଲା ।

ସେନାନାୟକ ମଧ୍ୟ ଚାରିପାଦ ଆଗେଇଯାଇ ଉତ୍ତର ଦେଲା— 'ପରମଭଗବତୀ ମହାରାଣୀ ଦୁର୍ଗରେ ପ୍ରବେଶ କରିବେ । ଦ୍ୱାର ଖୋଲ !'

ଦୁର୍ଗରକ୍ଷକ ପୁଣି ଆଗେଇଆସି ଦୃଢ଼ କଣ୍ଠରେ କହିଲା— 'ଦୁର୍ଗରେ ପ୍ରବେଶ ନିଷେଧ ହୋଇଛି । ଦୁର୍ଗଦ୍ୱାର କଦାପି ଖୋଲାଯାଇ ପାରିବ ନାହିଁ ।'

ଏହି ଅବଜ୍ଞା ଲାଗି ମହାରାଣୀଙ୍କର ଶିବିକା ସହିତ ଆସିଥିବା ସେନାନାୟକର କ୍ରୋଧ ହେଲା । ତାର ଶରୀର ସତର୍କ ମୁଦ୍ରାରେ ସାବଧାନ ହୋଇଗଲା ।

ସେ ଖଡ଼୍‌ଗ କୋଷମୁକ୍ତ କରି କହିଲା– 'କଳିଙ୍ଗ ରାଜେଶ୍ୱରୀଙ୍କର ପଥ କୌଣସି ଦ୍ୱାର ଅବରୋଧ କରିପାରିବ ନାହିଁ ।'

ଦୁର୍ଗରକ୍ଷକ ସେହିଭଳି ଉତ୍ତର ଦେଲା– 'ଏହା ରାଜ୍ୟାଦେଶ, ଦୁର୍ଗଦ୍ୱାର ଖୋଲା ଯିବ ନାହିଁ ।'

ମହାରାଣୀଙ୍କ ସହିତ ଆସିଥିବା ସେନାନାୟକ ଆପଣା ଖଡ଼୍‌ଗର ମୁଠି ନେଇ ଢାଲ ଉପରେ ବଜେଇଲା ଏବଂ ଅନ୍ୟାନ୍ୟ ସମସ୍ତ ସୈନିକ ଅନୁରୂପ ଧ୍ୱନି କଲେ ଓ ତାଙ୍କର ଶରୀର ଆକ୍ରମଣ ଉଦ୍ୟତ ସିଂହ ସଦୃଶ ଫୁଲିଉଠିଲା...

ଏହି ଆହ୍ୱାନ ସହିତ ଦୁର୍ଗରକ୍ଷକ ସୈନିକମାନେ ମଧ୍ୟ ଅନୁରୂପ ଖଡ଼୍‌ଗନାଦ କଲେ । ଆକାଶ ଲୌହ ସହ ଲୌହର ସଂଘର୍ଷ ନାଦରେ ଗୁଞ୍ଜରିତ ହୋଇ ଉଠିଲା । ସେହି ନାଦ ସହିତ ଉଭୟ ପକ୍ଷର ସୈନିକଙ୍କର ଗମ୍ଭୀର- ଘୋଷ ନିନାଦିତ ହେଲା–

'ପରମଭଗବତୀ ରାଜେଶ୍ୱରୀଙ୍କର ଜୟ !'

'କଳିଙ୍ଗ ମହାରାଣୀଙ୍କର ଜୟ !'

'ଏ କ'ଣ ? ଏ କ'ଣ ହେଉଛି ?' ଆକାଶବାଣୀ ଭଳି ଏକ ଶାନ୍ତ ଅଥଚ ଗମ୍ଭୀର ସ୍ୱର ଶୁଣାଗଲା ।

ଉଭୟ ଦଳର ସୈନିକମାନେ ତଟସ୍ଥ ହୋଇ ଉପରକୁ ଅନେଇଲେ । ଦୁର୍ଗର ଦ୍ୱିତଳର ଏକ ଗବାକ୍ଷ ଖୋଲା ଥିଲା । ଗବାକ୍ଷ ପାଖରେ ଜଣେ ଦୀପ ଧରି ଠିଆ ହୋଇଥିଲେ ଏବଂ ସେହି ପ୍ରଦୀପର ଆଭାମଣ୍ଡଳରେ ରାଜମାତାଙ୍କର ଚିନ୍ତିତ ମୁଖମଣ୍ଡଳ ପ୍ରକାଶିତ ହୋଇ ରହିଥିଲା ।

ରାଜମାତାଙ୍କର ଅଧର କମ୍ପିତ ହେଲା ।

ସୈନିକମାନେ ଶୁଣିଲେ– 'ରକ୍ତପାତ ହେବ ନାହିଁ । ହିଂସା ହେବ ନାହିଁ । କଳିଙ୍ଗର ସୈନିକ କଳିଙ୍ଗ ସୈନିକଙ୍କର ରକ୍ତପାତ କରିବେ ନାହିଁ ।'

ଅମିତା ଦୀପାଲୋକରେ ପ୍ରକାଶିତ ଗବାକ୍ଷ ଦ୍ୱାରରେ ପ୍ରକଟିତ ମୁଖମଣ୍ଡଳ ଦେଖି ଚିହ୍ନିଗଲେ । ସେ ଉଭୟ ବାହୁ ଟେକି ଗଦ୍‌ଗଦ୍ ସ୍ୱରରେ ମା'... ମା'... ମା' ବୋଲି ଡାକିଲେ ।

ଅମିତାଙ୍କର ଶିବିକାର ଚତୁଷ୍ପାର୍ଶ୍ୱରେ ରହିଥିବା ସୈନିକମାନେ ଖଡ଼୍‌ଗ ଟେକି ଜୟଘୋଷ କଲେ–

'କଳିଙ୍ଗ ମହାରାଣୀଙ୍କର ଜୟ !'

ଦୁର୍ଗରକ୍ଷକ ଯୂଥପ ଆପଣା ଖଡ୍‌ଗ ନୁଆଁଇନେଲା । ଆଗକୁ ବଢ଼ିଆସି ମହାରାଣୀଙ୍କ ସହିତ-ଆସିଥିବା ସୈନିକମାନଙ୍କର ନାୟକକୁ ସମ୍ବୋଧିତ କରି କହିଲା – 'ସେନାନାୟକ, କିଛି ମୁହୂର୍ତ୍ତ ଅପେକ୍ଷା କରନ୍ତୁ । ମୋତେ ଆଚାର୍ଯ୍ୟ ମହାମାତ୍ୟଙ୍କର ଅନୁମତି ନେବାକୁ ପଡ଼ିବ ।'

ଯୂଥପ ଦ୍ୱାରପାଳର ଅଶ୍ୱପୃଷ୍ଠରେ ଅନ୍ଧକାରରେ ବିଲୀନ ହୋଇଗଲା ।

× × × × ×

ଅଶୋକଙ୍କର ଅମିତ ସେନା କଳିଙ୍ଗର ସୈନିକମାନଙ୍କର ରଣକ୍ଷେତ୍ରରେ ପରାଭୂତ କରି କରି ଏବଂ ପଛରେ ପକେଇ ରାଜଧାନୀ ଠାରୁ କେବଳମାତ୍ର ଦୁଇ ଯୋଜନ ଦୂରରେ ରହିଥିଲେ । କଳିଙ୍ଗର ଅପ୍ରମିତ ବଳଶାଳୀ ସେନା ମଧ୍ୟ ଅବିଚଳ ପ୍ରସ୍ତର ଚଟାଣ ଭଳି ଦୃଢ଼ ହୋଇ ରହିଥିଲେ । ମହାମାତ୍ୟ ନଗରରୁ ପ୍ରତିଦିନ ଅଧିକ ଅଧିକ ସୈନ୍ୟ ରଣକ୍ଷେତ୍ରକୁ ପଠେଇ ଚାଲିଥିଲେ । କଳିଙ୍ଗର ସୈନିକ ପଂକ୍ତିରେ ଯେଉଁ ମସ୍ତକ ଭୂଲୁଣ୍ଠିତ ହେଉଥିଲା ସେହି ରିକ୍ତ ସ୍ଥାନ ନୂତନ ସୈନିକ ତତ୍‌କ୍ଷଣାତ୍ ପୂରଣ କରି ନେଉଥିଲେ ।

ଅଶୋକଙ୍କୁ ତାଙ୍କର ଚରମାନଙ୍କଠାରୁ ସମ୍ବାଦ ମିଳିଥିଲା ଯେ କ୍ରମଶଃ କଳିଙ୍ଗ ସେନା ସଂଖ୍ୟାଦୃଷ୍ଟିରୁ କ୍ଷୀଣ ହୋଇଯାଉଛି । ତାଙ୍କର ଅନ୍ତିମ ସୈନ୍ୟଦଳ ହିଁ ରଣକ୍ଷେତ୍ରରେ ଦୃଢ଼ ହୋଇ ରହିଛନ୍ତି । ଅଶୋକଙ୍କର ସୈନ୍ୟବଳ ଅସୀମ ଥିଲା । ବିଶାଳ ମଗଧ ସାମ୍ରାଜ୍ୟର ନାନା ଭାଷାଭାଷୀ, ବିଭିନ୍ନ ଅଞ୍ଚଳ ନିବାସୀ ସୈନ୍ୟଦଳ କଳିଙ୍ଗ ସେନା ଉପରେ ଆକ୍ରମଣ କରୁଥିଲା । କଳିଙ୍ଗସେନାର ଅନ୍ତିମ ତିନିସହସ୍ର ସୈନ୍ୟଙ୍କୁ ଦିବାରାତ୍ର ଅପଲକ ଯୁଦ୍ଧ କରି ଏକ ସପ୍ତାହ ବିତି ସାରିଥିଲା । ସେମାନଙ୍କର ଧନୁର ଗୁଣ ଛିଣ୍ଡିଗଲେ ନୂଆ ବାନ୍ଧିବା, ତୂଣୀରରୁ ଶର ସରିଗଲେ ନୂତନ ତୂଣୀର ବାନ୍ଧିନେବା, ବର୍ଚ୍ଛା କିମ୍ବା ଖଡ୍‌ଗ ଭାଙ୍ଗିଗଲେ ନୂଆ ବଦଳେଇ ନେବାର ବି ସମୟ ନ ଥିଲା । କଳିଙ୍ଗର ଶ୍ରାନ୍ତ ସୈନିକମାନେ ମଗଧର ଅସଂଖ୍ୟ ସୈନିକଙ୍କର ସଂହାର କରି ସେହିମାନଙ୍କର ଶବତଳେ ଏଭଳି ପୋତି ହୋଇ ଯାଉଥିଲେ ଯେଭଳି ବାତ୍ୟାକାଳରେ ଅରଣ୍ୟ ମଝିରେ ବିଧ୍ୱସିଂତ ମହାଦ୍ରୁମମାନଙ୍କ ତଳେ ପାଦପ ଦଳି ହୋଇଯାଏ ।

କଳିଙ୍ଗର ମହାସେନାପତିଙ୍କର ଦୃଢ଼ତାରେ କ୍ଷୁବ୍ଧ ହୋଇ ସମ୍ରାଟ୍ ଅଶୋକ ତାଙ୍କର ସେନାପତିମାନଙ୍କୁ ଆଦେଶ ଦେଇଥିଲେ – ଆକ୍ରମଣ ଦିବାରାତ୍ରି ଅବିରାମ ହେବ । କଳିଙ୍ଗର ଅନ୍ତିମ ସୈନ୍ୟଦଳଙ୍କୁ ମୁହୂର୍ତ୍ତକର ବିଶ୍ରାମ ସମୟ ବି ମିଳିବ ନାହିଁ ।

ଅଶୋକ ପ୍ରତିଜ୍ଞା କରିଥିଲେ ଯେ ସେ ନିଜେ ମଧ୍ୟ ବିଶ୍ରାମ ନିମନ୍ତେ ରଣଗଜପୃଷ୍ଠରୁ ଅବତରଣ କରିବେ ନାହିଁ । କଳିଙ୍ଗର ରାଜପ୍ରାସାଦରେ ପହଞ୍ଚିବା ପରେ ହିଁ ଶଯ୍ୟାରେ ବିଶ୍ରାମ କରିବେ ।

କଳିଙ୍ଗର ମହାସେନାପତି ଭଦ୍ରକୀର୍ତ୍ତି ପରାଜୟ ସ୍ୱୀକାର କଲେ ନାହିଁ କିମ୍ବା ପଛଘୁଞ୍ଚା ଦେଲେ ନାହିଁ । ଆପଣା ସେନାର ବିଭିନ୍ନ ଭାଗରେ ତତ୍‌କ୍ଷଣାତ୍ ପହଞ୍ଚିପାରିବେ ବୋଲି ସୁରକ୍ଷିତ ଗଜପୃଷ୍ଠରୁ ଅବତରଣ କରି ଅଶ୍ୱପୃଷ୍ଠରେ ଥାଇ ସଂଗ୍ରାମ ପରିଚାଳନା କରୁଥିଲେ । ତାଙ୍କ ପାଇଁ ଦିବସର ଆଲୋକ ଏବଂ ରାତ୍ରିର ଅନ୍ଧକାର ଭିତରେ କୌଣସି ଭେଦ ନ ଥିଲା । ସବାରି ଅଶ୍ୱ କ୍ଳାନ୍ତ ହୋଇପଡ଼ିଲେ ସେ ଅଶ୍ୱ ପରିବର୍ତ୍ତନ କରି ନେଉଥିଲେ ସିନା ନିଜେ ବିଶ୍ରାମ କରୁ ନ'ଥିଲେ ।

କଳିଙ୍ଗର ମହାସେନାପତି ଆର୍ଯ୍ୟ ଭଦ୍ରକୀର୍ତ୍ତି ସୂର୍ଯ୍ୟାସ୍ତ ଦୁଇ ଘଡ଼ି ପରେ ମଧ୍ୟ ଯୁଦ୍ଧ କରୁଥିବା ସମୟରେ ମଗଧସେନା ସମ୍ମୁଖରେ ଅଶ୍ୱପୃଷ୍ଠରୁ ତଳେ ପଡ଼ି ଗଲେ । ମଗଧର ସେନାପତି ହସ୍ତୀପୃଷ୍ଠରେ ଥାଇ ସୈନ୍ୟ ସଞ୍ଚାଳନ କରୁଥିଲେ । ତାଙ୍କର ଆଦେଶରେ ମଗଧର ସୈନିକମାନେ ଆର୍ଯ୍ୟ ଭଦ୍ରକୀର୍ତ୍ତିଙ୍କୁ ତୁରନ୍ତ କବଳିତ କରି ଲୁହା ଶାଙ୍କୁଳିରେ ବାନ୍ଧି ପକେଇଲେ । ମଗଧର ସେନାପତି ଆର୍ଯ୍ୟ ଭଦ୍ରକୀର୍ତ୍ତିଙ୍କୁ ସୈନ୍ୟଦଳ ପଛରେ ଥାଇ ଯୁଦ୍ଧ ନିରୀକ୍ଷଣ କରୁଥିବା ମଗଧ ସମ୍ରାଟଙ୍କର ସମ୍ମୁଖରେ ଉପସ୍ଥିତ କରାଇଲେ ।

ଆର୍ଯ୍ୟ ଭଦ୍ରକୀର୍ତ୍ତିଙ୍କ ମୁଖରେ ଜଳ ସିଞ୍ଚନ ଏବଂ ତାଙ୍କୁ ଔଷଧ ଶୁଙ୍ଘେଇବା ପରେ ଚେତା ଆସିଲା । ସେତେବେଳେ ସେ ଆପେ ଲୌହ ଶାଙ୍କୁଳିରେ ବାନ୍ଧି ହୋଇ ରହିଥିବା ଜାଣିଲେ । ତାଙ୍କୁ ଘେରି ଅନେକ ମଶାଲ ଜଳୁଥିଲା । ହାତୀ ଓ ଘୋଡ଼ା ପିଠିରେ ମଗଧର ସଶସ୍ତ୍ର ସେନାନାୟକ, ଯୂଥପ ଓ ସାମନ୍ତମାନେ ରହିଥିଲେ । ଏଇ ବିଶାଳ ବୃତ୍ତର ମଝିରେ ବିଶାଳ ଦନ୍ତୀ ଉପରେ ସୁସଜ୍ଜିତ ଆହୁଦାରେ ମଗଧ ସମ୍ରାଟ ଅଶୋକ ସ୍ୱର୍ଣ୍ଣମଣ୍ଡିତ କବଚ ଓ ଶିରସ୍ତ୍ରାଣ ପିନ୍ଧି ତାଙ୍କୁ ତୀକ୍ଷ୍ଣଦୃଷ୍ଟିରେ ଦେଖୁଥିଲେ । ଅଶୋକଙ୍କର ବାହନ ବିଶାଳ ଗଜ ମଧ୍ୟ ଶାଙ୍କୁଳି ସମୂହର କବଚ ଧାରଣ କରିଥିଲା ଏବଂ ତାକୁ ମଗଧର ଅଶ୍ୱାରୋହୀ ସଶସ୍ତ୍ର ସୈନ୍ୟ ଚାରିପଟୁ ଘେରି ସୁରକ୍ଷିତ ରଖିଥିଲେ । ମହାସେନାପତି ଭଦ୍ରକୀର୍ତ୍ତିଙ୍କର ମସ୍ତକରେ ତୀବ୍ର ବେଦନା ଥିଲା ମାତ୍ର ଅଶୋକଙ୍କ ନେତ୍ରକୁ ନିର୍ଭୟ ଦୃଷ୍ଟିରେ ଅନେଇ ରହିଥିଲେ ।

କଳିଙ୍ଗର ମହାସେନାପତିଙ୍କ ସହିତ ନେତ୍ରମିଳନ ପରେ ସମ୍ରାଟ ଅଶୋକ ତାଙ୍କର ସମୀପରେ ଅନ୍ୟ ଏକ ଗଜାରୋହଣ କରି ରହିଥିବା ମଗଧର ମହାସେନାପତିଙ୍କୁ ପ୍ରଶ୍ନକଲେ 'ମହାବଳାଧିକୃତ ଆର୍ଯ୍ୟ ରୁଦ୍ରପ୍ରତାପ ବର୍ତ୍ତମାନ ଯୁଦ୍ଧର ସ୍ଥିତି କ'ଣ ?'

ମଗଧର ମହାବଳାଧିକୃତ ରୁଦ୍ରପ୍ରତାପ ନତଶିର ହୋଇ ଉତ୍ତର ଦେଲା– 'ସମଗ୍ର ପୃଥିବୀର ଅଧିପତି, ପରମଭାଗବତ ମଗଧ ସମ୍ରାଟଙ୍କର ଜୟ ହେଉ । ସମ୍ରାଟଙ୍କର ଅଜେୟ ସେନା ସମଗ୍ର କଳିଙ୍ଗ ଅବରୋଧ କରି ପଦାକ୍ରାନ୍ତ କରି ଦେଇଛି । କଳିଙ୍ଗର ସ୍ତ୍ରୀ-ଶାସିତ ରାଜ୍ୟର ଦୁଃସାହସୀ ସେନାପତି ପରାଜିତ ହୋଇ ମଗଧ ସମ୍ରାଟଙ୍କର ଚରଣ ତଳେ ଅଛି । ସେନା ଛିନ୍ନଛତ୍ର ହୋଇ ସାରିଛି । ସମ୍ରାଟଙ୍କ ପାଇଁ କଳିଙ୍ଗନଗର ପର୍ଯ୍ୟନ୍ତ କଳିଙ୍ଗ ସୈନ୍ୟଙ୍କର ପତିତ ଶିବିର ମାର୍ଗ ପ୍ରସ୍ତୁତ ହୋଇ ରହିଛି । ସମ୍ରାଟ ଆଦେଶ କରନ୍ତୁ ।'

ଅଶୋକ କଳିଙ୍ଗର ସେନାପତିଙ୍କୁ ଦେଖିଲେ– 'କଳିଙ୍ଗର ସେନାପତି ସ୍ତ୍ରୀ-ଶାସିତ ରାଜ୍ୟର ରକ୍ଷା ଅତ୍ୟନ୍ତ ସାହସ ଓ ବୀରତ୍ୱ ସହକାରେ କରିଛନ୍ତି । ଆମେ ତାଙ୍କର ବୀରତ୍ୱ ପାଇଁ ଗର୍ବ ଅନୁଭବ କରୁଛୁଁ । ମାତ୍ର ସମ୍ରାଟ ଅଶୋକ ସେଭଳି ବୀରଙ୍କୁ ତାଙ୍କର ଆଜ୍ଞା ଓ ସେବାଧୀନ ଦେଖିବାର ଇଚ୍ଛା କରନ୍ତି, ବିରୋଧୀ ଭାବରେ ନୁହେଁ । କଳିଙ୍ଗ ସମ୍ରାଟଙ୍କର ଅଧୀନତାର ବିରୋଧ କରି ଦଣ୍ଡିତ ହୋଇଛି । ଅଧୀନତା ସ୍ୱୀକାର କରିବା ପରେ ସମ୍ରାଟ ଯୁଦ୍ଧର ନିୟମ ଅନୁସାରେ କଳିଙ୍ଗକୁ ଅଭୟ ପ୍ରଦାନ କରିବେ । ସମ୍ରାଟଙ୍କର ଅବଜ୍ଞା ଓ ବିରୋଧ ବୀରତ୍ୱ ନୁହେଁ, ଅପରାଧ । କଳିଙ୍ଗର ସେନାପତି ତାଙ୍କର ରାଣୀଙ୍କୁ ସମ୍ରାଟଙ୍କର ଅଧୀନତା ସ୍ୱୀକାର କରିବାକୁ ସନ୍ଦେଶ ପ୍ରେରଣ କଲେ, ସମ୍ରାଟ କଳିଙ୍ଗର ସେନାପତି, ସେନା ଏବଂ ନଗରକୁ ଅଭୟ ପ୍ରଦାନ କରିବେ ।

କଳିଙ୍ଗ ସେନାପତି ମଥାଟେକି ଗର୍ବିତ କଣ୍ଠରେ କହିଲେ– ଏ ପର୍ଯ୍ୟନ୍ତ କଳିଙ୍ଗ ସେନାପତି ପରାଜୟ ସ୍ୱୀକାର କରି ନାହାନ୍ତି । ସେ ରଣକ୍ଷେତ୍ରରେ ଆହତ ମାତ୍ର ହୋଇଛନ୍ତି । ସେ ରଣକ୍ଷେତ୍ରରେ ମୃତ୍ୟୁବରଣ କରିପାରନ୍ତି ମାତ୍ର ପରାଜୟ ସ୍ୱୀକାର କରିପାରିବେ ନାହିଁ । କଳିଙ୍ଗର ଦେବରକ୍ଷିତ ପରମଭଗବତୀ ରାଜେଶ୍ୱରୀ ଅଜେୟା । କଳିଙ୍ଗ ରାଜ୍ୟର ଶରୀର କ୍ଷତ-ବିକ୍ଷତ ହୋଇଗଲେ ମଧ୍ୟ ତା'ର ଆତ୍ମା ତା'ର ରକ୍ଷା କରିବ । କଳିଙ୍ଗର ପ୍ରଜାମାନଙ୍କର ମସ୍ତକ ଆତତାୟୀ ସମ୍ମୁଖରେ ନଇଁବ ନାହିଁ ।'

ସମ୍ରାଟ ଅଶୋକ କଳିଙ୍ଗ ସେନାପତିଙ୍କ ଉପରୁ ଦୃଷ୍ଟି ଫେରାଇ ନେଲେ । ସେ ମଗଧର ମହାବଳାଧିକୃତଙ୍କୁ ଆଦେଶ ଦେଲେ– 'ମହାବଳାଧିକୃତ, ସୈନ୍ୟ ଯାଇ କଳିଙ୍ଗ ନଗର ଅଧିକାର କରନ୍ତୁ । ନଗରର ପ୍ରଜାମାନଙ୍କର ଧନ ମଗଧର ସେନାପାଇଁ ପୁରସ୍କାର । ରାଜପ୍ରାସାଦକୁ ଘେରି ରାଣୀଙ୍କୁ ବନ୍ଦୀ କର ।

ସମ୍ରାଟଙ୍କର ଅଭିପ୍ରାୟ ବୁଝି ଲୌହ ଶୃଙ୍ଖଳବଦ୍ଧ କଳିଙ୍ଗ ସେନାପତିଙ୍କୁ ସମ୍ରାଟଙ୍କ ସାମନାରୁ ନେଇ ନିଆଗଲା ।

× × × × ×

ସେ ରାତ୍ରି ସେଦିନ କଳିଙ୍ଗ ନିମନ୍ତେ ସଂକଟର ରାତ୍ରି । ମହାମାତ୍ୟଙ୍କୁ କଳିଙ୍ଗ ସେନା ପତଙ୍ଗ ପତନ ଭଳି ନିଷ୍ଠା ପ୍ରଦର୍ଶନ ସତ୍ତ୍ୱେ ମଗଧ ସେନାର ପ୍ରତିରୋଧ କରିବାରେ ବିଫଳ ହେଉଛନ୍ତି ବୋଲି ମଧ୍ୟାହ୍ନରୁ ସମାଚାର ମିଳିଥିଲା । ମଗଧ ସେନାର ବ୍ୟୂହରୁ ଉଦ୍ଧାର ନିମନ୍ତେ ଏବଂ ରାଜଧାନୀ ସହିତ ସଂପର୍କ ସୁରକ୍ଷିତ କରି ରଖିବା ନିମନ୍ତେ ଆର୍ଯ୍ୟ ଭଦ୍ରକୀର୍ତ୍ତି ଆପଣା ସେନାକୁ ରାଜଧାନୀଠାରୁ ଦୁଇ ଯୋଜନ ଦୂରସ୍ଥ ଏକ ଉପତ୍ୟକାକୁ ନେଇ ଆସିଥିଲେ । ମହାମାତ୍ୟ ଅପ୍ରତ୍ୟାଶିତ ଆବଶ୍ୟକତା ନିମନ୍ତେ ନଗରରେ ମାତ୍ର ଦଶସହସ୍ର ସେନା ରଖି ବାକି ସବୁ ସେନା ମହାସେନାପତିଙ୍କର ସହାୟତା ସକାଶେ ପଠେଇ ଦେଇଥିଲେ । ମହାବିହାର ପ୍ରତି ଆପଣାର ବିରକ୍ତି ଦମନ କରି ମହାସ୍ଥବିର ଜୀବକଙ୍କ ନିକଟକୁ ମଧ୍ୟ ସନ୍ଦେଶ ପ୍ରେରଣ କରି ଜଣାଇଥିଲେ ଯେ ରାଜ୍ୟରକ୍ଷା ନିମନ୍ତେ ମହାରାଣୀଙ୍କୁ ନଗରର ପ୍ରତ୍ୟେକ ବ୍ୟକ୍ତିଙ୍କର ଆବଶ୍ୟକତା ରହିଛି । ବିହାରର ଏକସହସ୍ର ଭିକ୍ଷୁ ରାଜଧାନୀର ବିପତ୍ତିରେ ସହଯୋଗ କରନ୍ତୁ । ମଧ୍ୟାହ୍ନ ପରେ ରଣକ୍ଷେତ୍ରରୁ ଆସିଥିବା ସମାଚାରରୁ ଶତ୍ରୁକୁ ଅବରୋଧ କରିବା ଆଦୌ ସମ୍ଭବ ନୁହେଁ ବୋଲି ସେ ଜାଣି ସାରିଥିଲେ ।

ଅପରାହ୍ନରେ ରଣକ୍ଷେତ୍ରରୁ ଆସିଥିବା ଦୂତ ସନ୍ଧ୍ୟାରେ ପହଞ୍ଚି ମହାମାତ୍ୟଙ୍କୁ ଯେଉଁ ସମାଚାର ଦେଇଥିଲେ ତାହା ଆହୁରି ଅଧିକ ଚିନ୍ତାଜନକ ଥିଲା । ଆଚାର୍ଯ୍ୟ ରାତ୍ରି ଦେଢ଼ ପ୍ରହର ହେବା ପରେ ମଧ ଆପଣାର ଅତ୍ୟନ୍ତ ବିଶ୍ୱସ୍ତ ତିନିଜଣ ସେନାପତିଙ୍କ ସହିତ ପରାମର୍ଶ କରୁଥିଲେ । ଏକ ଲକ୍ଷ ସୈନ୍ୟଙ୍କର ରଣକ୍ଷେତ୍ରରେ ବଳିଦାନ ସତ୍ତ୍ୱେ ଯେଉଁ ଚଣ୍ଡ ଅଶୋକଙ୍କର ଅବରୋଧ ସଫଳ ହେଲା ନାହିଁ; କେବଳମାତ୍ର ଦଶସହସ୍ର ସୈନ୍ୟଙ୍କୁ ନେଇ କେଉଁ କଥା ସମ୍ଭବ ହେବ ?

ଆଚାର୍ଯ୍ୟ ଭାବିଲେ– ନଗର ଏବଂ ଦଶସହସ୍ର ସୈନ୍ୟଙ୍କୁ ବି ଧ୍ୱଂସ କରି ସ୍ୱୟଂ ବିଧ୍ୱଂସିତ ହୋଇ ମଧ ସେ କଳିଙ୍ଗର ରାଜସତ୍ତାକୁ ରକ୍ଷାକରିପାରିବେ ନାହିଁ । ସ୍ୱତନ୍ତ୍ରତା ମଧ ରହିବ ନାହିଁ ।

ମହାମାତ୍ୟ ମନେ କରୁଥିଲେ ଶେଷ ସୈନ୍ୟଦଳ କଳିଙ୍ଗର ବାଳିକା ରାଜେଶ୍ୱରୀ ଏବଂ ରାଜମାତାଙ୍କୁ ନେଇ ଦକ୍ଷିଣର ପର୍ବତ ଶ୍ରେଣୀ ଏବଂ ଅରଣ୍ୟକୁ ପ୍ରସ୍ଥାନ କରନ୍ତୁ । କଳିଙ୍ଗର ରାଜବଂଶର ଅଂଶ ଲୋପ ହୋଇ ନ ଯାଉ । ଯେତେବେଳ ପର୍ଯ୍ୟନ୍ତ ରାଜା ଜୀବିତ ଅଛନ୍ତି ସେତେବେଳ ପର୍ଯ୍ୟନ୍ତ ରାଜ୍ୟର ଅନ୍ତ ହୁଏ ନାହିଁ । ସେତେବେଳ ପର୍ଯ୍ୟନ୍ତ ପରାଜୟ ସ୍ୱୀକାର କରା ନ ଯାଉ । ସ୍ୱାଧୀନତାର ଅଧିକାର ଅକ୍ଷୁଣ୍ଣ ହୋଇ ରହିଥାଉ । ଯେତେବେଳଯାଏ କଳିଙ୍ଗର ଗୋଟାଏ ବି

ସୈନ୍ୟ ଜୀବିତ ରହିଛି କଳିଙ୍ଗ ପରାଜୟ ସ୍ୱୀକାର କରିବ ନାହିଁ । କଳିଙ୍ଗ ଭୂମିର ପ୍ରତ୍ୟେକ ଧୂଳିକଣାରେ, କଳିଙ୍ଗର ପ୍ରତ୍ୟେକ ଅରଣ୍ୟ ଲତା ପତ୍ର ବନସ୍ପତିରେ, କଳିଙ୍ଗର ବାୟୁରେ ଯେ ପର୍ଯ୍ୟନ୍ତ ଦେଶପ୍ରୀତି ଜୀବିତ ହୋଇ ରହିଥିବ ପୁନଶ୍ଚ ଦିନେ ନା ଦିନେ ଏ ରାଜ୍ୟ ମୂର୍ତ୍ତରୂପ ଗ୍ରହଣ କରିବ । ତେଣୁ ସେ ସେହି ବିଶ୍ୱାସପାତ୍ର ସେନାପତିମାନଙ୍କୁ କହୁଥିଲେ– ଯେତେବେଳ ପର୍ଯ୍ୟନ୍ତ ଆର୍ଯ୍ୟ ଭଦ୍ରକୀର୍ତ୍ତି ମଗଧ ସେନାକୁ ପ୍ରତିରୋଧ କରି ରଖିଛନ୍ତି ସେହି ସମୟ ଭିତରେ ନଗରକୁ ଆତଙ୍କିତ ନ କରି ବାଳିକା ମହାରାଣୀ ଓ ରାଜମାତାଙ୍କୁ ସେନା ସ୍ଥାନାନ୍ତରିତ କରିନେବା ଉଚିତ ହେବ ।

ସେହି ଚରମ ସଂକଟ କାଳରେ ମହାମାତ୍ୟଙ୍କର ଭବନର ସୁବ୍ୟବସ୍ଥା ଏବଂ ନିୟମ ଶିଥିଳ ହୋଇ ଯାଇଥିଲା । ଆଚାର୍ଯ୍ୟ ତାଙ୍କର ଅନେକ ଦାସ ଏବଂ ସେବକଙ୍କୁ ଶସ୍ତ୍ର ଦେଇ ସୈନିକ କରି ଦେଇଥିଲେ । ବର୍ତ୍ତମାନ ପ୍ରତ୍ୟେକ ଦ୍ୱାରରେ ପ୍ରହରୀ ଓ କଞ୍ଚୁକୀ ସମାଚାର ନେଇ ଆସୁଥିବା ଦୂତମାନଙ୍କୁ ମଧ୍ୟ ଜଣେ ଜଣେ କରି ପଚରା ଯାଉ ନ ଥିଲା । ଅଗଣାର ଦ୍ୱାର ଖୋଲା ରହିଥିବା ଦେଖି ଦୂତମାନେ ସମାଚାରର ଗୁରୁତ୍ୱ ଅନୁସାରେ ନିଜେ ଆପଣା ବିଚାରରେ ଉପସ୍ଥିତ ହେଉଥିଲେ । ଆଚାର୍ଯ୍ୟ ସେନାପତିମାନଙ୍କ ସହିତ ଗୁପ୍ତ ପରାମର୍ଶ ସମୟରେ ମଧ୍ୟ ଦୂତକୁ ସଂକେତରେ ଡାକି ସମାଚାର ଶୁଣିନେଉଥିଲେ ।

ନଗରରେ ଜଣେ ଗୁପ୍ତଚର ଖବର ଦେଲା– ଶତ୍ରୁପକ୍ଷର ସୈନ୍ୟଦଳ ରାଜଧାନୀ ସମୀପକୁ ଆସିଯିବାରେ ତ୍ରସ୍ତ ହୋଇ ମହାବିହାରର ଅନେକ ଭିକ୍ଷୁ ନଗର ତ୍ୟାଗ କରି ସାରିଲେଣି । ଶେଷ ଭିକ୍ଷୁମାନେ ପରିତ୍ରାଣ ଦିବାସେନାର ପାଠ କରିବାକୁ ବସିଛନ୍ତି । ମହାସ୍ଥବିର ଜୀବକ ଦେବୀ ଶକ୍ତିର ଚମତ୍କାର ଦ୍ୱାରା ରକ୍ଷାପାଇଁ ସମାଧିସ୍ଥ ହୋଇ ରହିଛନ୍ତି ।

ମହାମାତ୍ୟ ସମାଚାର ଶୁଣି ଚରକୁ ଚାଲିଯିବାକୁ କହିଲେ ।

ଦୂତର କକ୍ଷରୁ ବାହାରିଯିବା ପୂର୍ବରୁ ସାମନ୍ତ ପ୍ରତାପ ଆସି ପହଞ୍ଚିଲେ । ସାମନ୍ତଙ୍କର ପାଦ ଶ୍ରାନ୍ତି ଏବଂ ଉଦ୍‌ବେଗ ହେତୁ ଟଳମଳ ହେଉଥିଲା । ସେ ସ୍ୱେଦାକ୍ତ ହୋଇଥିଲେ । ସେ ଆଚାର୍ଯ୍ୟଙ୍କୁ ପ୍ରଣାମ କରି ଠିଆହୋଇ ରହିପାରିଲେ ନାହିଁ । ମଥାନତ କରି ଭୂମି ଉପରେ ହିଁ ବସି ପଡ଼ିଲେ ।

ପ୍ରତାପ ଲଜ୍ଜା ଓ ପରିତାପରେ ମୁହଁ ଲୁଚେଇ ଆଚାର୍ଯ୍ୟଙ୍କର ଅନୁମତିର ପ୍ରତୀକ୍ଷା ନ କରି ନିବେଦନ କଲେ– 'ସ୍ୱାମୀ, ସେବକ ଯେଉଁ ଦଣ୍ଡର ଯୋଗ୍ୟ, ପ୍ରଦାନ କରନ୍ତୁ । ମହାରାଣୀ ପ୍ରାସାଦରେ ନାହାନ୍ତି ।'

ମହାମାତ୍ୟ ହତଚକିତ ହେଲେ— ସହସା ତାଙ୍କର କଣ୍ଠରୁ ଅବିଶ୍ୱାସ ଓ ବିସ୍ମୟର ମିଶ୍ର ସ୍ୱର ବାହାରି ଆସିଲା— 'ମହାରାଣୀ ନାହାନ୍ତି... ? କେଉଁଠି ଅଛନ୍ତି ?'

ସାମନ୍ତ ପ୍ରତାପ ମଥାନତ କରି ଉତ୍ତର ଦେଲେ— 'ମହାରାଣୀ ପ୍ରାସାଦରେ ନାହାନ୍ତି । ପ୍ରାସାଦ ଓ ଉଦ୍ୟାନର ପ୍ରତି କୋଣ ଖୋଜି ସାରିଲୁଣି । କୂପ ତଡ଼ାଗ ପର୍ଯ୍ୟନ୍ତ ଦେଖିଲୁଣି । ମହାରାଣୀ ଏବଂ ଦାସୀ ହିତା ସୂର୍ଯ୍ୟାସ୍ତର ଏକ ଘଡ଼ି ପରକାଳ ଯାଏ ପ୍ରାସାଦରେ ଥିଲେ । ତା'ପରେ ମହାରାଣୀ ପ୍ରାସାଦରେ ନାହାନ୍ତି । କୌଣସି ସନ୍ଦିଗ୍ଧ ବ୍ୟକ୍ତି ମଧ୍ୟ ସେହି ସମୟ ଭିତରେ ନଗର ମଧ୍ୟରେ ପ୍ରବେଶ କରି ନାହିଁ ।'

ଆଚାର୍ଯ୍ୟଙ୍କର କପାଳ ଚିନ୍ତାରେ ଗଭୀର ରେଖାଙ୍କିତ ହୋଇଉଠିଲା । ସେ ପ୍ରଶ୍ନ କଲେ— 'ଦାସୀ ହିତା ?'

ସାମନ୍ତ ମଥାନତ କରି ସ୍ୱୀକାର କଲେ— ସ୍ୱାମୀ, ଦାସୀ ମଧ୍ୟ ନାହିଁ । ସେବକର ବୁଦ୍ଧି ଅସମର୍ଥ । ଜ୍ୟୋତିଷ ଗଣନା କରି କହିଲେ ମହାରାଣୀ ଶତ୍ରୁ ପ୍ରଭାବରେ ପ୍ରାସାଦ ଛିଦ୍ର ଦେଇ ଯାଇଛନ୍ତି । ପ୍ରାଚୀରର କେଉଁଠାରେ ବି ଛିଦ୍ର ନାହିଁ । ପ୍ରାସାଦର ଦ୍ୱାର ଦୁଇପକ୍ଷ ହେଲା ଖୋଲି ନାହିଁ । ତାନ୍ତ୍ରିକଙ୍କର ବିଚାରରେ ମହାରାଣୀ ମନ୍ତ୍ରବଳଦ୍ୱାରା ପ୍ରସ୍ଥାପନ କ୍ରିୟାର ପ୍ରୟୋଗରେ ଆକାଶମାର୍ଗରେ ସ୍ଥାନାନ୍ତରିତ ହୋଇଛନ୍ତି । ସେ ମନ୍ତ୍ର ପ୍ରଭାବରେ ରହିଛନ୍ତି... ।

ଆଚାର୍ଯ୍ୟ ତୀକ୍ଷ୍ଣ ସ୍ୱରରେ ବାଧା ଦେଇ କହିଲେ— 'ଦାସୀ ମଧ୍ୟ ମନ୍ତ୍ରବଳରେ ପ୍ରସ୍ଥାପନ କ୍ରିୟାଦ୍ୱାରା ସ୍ଥାନାନ୍ତରିତ ହୋଇଛି ? ଶତ୍ରୁର ଦାସୀରେ କି ପ୍ରୟୋଜନ ? ପ୍ରାଚୀରରେ ଛିଦ୍ର ନାହିଁ ? ପ୍ରାସାଦ ଦ୍ୱାରରେ କ୍ଷୁଦ୍ର ଅର୍ଗଳ ପଥ ନାହିଁ ! ପ୍ରାସାଦକୁ ସୈନିକମାନଙ୍କର ଓ ତୁମର ଆବାଗମନ ମଧ୍ୟ ଆକାଶପଥରେ ହେଉଛି କି ?'

ସାମନ୍ତ ଅସହାୟ ଦୃଷ୍ଟିରେ ମହାମାତ୍ୟଙ୍କୁ ଅନେଇ କ୍ଷୀଣସ୍ୱରରେ ଉତ୍ତର ଦେଲେ— 'ସ୍ୱାମୀ ପ୍ରାସାଦର ଦ୍ୱାର ଖୋଲେ ନାହିଁ । ଆମେ କେବଳ ଉପଦ୍ୱାର ହିଁ ବ୍ୟବହାର କରୁଛୁ ।

'ଉପଦ୍ୱାର ହିଁ ତ ଛିଦ୍ର !' ଆଚାର୍ଯ୍ୟ କ୍ରୋଧିତ ହୋଇ କହିଲେ— 'ଏହା ଛଳ । ଏହା ଦାସୀର ଛଳ । ଏହା ଦାସୀକୁ ବଶୀଭୂତ କରିନେବା ବ୍ୟକ୍ତିର ଛଳ । ସନ୍ଧ୍ୟାପରେ ତିନିଘଡ଼ି ପର୍ଯ୍ୟନ୍ତ ତୁମେ କେଉଁଠି ଥିଲ ? ତତ୍କାଳ ସମାଚାର କାହିଁକି ଦେଲ ନାହିଁ ? କ'ଣ ନଗରରେ ବି ଖୋଜା ଯାଇଛି ନଗରପାଳ ...

କକ୍ଷର ଦ୍ୱାରରେ ଦ୍ରୁତ ପଦଚାପ ଶୁଣି ଆଚାର୍ଯ୍ୟ ତାଙ୍କର ବାକ୍ୟ ପୂରା କରିପାରିଲେ ନାହିଁ । କକ୍ଷଦ୍ୱାରରେ ଅତ୍ୟନ୍ତ ବିକ୍ଷିପ୍ତ ଭାବରେ ଅଭିବାଦନ କରି ଶ୍ରୀଷ ଦୁର୍ଗର ରକ୍ଷକ ଯୂଥପ ପଦାଙ୍କ ଠିଆ ହୋଇଥିଲା ।

ଆଚାର୍ଯ୍ୟ ଉଚ୍ଚୈସ୍ୱରରେ ପ୍ରଶ୍ନ କଲେ – 'କ'ଣ ରାଜମାତା ମଧ୍ୟ ଶ୍ରୀଷ ଦୁର୍ଗରେ ନାହାନ୍ତି ?'

ପଦାଙ୍କ କରଯୋଡ଼ି ପ୍ରଣାମ କରି ଉତ୍ତର ଦେଲା – 'ସ୍ୱାମୀ ଅଭୟଦାନ କରନ୍ତୁ । ଭଗବତୀ ରାଜମାତା ଦୁର୍ଗରେ ଅଛନ୍ତି । ପରମଭଗବତୀ ରାଜେଶ୍ୱରୀ ସୈନ୍ୟଦଳ ସହିତ ଦୁର୍ଗଦ୍ୱାରରେ ଉପସ୍ଥିତ ହୋଇଛନ୍ତି । ମହାରାଣୀ ଦୁର୍ଗ ପ୍ରବେଶ ଲାଗି ଆଗ୍ରହ ପ୍ରକାଶ କରୁଛନ୍ତି ।'

ମହାମାତ୍ୟ ଉତ୍ତେଜନାରେ ଡେଇଁବା ଭଳି ଠିଆହୋଇ ପଡ଼ିଲେ । ଚିତ୍କାର କଲେ – 'ମହାରାଣୀ ସୈନ୍ୟଦଳ ସହିତ ଦୁର୍ଗଦ୍ୱାରରେ ଅଛନ୍ତି ?' ସେ ଅବିଶ୍ୱାସରେ ପୁଣି ପ୍ରଶ୍ନକଲେ – 'ସୈନିକ ? ସୈନିକ ଦଳ ? ... କେଉଁ ସୈନ୍ୟଦଳ ?'

ଯୂଥପ ପଦାଙ୍କ ଉତ୍ତର ଦେଲା – 'ସ୍ୱାମୀ, ମହାରାଣୀଙ୍କର ସେବାରେ କଳିଙ୍ଗର ସୈନିକ, ନଗର ରକ୍ଷକଦଳ ଅଛନ୍ତି । ମହାରାଣୀ ରାଜମାତାଙ୍କର ଦର୍ଶନ ପାଇଁ ନଗର ପ୍ରବେଶ କରିବେ ବୋଲି ଇଚ୍ଛା କରୁଛନ୍ତି ।'

ଆଚାର୍ଯ୍ୟ ସାମନ୍ତ ପ୍ରତାପଙ୍କୁ ଦେଖି ଯୂଥପକୁ ପ୍ରଶ୍ନ କଲେ – 'ମହାରାଣୀ ଦୁର୍ଗ ପର୍ଯ୍ୟନ୍ତ କେମିତି ଆସିଲେ ?'

ପଦାଙ୍କ ଉତ୍ତର ଦେଲା – 'ପ୍ରଭୁ, ରାଜକୀୟ ଶିବିକାରେ ଆସି ନାହାନ୍ତି, ସୈନିକମାନେ କାନ୍ଧେଇ ଆଣିଛନ୍ତି ।'

ଆଚାର୍ଯ୍ୟଙ୍କର ଭ୍ରୂକୁଟି ଅଧିକ କୁଞ୍ଚିତ ହୋଇଉଠିଲା । ପ୍ରଶ୍ନକଲେ – 'କ'ଣ ବାଳିକା ମହାରାଣୀ ଏକାକିନୀ ଆସିଛନ୍ତି ।'

ଯୂଥପ ଉତ୍ତର ଦେଲା – 'ସ୍ୱାମୀ, କେବଳ ଚାମରଧାରିଣୀ ଦାସୀ ଆସିଛି । ସ୍ୱାମୀ, ରାଜମାତା କୋଳାହଳ ଶୁଣି ଦୁର୍ଗର ଦ୍ୱିତଳର ଝରକାରୁ ଅନେଇ ଆଦେଶ ଦେଲେ, ରକ୍ତପାତ କର ନାହିଁ । କଳିଙ୍ଗ ସୈନିକ ରକ୍ତପାତ କରିବେ ନାହିଁ ।'

ଆଚାର୍ଯ୍ୟ ଆଖିବୁଜି ବହୁକାଳ ମୌନରହି ସାମନ୍ତଙ୍କୁ ସମ୍ବୋଧନ କରି କହିଲେ – 'ବୁଝିପାରିଲେ, ଏହା ଦାସୀର ଛଳ । ସାମନ୍ତ ତୁରନ୍ତ ଶ୍ରୀଷ ଦୁର୍ଗକୁ ଯାଆନ୍ତୁ ।'

ତା'ପରେ ସେ ପଦାଙ୍କ ଉଦ୍ଦେଶ୍ୟରେ କହିଲେ – 'ମହାରାଣୀ ଓ ରାଜମାତାଙ୍କୁ ତୁରନ୍ତ ପ୍ରାସାଦକୁ ନେଇଯିବାର ବ୍ୟବସ୍ଥା କରାଅ । ଗୋଟାଏ ସ୍ଥାନକୁ ରକ୍ଷାକରିବା ଦୁଇଟି ସ୍ଥାନରୁ ସହଜ ହେବ ।'

ଆଚାର୍ଯ୍ୟଙ୍କ ସମୀପ ପୀଠରେ ବସିଥିବା ସେନାପତି ସୋମନାଥ ସମ୍ଭ୍ରମ ଉତ୍ତର ଦେଲେ – 'ପ୍ରଭୁ, ଆଦେଶ କରନ୍ତୁ ।'

ଆଚାର୍ଯ୍ୟ ସୋମନାଥଙ୍କୁ ଦେଖିଲେ ।

ସେନାପତି ନିବେଦନ କଲେ – 'ସ୍ୱାମୀ, ଭଗବତୀ ମହାରାଣୀଙ୍କ ପାଖରେ ଏଭଳି ଶଠ ଦାସୀ ସବୁ ସମୟରେ ଭୟର କାରଣ ହେବ ।'

ଆଷ୍ଚର୍ଯ୍ୟ ସାମନ୍ତ ପ୍ରତାପଙ୍କୁ ଅନେଇଲେ । ସାମନ୍ତଙ୍କର ନେତ୍ର ରକ୍ତୋଜ୍ଜ୍ୱଳ ମନେହେଉଥିଲା । ସେ କହିଲେ – 'ସ୍ୱାମୀ, ଅନୁମତି ଦିଅନ୍ତୁ ସେ ଛଳକାରିଣୀ ଦାସୀର ମସ୍ତକ ଦୁର୍ଗ ଦ୍ୱାରରେ ହିଁ ଛିନ୍ନ ହେବ ।'

ଆଚାର୍ଯ୍ୟ କିଛି ସମୟ ବିଚାର କରି କହିଲେ – ନା, ବର୍ତ୍ତମାନ ଦାସୀର ବଧ କରାଯିବ ନାହିଁ । ଛଳ ନିଶ୍ଚିତ ଭାବରେ ଦଣ୍ଡନୀୟ ଅପରାଧ୍ । ମାତ୍ର... ଦାସୀ ଶତ୍ରୁପକ୍ଷର ଦୂତୀ ନୁହେଁ । ... ସେ ମହାରାଣୀଙ୍କୁ ସିଂହଦ୍ୱାର ପଟକୁ ନେଇ ନ ଯାଇ ଶ୍ରୀଷଦୁର୍ଗକୁ କାହିଁକି ନେଲା ? ... ଦାସୀ ଶତ୍ରୁର ଦୂତୀ ନୁହେଁ ଯଦି ସଂକଟ କାଳରେ ତା'ର ବୁଦ୍ଧି ଉପଯୋଗୀ ସିଦ୍ଧ ହେବ । ସ୍ୱାମୀଭକ୍ତ ବୁଦ୍ଧିମାନ ଦାସ ସବୁଠାରୁ ବଡ଼ ଧନ । ଦାସର ନିଜର ବିରୋଧୀ ସ୍ୱାର୍ଥ ନ ଥିଲେ ତାର ବୁଦ୍ଧି ସ୍ୱାମୀର ଧନ ସଦୃଶ । ଦାସୀର କ'ଣ ପ୍ରୟୋଜନ ଥିଲା ଜାଣିବାକୁ ହେବ । ସେ ଯଦି ଶତ୍ରୁର ଦୂତୀ ନୁହେଁ ତେବେ ସାମନ୍ତ ତାକୁ ମହାରାଣୀଙ୍କର ରକ୍ଷାକାରିଣୀ ଭାବରେ ବ୍ୟବହାର କରନ୍ତୁ । ତା'ର ଇଚ୍ଛା ପୂର୍ଣ୍ଣ କରାଯିବା ଅନୁଚିତ ମନେକଲେ ସୂର୍ଯ୍ୟୋଦୟ ପଶ୍ଚାତ୍ ଅନୁମତି ନେଇ ବଧ କରିବେ । ସାମନ୍ତ, ମହାରାଣୀ, ରାଜମାତା, ଚାମରଧାରିଣୀ ଦାସୀ ଏବଂ ଆଉ ଦଶଜଣ ବିଶ୍ୱସ୍ତ ଦାସୀ ଏବଂ ଦଶଜଣ କଞ୍ଚୁକୀଙ୍କ ସହିତ ଗୁହା ମାର୍ଗରେ ପ୍ରାସାଦ ତ୍ୟାଗ କରି ଯିବାକୁ ପ୍ରସ୍ତୁତ ହୋଇ ରହିଥାନ୍ତୁ ।

ଆଚାର୍ଯ୍ୟ ସେନାପତିମାନଙ୍କର ପରାମର୍ଶ ନେବାପାଇଁ ଅନେଇଲେ ।

ସାମନ୍ତ ପ୍ରତାପ ଏବଂ ପଦାଙ୍କ ମଥାନତ କରି ଆଦେଶ ପାଳନ ନିମନ୍ତେ ପ୍ରସ୍ଥାନ କଲେ ।

# ଅମିତାଙ୍କର କାର୍ଯ୍ୟ

ରାଜମାତା ମଧ୍ୟରାତ୍ରିରେ ଯେତେବେଳେ ଶ୍ରୀଷ ଦୁର୍ଗରୁ ରାଜପ୍ରାସାଦକୁ ଆସିଲେ ସେତେବେଳେ ବାଳିକା ମହାରାଣୀ ତାଙ୍କର କୋଳରେ ଥିଲେ । ଅମିତା ନଅ ମାସ ପରେ ମାଆଙ୍କୁ ପାଇଥିଲେ । ଏତେ ରାତି ହୋଇଯାଇଥିଲେ ହେଁ ତାଙ୍କର ବାଳିକା ଆଖିକୁ ନିଦ ନ ଥିଲା । ସେ ମାତାଙ୍କୁ ତାଙ୍କର ସବୁ କଣ୍ଢେଇ ଦେଖେଇଲେ, ହିତା କହିଥିବା କଣ୍ଢେଇ ଖେଳ ବିଷୟରେ ବି କହିଲେ । ନୂଆ ନୂଆ ଖେଳ । ବନ୍ଧୁର ଉଚ୍ଛୃଙ୍ଖଳତା ସମ୍ବନ୍ଧରେ କହିଲେ । ସେ ସବୁ ସତ୍ତ୍ୱେବି ମା'ଙ୍କର ଗଳାରୁ ବାହୁ ଖସେଇନେବାକୁ ମନ କରୁ ନ ଥିଲେ ।

ରାଜମାତା ଶୁଏଇ ଦେବାକୁ ମହାରାଣୀଙ୍କୁ ଆପଣା କୋଳକୁ ନେଲେ । ତାଙ୍କର ସର୍ବାଙ୍ଗ ଓ ଅନ୍ତଃକରଣ ପୁତ୍ରୀ ସ୍ନେହରେ ପରିତୃପ୍ତ ହୋଇ ଯାଉଥିଲା । ଯେଭଳି ସେ ସମାଧି ଅବସ୍ଥାରେ ପୃଥିବୀକୁ ଓହ୍ଲେଇ ଆସିଥିଲେ । ମାତ୍ର ସମାଧି ଅବସ୍ଥାରୁ ମଧ୍ୟ ଅଧିକ ତନ୍ମୟ ମନେ ହେଉଥିଲେ । ସେ ମୁହୂର୍ତ୍ତକ ଲାଗି ଝିଅ ଉପରେ ଆପଣାର ଆଶିଷଦ ହାତ ରଖି ମୌନ ରହିଲେ । ଝିଅ ନିଦ୍ରାରେ ସଂପୂର୍ଣ୍ଣ ମଗ୍ନ ହୋଇ ଯିବା ପରେ ସେ ହିତା ହାତରେ ସମର୍ପି ଦେଲେ । ତଥାଗତ ତାଙ୍କୁ ବିସ୍ମୟକର ଭାବରେ ବନ୍ଧନମୁକ୍ତ କରିଥିଲେ । ସେ ଭଗବାନ୍‌ଙ୍କ ପ୍ରତି କୃତଜ୍ଞତାରେ ଧ୍ୟାନମଗ୍ନ ହୋଇଗଲେ ।

ସାମନ୍ତ ପ୍ରତାପ ଏବଂ ଯୂଥପ ପଦାଙ୍କ ଶିଥିଳତାର କୌଣସି ସମ୍ଭାବନା ପର୍ଯ୍ୟନ୍ତ ନ ରହୁ ବୋଲି ମହାରାଣୀଙ୍କର ଶୟନକକ୍ଷର ଅଗଣାରେ ସ୍ୱୟଂ ଉପସ୍ଥିତ ହୋଇ ରହିଥିଲେ । ଆଉ ଏକ ପ୍ରୟୋଜନ ମଧ୍ୟ ଥିଲା । ପର୍ଯ୍ୟଙ୍କ ଉପରେ ମହାରାଣୀ ସଂପୂର୍ଣ୍ଣ ନିଦ୍ରାଗତ ହେବା ପରେ ଛଳନାମୟୀ ଦାସୀ ହିତାର ଅନୁଶାସନ ନିମନ୍ତେ ଅଗଣାରେ ଅଧିକ କାଷ୍ଠ ଓ କୁଳିଶ ନେଇ ସାମନ୍ତଙ୍କର ଆଦେଶର ପ୍ରତୀକ୍ଷା କରୁଥିଲା ।

ସାମନ୍ତ ପ୍ରତାପ ଓ ପଦାଙ୍କ ପ୍ରାସାଦରେ ପହଞ୍ଚିବା ମାତ୍ରକେ ଦାସଦାସୀମାନଙ୍କୁ ଭୟ ଏବଂ ଲୋଭ ଦେଖେଇ ହିତାର ରହସ୍ୟ ଉଦ୍‌ଘାଟନ କରିବାକୁ ନାନା ପ୍ରଶ୍ନ କରିଥିଲେ । ସେମାନେ ମୋଦ ପ୍ରତି ହିତାର ଅନୁରାଗ ସମ୍ବନ୍ଧରେ ମଧ୍ୟ ଜାଣିଥିଲେ । ବାପୀ ମଧ୍ୟ ସେ ରହସ୍ୟ ସ୍ୱୀକାର କରିଥିଲା । ସେମାନେ ପରସ୍ପର ଧୀରକଣ୍ଠରେ ତର୍କଣା କରୁଥିଲେ ।

ଦାସୀ ମହାରାଣୀଙ୍କୁ ନେଇ ନଗରଦ୍ୱାର ଅଥବା ବିଟ୍‌ଠଳର ଗୃହଦ୍ୱାରକୁ ଗଲା ନାହିଁ; ଶ୍ରୀଷ ଦୁର୍ଗର ଦ୍ୱାରରେ ପହଞ୍ଚିଗଲା । ସେଥିରେ ତା'ର କ'ଣ ଅଭିପ୍ରାୟ ଅଥବା ସ୍ୱାର୍ଥ ସାଧନ ସମ୍ଭବ ହେବ ? ରାଜମାତାଙ୍କ ପ୍ରତି ଅନୁରାଗ ଅଥବା ଆଉ କିଛି ? କ'ଣ ସେ କଳାକାର ଦାସ ଶ୍ରୀଷ ଦୁର୍ଗରେ ଅଛି ବୋଲି ଆଶା କରୁଥିଲା ? ... ସେ କ'ଣ ଶତ୍ରୁପକ୍ଷର ଦୂତୀ ?

ଶ୍ରୀଷ ଦୁର୍ଗରୁ ରାଜମାତା ଏବଂ ମହାରାଣୀଙ୍କୁ ନେଇ ରାଜପ୍ରାସାଦରେ ଶିବିକା ପହଞ୍ଚିବାଠାରୁ ହିତା ରାଜମାତାଙ୍କ ସେବାରେ ନିଯୁକ୍ତ ହୋଇ ରହିଥିଲା । ନିଜର ମାଆ ସଂପର୍କରେ ବି ଜାଣିବାର ଅବସର ପାଇ ନ ଥିଲା । ନିଦ୍ରିତା ଅମିତାଙ୍କୁ ଶୟନକକ୍ଷକୁ ଆଣି ପଲଙ୍କରେ ଶୁଏଇଦେଇ ହିତା ଶୟନକକ୍ଷର ବ୍ୟଜନ ଦାସୀର କାନ ପାଖରେ ଧୀରେ ଧୀରେ ପଚାରିଲା– 'ମୋର ମାଆ କୋଉଠି ଅଛି ?'

ବ୍ୟଜନ ଦାସୀ ମୌନ ସଂକେତରେ ହାତ ହଲେଇ ତା'ର ଅଜ୍ଞତା ପ୍ରକାଶ କଲା । ଦାସୀ ସାମନ୍ତଙ୍କର କୋପଭାଜନ ବାପୀର ବିଷୟରେ କ'ଣ ବା କହି ପାରନ୍ତା ?

ହିତା ଅଳିନ୍ଦରେ ଠିଆ ହୋଇଥିବା ଯବନୀ ଠାରୁ ମାଆ ସମ୍ବନ୍ଧରେ ଜାଣିବାକୁ ଅଳିନ୍ଦକୁ ଗଲା । ସହସା ଦୁଇଜଣ ଯବନୀ ତାକୁ ଧରିନେଇ ମୌନ ରହିବାର ସଂକେତ ଦେଇ ଅନ୍ୟ ଅଗଣାକୁ ଚାଲିଗଲେ ।

ଅଗଣାରେ ଅନ୍ଧକାର ଥିଲା । କଳାକନାରେ ମୁହଁ ଢାଙ୍କି ଜଣେ ହିତା ଆଗକୁ ହଠାତ୍ ଚାଲିଆସିଲା । ହିତା ଭୟରେ ଶିହରି ଉଠିଲା । ସେ ସାହାଯ୍ୟ ନିମନ୍ତେ ତା'ର ଉଭୟ ବାହୁ ଧରି ରହିଥିବା ଯବନୀମାନଙ୍କୁ ଦେଖିଲା । ସେତେବେଳକୁ ଯବନୀମାନେ ଚାଲି ଯାଇଥିଲେ । କଳାକନାରେ ମୁହଁ ଘୋଡ଼େଇ ରହିଥିବା ଲୋକଟି ହିତା ଆଗକୁ ଆସି କୋମଳ ସ୍ୱରରେ ପଚାରିଲେ– 'ଚତୁରା ଦାସୀ, ମଗଧର ଦୂତପାଇଁ କ'ଣ ସମାଚାର ଅଛି ? ପ୍ରାସାଦ ମଧ୍ୟରେ ମଗଧର ସୈନ୍ୟ ଉପସ୍ଥିତ ହୋଇ ରହିଛନ୍ତି !'

ହିତା ଚିତ୍କାର କଲା– 'ଛଳନା !'

ହିତା ଦ୍ୱିତୀୟଥର ପାଟି ଫିଟେଇ ପାରିଲା ନାହିଁ । କଟାରିଟିଏ ତା'ର ଓଠ ପାଖକୁ ଲାଗିଆସିଲା । ତା'ର ପାଦ ଟଳମଳ ହୋଇ ପଡ଼ି ଯାଇଥାନ୍ତା ମାତ୍ର ଚାରୋଟି ହାତ ତାକୁ ଧରିନେଲା । ହିତା ଭୟରେ ଧଇଁସଇଁ ହେଉଥାଏ । ସେ ଅନୁଭବ କଲା ଯେମିତି ତା'ର ମୁହଁ ଉପରେ କେହି ପାଣି ସିଞ୍ଚି ଚାଲିଛି ।

'ହିତୁ... ହିତୁ... !' ସେ ଉଦ୍ଧାଳର ପରିଚିତ ସ୍ୱର ଶୁଣିଲା ।

ଆଉ ମଧ୍ୟ ଶୁଣିଲା – ‘ଦାସୀ, ଡରନା... ଏ ଏକ ପରୀକ୍ଷା ଥିଲା ।’ ସାମନ୍ତ ପ୍ରତାପ କହୁଥିଲେ ।

ହିତା ଆଖି ବୁଜିନେଲା । ସେ ଶୁଣିଲା – ‘ସତ ସତ କହିଦେ, ତୁ ମହାରାଣୀଙ୍କୁ ପ୍ରାସାଦ ବାହାରକୁ ନେଇଯିବାର ଛଳ କରିବା'ର କାରଣ କ'ଣ ?’

ହିତା ଅଣନିଃଶ୍ୱାସୀ ହୋଇ ରହିଥିବା ହେତୁ ପ୍ରଶ୍ନ ଶୁଣି ପାରୁ ନ ଥିଲା । ତା' ମୁହଁରୁ କଥା ମଧ୍ୟ ବାହାରୁ ନ ଥାଏ । ତା'ର ହୃତ୍‌କମ୍ପନ ପାଖରେ ରହିଥିବା ଲୋକଙ୍କୁ ବି ହୁଏତ ଶୁଣା ଯାଉଥାଏ । ଉଦ୍ଧାଳ ହିତା ମୁହଁରେ ଜଳପାତ୍ର ଲଗେଇଦେଲା । ହିତା କିଛି ଢୋକ ପିଇନେଲା । ତା'ପରେ ସେ ତାକୁ ସେଇ ଅଗଣାରେ ଶୁଏଇଦେଲା । ସେ ଆଖିବୁଜି ପଡ଼ିରହିଥିଲା ଆଉ ଅନୁଭବ କରୁଥିଲା ଯେମିତି କେହି ତାକୁ ବିଞ୍ଚି ଦେଉଛି ।

ପ୍ରାୟ ଅଧଘଡ଼ି ଯାଏ ହିତା ସେହିଠାରେ ପଡ଼ିରହିଲା । ଆଖି ଖୋଲିବାରୁ ପ୍ରଥମେ ସେ ତା' ପାଖରେ ବସିରହିଥିବା ଉଦ୍ଧାଳକୁ ଦେଖିଲା । ଉଦ୍ଧାଳ ପୁଣି ସେଇ ପ୍ରଶ୍ନ କଲା – ‘ସତ, ସତ କହିଦେ, ତୁ ମହାରାଣୀଙ୍କୁ ବାହାରକୁ ନେଇଯିବାର ଛଳ କାହିଁକି କଲୁ ?’

ହିତା ମଥା ନୁଆଁଇ ଘଡ଼ିଏ ଚିନ୍ତା କଲା ଏବଂ କ୍ଷୀଣସ୍ୱରରେ ଉତ୍ତର ଦେଲା – ‘ମହାରାଣୀ ମାତାଙ୍କ ଲାଗି ଅତ୍ୟନ୍ତ ବ୍ୟାକୁଳ ହେଉଥିଲେ । ମହାରାଣୀ ଗତ ରାତିରେ ରାଜମାତାଙ୍କୁ ସ୍ୱପ୍ନରେ ଦେଖି ଅନେକ କାନ୍ଦିଥିଲେ ।’

‘ଦାସୀ, ରାଜମାତା ଏବଂ ଆଚାର୍ଯ୍ୟ ମହାମାତ୍ୟ ତୋର ସ୍ୱାମୀଭକ୍ତିରେ ଅତ୍ୟନ୍ତ ପ୍ରସନ୍ନ । ତୋ'ର ଯାହା ବର ମାଗିବାର ଇଚ୍ଛା ମାଗିନେ ।’ ହିତା ପଛକୁ ଅନେଇ ଦେଖିଲା, ସାମନ୍ତ ପ୍ରତାପ ତା'ର ପଛରେ ଠିଆ ହୋଇ କହୁଥିଲେ ।

ହିତା ତୁରନ୍ତ ଉଠି ସାମନ୍ତଙ୍କୁ ମୁଣ୍ଡିଆ ମାରିଲା ।

ସାମନ୍ତ ପୁନଶ୍ଚ କହିଲେ – ‘ଦାସୀ ଇଚ୍ଛାନୁସାରେ ବର ମାଗୁ !’

ହିତା ସେହିଭଳି ମଥାନତ କରି ନିବେଦନ କଲା – ‘ଭଗବତୀ ମହାରାଣୀ ଦୀର୍ଘାୟୁ ହୁଅନ୍ତୁ । ରାଜମାତାଙ୍କର କୁଶଳ ମଙ୍ଗଳ ହେଉ ! ସ୍ୱାମୀଙ୍କର ମଙ୍ଗଳ ହେଉ !’

ସାମନ୍ତ କହିଲେ – ‘ତୁ କଳାକାର ଦାସ ମୋଦକୁ ପାଇବାକୁ ଚାହୁଁଛୁ ନା ! ମୋଦ ଯେଉଁଠାରେ ବି ଅଛି, ରାଜସୁରକ୍ଷାରେ ସକୁଶଳ ଫେରିଆସିବ । ତୁ ତାକୁ ଅବଶ୍ୟ ପାଇବୁ, ଏହା ରାଜାଜ୍ଞା । ଏହା ସଂକଟକାଳ । ଦାସୀ, ତୁ ମହାରାଣୀ ଓ ମହାମାତ୍ୟଙ୍କର ବିଶ୍ୱାସପାତ୍ରୀ । ତୁ ନିଦ୍ରା ଆଳସ୍ୟ ତ୍ୟାଗ କରି

ନିଷ୍ପଲକ ସଜାଗ ରହି ପ୍ରତ୍ୟେକ ମୁହୂର୍ତ୍ତରେ ମହାରାଣୀଙ୍କର ସେବାପାଇଁ ପ୍ରସ୍ତୁତ ହୋଇ ରହିଥିବୁ । ସନ୍ଦେଶ ପାଇବାମାତ୍ରକେ ମହାରାଣୀ ଓ ରାଜମାତାଙ୍କୁ ନେଇ ପ୍ରାସାଦରୁ ପ୍ରସ୍ଥାନ କରିବୁ । ଅନ୍ତିମ ସମୟ ପର୍ଯ୍ୟନ୍ତ ଏ ରହସ୍ୟ ରହସ୍ୟ ହୋଇ ରହିଥିବ ।

ସାମନ୍ତଙ୍କର ବଚନ ଶୁଣି ହିତାର ମସ୍ତିଷ୍କ ଓ ଶରୀରର ସଂପୂର୍ଣ୍ଣ କ୍ଳାନ୍ତି ଓ ଶ୍ରାନ୍ତି ଦୂର ହୋଇଗଲା ।

× × × × ×

ଗତ ରାତିରେ କେହିହେଲେ ରାଜପ୍ରାସାଦରେ ବିଶ୍ରାମ ପାଇ ନ ଥିଲେ । ମଧ୍ୟରାତ୍ରିରେ ମହାରାଣୀଙ୍କର ପ୍ରାସାଦକୁ ଫେରିଆସିବା ପରେ ହିଁ ବ୍ୟଗ୍ରତା ଓ ବ୍ୟାକୁଳତାର ସମନ ହୋଇଥିଲା । ତଥାପି ମଧ୍ୟ ଦାସ-ଦାସୀ, ଯବନୀ ଓ କଞ୍ଚୁକୀମାନେ, ସେବକ, ପ୍ରହରୀଗଣ, ସାମନ୍ତ ପ୍ରତାପ ଓ ପଦାଙ୍କଙ୍କର ବାରମ୍ବାର ଏଣେ ତେଣେ ବିଚରଣ ଫଳରେ ନିଶ୍ଚିନ୍ତ ହୋଇ ପାରି ନ ଥିଲେ । ସେଇ ବ୍ୟଗ୍ରତା ଭିତରେ ଆକାଶରେ ପ୍ରଭାତର ପାଟଳିମା ରଞ୍ଜିତ ହେବାକୁ ଲାଗିଲା । ଦାସଦାସୀ ଏବଂ ସେବକମାନେ ଶରୀରର ପରିପୂର୍ଣ୍ଣ ନିଦ୍ରାଳସ ଓ କ୍ଳାନ୍ତିକୁ ଯଥାସମ୍ଭବ ଆୟତ୍ତ କରି ନିୟମିତ କାର୍ଯ୍ୟପାଇଁ ତତ୍‌ପର ହେବାକୁ ଲାଗିଲେ । ସେମାନଙ୍କର ଶରୀରରେ ଭରି ରହିଥିବା ଶୈଥିଲ୍ୟ ଓ ଶ୍ରାନ୍ତିର ଉପେକ୍ଷା କରି ସୂର୍ଯ୍ୟକିରଣ ଚତୁର୍ଦ୍ଦିଗରେ ବିଛେଇ ହୋଇଗଲା ।

ଅମିତା ଅନେକ ବିଳମ୍ବରେ ଶଯ୍ୟାଗ୍ରହଣ କରିଥିବା ହେତୁ ପ୍ରଭାତର ପ୍ରଥମ ପ୍ରହର ବିତିଗଲା ପରେ ମଧ୍ୟ ନିଦ୍ରାରେ ଅଚେତ ହୋଇ ରହିଥିଲେ । ହିତା ନିଷ୍ପଲକ ଓ ଜାଗ୍ରତ ହୋଇ ପଲଙ୍କ ସମୀପରେ ଠିଆ ହୋଇ ରହିଥିଲା । ସେ ଚିନ୍ତା କରୁଥାଏ, କିଭଳି ମହାରାଣୀଙ୍କର ନିଦ୍ରାପୂର୍ଣ୍ଣ ହୁଅନ୍ତା ଓ ସେ ତାଙ୍କୁ ଯାତ୍ରାପାଇଁ ପ୍ରସ୍ତୁତ କରି ରଖିପାରନ୍ତା ।

ବିଳମ୍ବିତ ଦ୍ୱିତୀୟ ପ୍ରହରରେ ମହାରାଣୀଙ୍କର ନିଦ୍ରାଭଙ୍ଗ ହେଲା । ହିତା ତୁରନ୍ତ ତାଙ୍କର ମୁଖ ପ୍ରକ୍ଷାଳନ ଆଦି କାର୍ଯ୍ୟୋପରାନ୍ତ ବସ୍ତ୍ରଧାରଣ କରେଇବା ଅଭିପ୍ରାୟରେ ଉପକ୍ରମ କରିବାକୁ ଲାଗିଲା । ମାତ୍ର ଅମିତା ଅନିଚ୍ଛା ପ୍ରକାଶ କରି କହିଲେ– 'ନା', ମୁଁ ପ୍ରଥମେ ମାଆଙ୍କ ପାଖକୁ ଯିବି, ମାତାଙ୍କୁ ଦେଖିବି ।'

ଏବଂ ସେ ଅଝଟ ହୋଇ ରାଜମାତାଙ୍କର କକ୍ଷ ଅଭିମୁଖରେ ଦଉଡ଼ିଗଲେ । କକ୍ଷରେ ଧର୍ମଗ୍ରନ୍ଥ ପାଠ-ନିମଗ୍ନା ମାତାଙ୍କର ଆଶୀର୍ବାଦ ଓ ପବିତ୍ର ଜଳର ଆଚମନ ଗ୍ରହଣ କରି ଅମିତା ମୁଖପ୍ରକ୍ଷାଳନ ଆଦିକୁ ସ୍ୱୀକାର କଲେ ।

ମାତାଙ୍କର ଫେରିଆସିଥିବାର ଉତ୍ସାହ ହେତୁ ଅମିତାଙ୍କୁ ବଶୀଭୂତ କରିବା ହିତା ପକ୍ଷରେ ବି କଠିନ ହୋଇଥିଲା । ହିତା ସର୍ବଦା ଚିନ୍ତା କରୁଥିଲା ଯେ ମହାରାଣୀ ଗୁହାମାର୍ଗର ସମୀପସ୍ଥ କକ୍ଷର ପ୍ରାଙ୍ଗଣରେ ହିଁ ଖେଳନ୍ତୁ ମାତ୍ର ଅମିତା ହିତାର ଅନୁରୋଧର ଅବହେଳନା କରି ଏଣେତେଣେ ଚଞ୍ଚଳ ହେବାରେ ହିଁ ଆନନ୍ଦ ଲାଭ କରୁଥିଲେ ।

ଢାଏଁ ! ଢାଏଁ !! ଢାଏଁ !!!

ସହସା ନଗର ମଧ୍ୟରେ ବିଚିତ୍ର ଭୟାବହ ଗମ୍ଭୀର ଘଣ୍ଟାନାଦ୍ ଶୁଣାଗଲା । ନିଶାଣମାନଙ୍କର ସ୍ୱର ଗମ୍ଭୀର ହେଲେହେଁ ଅବରୁଦ୍ଧ ଭଳି, ମନେ ହେଉଥିଲା । କିଛିକ୍ଷଣ ପରେ ଏହି ନାଦ ବାରମ୍ବାର ଧ୍ୱନିତ ହେଲା । ଏହି ଶବ୍ଦରେ ଆତଙ୍କ, ଅଶୁଭ ଏବଂ ଆଶଙ୍କାର ଶିହରଣ ରକ୍ତରେ ପ୍ରବାହିତ ହେଉଥିଲା । ହୃଦୟ ବିଚଳିତ ହୋଇ ଉଠୁଥିଲା । ପ୍ରାସାଦର ଦାସ-ଦାସୀ ଏହି ଅପରିଚିତ ଅଶୁଭନାଦର ଅଭିପ୍ରାୟ ଜାଣିବା ଲାଗି ପ୍ରାସାଦର ଛାତ ଉପରକୁ ଯାଇ ଦେଖିବାକୁ ଲାଗିଲେ ।

ନଗର ପଥରେ, ଚତୁଷ୍ପଥମାନଙ୍କରେ ବସ୍ତ୍ରାଚ୍ଛାଦିତ ନିଶାଣରେ ବାରମ୍ବାର ତିନିତିନି ଥର ଆଘାତ କରାଯାଉଥାଏ । ମାର୍ଗ ଓ ଉପମାର୍ଗମାନଙ୍କରେ ପେଡ଼ିପୁଟୁଳା ଧରି ଅସଂଖ୍ୟ ଜନସମୁଦାୟ ଚାଲିଯାଉଥିବା ଦୃଶ୍ୟ ହେଉଥାଏ ।

ବସ୍ତ୍ରଢଙ୍କା ନିଶାଣମାନଙ୍କର ବିଶୃଙ୍ଖଳିତ ସ୍ୱର ନଗରର ରୁଦ୍ଧ ହାହାକାର ଭଳି ଶୁଣା ଯାଉଥାଏ । ଶବ୍ଦର ଦାରୁଣତା ହିଁ ତା'ର ଅଭିପ୍ରାୟର ସୂଚନା ଦେଉଥାଏ ।

'ପ୍ରାଣରକ୍ଷା ନିମନ୍ତେ ପଳାୟନ କର ! ଶତ୍ରୁ ନଗର ମଧ୍ୟରେ ପ୍ରବେଶ କଲାଣି ।'

ପ୍ରାସାଦର ଦାସ-ଦାସୀମାନଙ୍କର ହୃଦୟ ବିଚଳିତ ହୋଇ ହାତପାଦ ଶିଥିଳ ହୋଇଯାଉଥିଲା । ଯେଉଁ ଦାସ-ଦାସୀମାନେ ପ୍ରାସାଦରେ ଅଧିକାର ଏବଂ ଆଦର ପ୍ରାପ୍ତ ହୋଇ ରହିଥିଲେ ସେମାନେ ଚିନ୍ତିତ ଓ ଭୟଭୀତ ଥିଲେ । ସେମାନେ ସ୍ୱାମୀ ଲାଗି ପ୍ରାଣପାତ କରିବାର ସମୟ ଉପସ୍ଥିତ ବୋଲି ଜାଣିଗଲେ । ଯେଉଁ ଦାସମାନଙ୍କର ଉପଯୋଗ ଦ୍ୱିପଦ ପଶୁମାନଙ୍କ ଭଳି ହେଉଥିଲା ସେମାନେ ମଧ୍ୟ ଚିନ୍ତିତ ହୋଇ ଉଠିଲେ, ଭୟଭୀତ ମନେ ହେଲେ । କେଜାଣି ଭାଗ୍ୟରେ କ'ଣ ଅଛି । ସେମାନଙ୍କ ନିମନ୍ତେ ପଳାୟନ କରିବାର ମଧ୍ୟ ଅବସର ନ ଥିଲା । ଭୟ ହେତୁ ସତେଯେପରି ସେମାନଙ୍କର ସର୍ବାଙ୍ଗ ଶିଥିଳ ହୋଇ ଯାଇଥିଲା । ସେମାନେ ଭୟର ପ୍ରତୀକ୍ଷାରେ ପ୍ରାଚୀରମାନଙ୍କରେ ଭରାଦେଇ ବସି ଯାଇଥିଲେ ।

ଜଣେ ସେନାପତି ଦୁଇଶହ ସଶସ୍ତ୍ର ସୈନିକଙ୍କୁ ସାଙ୍ଗରେ ନେଇ ପ୍ରାସାଦରେ ପ୍ରବେଶ କରି ରାଜମାତାଙ୍କର କକ୍ଷରେ ନିବେଦନ କରିବାକୁ ପ୍ରସ୍ତୁତ ହୋଇ ରହିଲା । ତାହା ପୂର୍ବରୁ ସାମନ୍ତ ପ୍ରତାପ ଶିବିକା ଏବଂ ବାହକମାନଙ୍କୁ ପ୍ରାସାଦର ଗୁହା ମାର୍ଗ ସମୀପକୁ ପହଞ୍ଚିବାକୁ ନିର୍ଦ୍ଦେଶ ଦେଇ ସାରିଥିଲେ ।

ସୂର୍ଯ୍ୟୋଦୟ ସମୟରେ ଆଚାର୍ଯ୍ୟ ମହାମାତ୍ୟଙ୍କୁ ରଣକ୍ଷେତ୍ରରୁ ସମାଚାର ପ୍ରାପ୍ତ ହେଲା ଯେ ମହାସେନାପତି ଭଦ୍ରକୀର୍ତ୍ତି ମଗଧ ସେନାକୁ ଅବରୋଧ କରିବାର ପ୍ରୟାସରେ ପ୍ରାୟ ଅର୍ଦ୍ଧରାତ୍ରିରେ ଧରାଶାୟୀ ହୋଇଛନ୍ତି । ସେନାପତି ଦିଗ୍‌ନାଥ ତଥାପି ମଧ୍ୟ ଯୁଦ୍ଧ କରୁଥିଲେ ।

ସେନାପତି ଦିଗ୍‌ନାଥ ମଗଧ ସେନାକୁ ଅଧିକ ସମୟ ପର୍ଯ୍ୟନ୍ତ ଅଟକାଇ ରଖିପାରିବେ ନାହିଁ ବୋଲି ମହାମାତ୍ୟ ଜାଣିପାରୁଥିଲେ । ଗୋଟାଏ ଦିନ ପୂର୍ବରୁ ସେ ଦଶସହସ୍ର ସୈନିକ ଦକ୍ଷିଣାପଥକୁ ପଠେଇ ସାରିଥିଲେ, ଯେଉଁମାନେ ଦକ୍ଷିଣାପଥ ଦୁର୍ଗକୁ ମହାରାଣୀଙ୍କ ନିମନ୍ତେ ସୁରକ୍ଷିତ ରଖିବେ ବୋଲି ଅଭିପ୍ରେତ ହୋଇ ରହିଥିଲେ ।

ମହାମାତ୍ୟ ବିଶ୍ୱସ୍ତ ସେନାପତି ସୋମନାଥଙ୍କୁ ତୁରନ୍ତ ଦୁଇଶତ ସଶସ୍ତ୍ର ସୈନିକ ନେଇ ରାଜପ୍ରାସାଦରୁ ପ୍ରସ୍ଥାନ କରିବାର ଆଦେଶ ଦେଇଥିଲେ । ଆଦେଶ ଥିଲା ସେମାନେ କାଳ ବିଳମ୍ବ ନ କରି ମହାରାଣୀ ଏବଂ ରାଜମାତାଙ୍କୁ ଗୁହା ମାର୍ଗରେ ଅରଣ୍ୟମଧ୍ୟସ୍ଥ ଦକ୍ଷିଣାପଥ ଦୁର୍ଗକୁ ନେଇଯିବା ପାଇଁ । ସେ ସ୍ୱୟଂ ଏକସହସ୍ର ସୈନ୍ୟ ନେଇ ଦକ୍ଷିଣାପଥର ମାର୍ଗ ସଂରକ୍ଷଣ ନିମନ୍ତେ ପ୍ରସ୍ଥାନ କରିଥିଲେ ।

ସେନାପତି ସୋମନାଥ ଅନ୍ତଃପୁରକୁ ଆସି ରାଜମାତାଙ୍କର କକ୍ଷଦ୍ୱାରରେ ଉପସ୍ଥିତ ହେଲେ । ସେ ଭୂସ୍ପର୍ଶ କରି ରାଜମାତାଙ୍କର ଅଭିବାଦନପୂର୍ବକ ସମ୍ମୁଖରେ ଦଣ୍ଡାୟମାନ ହୋଇ ରହିଲେ ଏବଂ କିୟତ୍‌କ୍ଷଣ ପରେ ମହାମାତ୍ୟଙ୍କର ସନ୍ଦେଶ ନିବେଦନ କଲେ ।

ରାଜମାତା ବିଚାରମଗ୍ନା ହୋଇ ନେତ୍ର ବୁଜି ରହିଲେ ଓ କିଛି କ୍ଷଣ ମୌନ ରହି ସୋମନାଥଙ୍କୁ କୋମଳ କଣ୍ଠରେ କହିଲେ— ସେନାପତି, ଧୈର୍ଯ୍ୟ ଧରନ୍ତୁ । ଭୟ-ଅଭୟ ମନୁଷ୍ୟର ମାନସିକ ଅବସ୍ଥାମାତ୍ର । ଭଗବାନ୍ ମାତ୍ର ରକ୍ଷକ ଅଟନ୍ତି । ସେ ରକ୍ଷା କରିବାକୁ ଇଚ୍ଛାକଲେ ଦକ୍ଷିଣାପଥରେ ରକ୍ଷା ମିଳିବ ସିନା ? ଭଗବାନ୍‌ଙ୍କର କୃପା ହେଲେ ଏଠାରେ ମଧ୍ୟ ରକ୍ଷା ମିଳିଯିବ । ମହାମାତ୍ୟଙ୍କର ଅସ୍ତ୍ର ଶସ୍ତ୍ରାସ୍ତ୍ର ଏବଂ ସୈନିକ କଦାପି ରକ୍ଷା କରିପାରିବେ ନାହିଁ । ରକ୍ଷା ମହାସ୍ଥବିର ଜୀବକଙ୍କର ସିଦ୍ଧି ଓ ଚମତ୍କାର ତଥା ଭଗବାନ୍‌ଙ୍କର କୃପା ହେତୁ ସମ୍ଭବ ହେବ । ସେନାପତି

ତୁରନ୍ତ ଯାଇ ମହାବିହାରରେ ମହାସ୍ଥବିରଙ୍କ ସମ୍ମୁଖରେ ପ୍ରାର୍ଥନା କରନ୍ତୁ । ଉପାସିକା ଦର୍ଶନର କୃପାଭିଳାଷ କରୁଛି । ମୁଁ ମହାସ୍ଥବିରଙ୍କର ଆଦେଶର ପ୍ରତୀକ୍ଷା କରିବି ।

ସେନାପତି ସୋମନାଥଙ୍କୁ ଦ୍ୱିଧାଗ୍ରସ୍ତ ଦେଖି ରାଜମାତା କହିଲେ– 'ସେନାପତି, ଧୈର୍ଯ୍ୟ ଧରନ୍ତୁ, ମୁଁ ଭୟ ଲାଗି ହିଁ ଉପାୟ କରୁଛି ।'

ସୋମନାଥ ନତଶିର, କରବଦ୍ଧ ହୋଇ ନିବେଦନ କଲେ– 'ଭଗବତୀ ରାଜମାତାଙ୍କର ଆଦେଶ ଏବଂ ଧର୍ମନିଷ୍ଠା ଶିରୋଧାର୍ଯ୍ୟ; ମାତ୍ର ବର୍ତ୍ତମାନ ପରିସ୍ଥିତି ଅତ୍ୟନ୍ତ ବିକଟ । ମହାମାତ୍ୟ ଦକ୍ଷିଣାପଥ ଅଭିମୁଖରେ ପ୍ରସ୍ଥାନ କରିସାରିଛନ୍ତି । ଶତ୍ରୁର ମାର୍ଗ ଅବରୋଧ କରିବାର ବର୍ତ୍ତମାନ କୌଣସି ଉପାୟ ଓ ସାମର୍ଥ୍ୟ ନାହିଁ । ଯେକୌଣସି ମୁହୂର୍ତ୍ତରେ ଶତ୍ରୁର ନଗର ମଧ୍ୟରେ ପ୍ରବେଶ କରିବାର ଆଶଙ୍କା ଅଛି ।'

ରାଜମାତାଙ୍କୁ ସୋମନାଥଙ୍କର ବିରୋଧ ଅପ୍ରିୟ ମନେହେଲା । ସେ ଦୃଢ଼ତା ସହକାରେ ଆଦେଶ ଦେଲେ– 'ସେନାପତି ଭଗବାନ୍ ମହାସ୍ଥବିରଙ୍କର ସେବାରେ ସନ୍ଦେଶ ନେଇ ଉପସ୍ଥିତ ହୁଅନ୍ତୁ । ଉପାସିକା ଗୁରୁଙ୍କର ଆଦେଶ ବିନା ନଗରରୁ ପ୍ରସ୍ଥାନ କରିବ ନାହିଁ ।'

ସୋମନାଥ ବାଧ୍ୟ ହୋଇ ରାଜମାତାଙ୍କର କକ୍ଷରୁ ପ୍ରାଙ୍ଗଣକୁ ଆସିଲେ । ସେ ଚାରିଜଣ ଅଶ୍ୱାରୋହୀ ସୈନିକଙ୍କୁ ଆଦେଶ ଦେଲେ– ଗୋଟାଏ ଅଶ୍ୱ ମହାସ୍ଥବିରଙ୍କର ବାହନ ନିମନ୍ତେ ନେଇ ଚତୁଷ୍ପାର୍ଶ୍ୱରେ ସଂରକ୍ଷଣ ଦେଇ ବିନୟ ପ୍ରାର୍ଥନା ପୂର୍ବକ ମହାସ୍ଥବିରଙ୍କୁ ରାଜପ୍ରାସାଦକୁ ନେଇଆସିବେ ।

ସେନାପତି ବାଧ୍ୟ ହୋଇ ଅନ୍ତଃପୁରର ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ ପ୍ରତୀକ୍ଷା କରିବାକୁ ଲାଗିଲେ । ମହାରାଣୀ ଓ ରାଜମାତା ଶତ୍ରୁ ହାତରେ ଆସନ୍ନ ବନ୍ଦୀ ହେବେ ବୋଲି ସେ ସର୍ବଦା ଆଶଙ୍କା କରୁଥିଲେ ଏବଂ ତାଙ୍କର ହୃଦୟ ବାରମ୍ବାର ମଥିତ ହେଉଥାଏ ।

ସଭାଭବନରେ ପୁତ୍ତଳିକାଙ୍କୁ ନେଇ କ୍ରୀଡ଼ାରତା ଅମିତା ପୁନଶ୍ଚ ମାତାଙ୍କୁ ସ୍ମରଣ କଲେ । ସେ ମାତାଙ୍କ ପାଖକୁ ଯିବେ ବୋଲି ଆଗ୍ରହ ପ୍ରକାଶ କଲେ ଏବଂ ରାଜମାତାଙ୍କର ପ୍ରାଙ୍ଗଣକୁ ଦଉଡ଼ିଗଲେ ।

ରାଜମାତା ସମାଧିସ୍ଥ ଅବସ୍ଥାରେ ବୁଦ୍ଧ ବଚନ ପାଠ କରୁଥିଲେ । ଅମିତା ଦଉଡ଼ିଯାଇ ତାଙ୍କୁ କୁଣ୍ଢେଇ ପକେଇଲେ । ରାଜମାତା ପାଠରେ ବିଘ୍ନ ନ ଆସୁ ବୋଲି କନ୍ୟାର ସ୍ପର୍ଶରେ ଆଲୋଡ଼ିତ ସ୍ନେହ ପୁଲକ ଚାପି ଗମ୍ଭୀର ଭାବରେ ଆଶୀର୍ବାଦ ଦେଲେ– 'ତୋ'ର କଲ୍ୟାଣ ହେଉ, ଧର୍ମ ପ୍ରତି ଅତୁଟ ଶ୍ରଦ୍ଧା

ରହିଥାଉ । ଈଶ୍ୱର ତୋ'ର ରକ୍ଷା କରନ୍ତୁ ।' ଏବଂ ଅଗଣାରେ ଯାଇ ଖେଳିବାକୁ କହିଲେ !

ରାଜମାତା ପୁନଶ୍ଚ ଆଖି ବୁଜି ବଚନ ପାଠ କରୁଥିବା ସହିତ ମହାସ୍ଥବିରଙ୍କର ଉତ୍ତରର ମଧ୍ୟ ପ୍ରତୀକ୍ଷା କରୁଥିଲେ ।

ଅମିତା ରାଜମାତାଙ୍କର କକ୍ଷରୁ ଆପଣା କକ୍ଷର ପ୍ରାଙ୍ଗଣକୁ ଆସିବା ସମୟରେ ଅଳିନ୍ଦମାନଙ୍କରେ ଏବଂ ପ୍ରାଙ୍ଗଣରେ ଅନେକ ସଶସ୍ତ୍ର ସୈନିକଙ୍କୁ ଦେଖି ହିତାକୁ ପ୍ରଶ୍ନ କଲେ – 'ହିତୁ, ଆଜି ଏଠାରେ ଏତେ ସୈନିକ କାହିଁକି ?'

ହିତା ଓ ଉଦ୍ଧାଳର ହୃଦୟ ଆସନ୍ନ ଭୟରେ ଥରୁଥିଲା । ଉଭୟେ ସାମନ୍ତଙ୍କର ନିର୍ଦ୍ଦେଶରେ ମହାରାଣୀଙ୍କୁ ଆପଣାର ହାତ ପାଆନ୍ତାରୁ ଦୂରକୁ ଯିବାକୁ ଦେଉ ନ ଥିଲେ । ବାଳିକା ମହାରାଣୀଙ୍କୁ ତ୍ରସ୍ତ କରିବା ମଧ୍ୟ ଅନୁଚିତ ।

ହିତା ଉତ୍ତର ଦେଲା -- 'ଭଗବତୀ, ସୈନିକମାନେ ମହାରାଣୀ ଓ ରାଜମାତାଙ୍କୁ ପ୍ରଣାମ କରିବାକୁ ଆସିଛନ୍ତି ।'

ଅମିତାଙ୍କର ଦୃଷ୍ଟି ଦୋଳି ଉପରେ ପଡ଼ିଲା । ଅଳିନ୍ଦରୁ କକ୍ଷର ପଛପଟେ ଆମ୍ବଗଛର ଡାଳରେ ଦୋଳି ବନ୍ଧା ହୋଇ ରହିଥିଲା । ଅମିତା ଦୋଳିରେ ଝୁଲିବାକୁ ଇଚ୍ଛା ପ୍ରକାଶ କଲେ ।

ହିତା ଓ ଉଦ୍ଧାଳ ମହାରାଣୀଙ୍କୁ ସୁରକ୍ଷିତ ସ୍ଥାନରେ ରଖିବା ଉଦ୍ଦେଶ୍ୟରେ ଆପଣା କକ୍ଷରେ ଅଥବା ସଭାଭବନରେ ପୁତ୍ତଳିକାଙ୍କୁ ନେଇ ଖେଳିବାକୁ କହିଲେ ମାତ୍ର ବାଳିକାର ଅଝଟପଣରେ ବାଧ୍ୟ ହୋଇ ତାଙ୍କୁ ଦୋଳିରେ ଝୁଲେଇବାକୁ ନେଇଗଲେ ।

ଚରମ ସଂକଟ ଓ ଭୟର ସେଇ ସମୟରେ ରାଜପ୍ରାସାଦ ମଧ୍ୟରେ ଅନେକ ଘଟଣା ଏକାସାଙ୍ଗରେ ଘଟି ଯାଉଥିଲା ।

ଅମିତା ଶରତ ମଧ୍ୟାହ୍ନର ସୁନେଲି ଖରାରେ ଦୋଳି ଗୀତ ଗାଇ ଝୁଲୁଥିଲେ ।

ରାଜପ୍ରାସାଦରେ ଆତଙ୍କ ଭରି ରହିଥିଲା । ଆତଙ୍କ-ଅଧୀର ଦାସ ସୂପ ବଭ୍ରୁକୁ ଖାଇବାକୁ ଦେବା ଭୁଲି ଯାଇଥିଲା । ବଭ୍ରୁ ମଧ୍ୟ ପ୍ରତିକୋଣରେ ଭୟ ଓ ଆତଙ୍କ ଆଘ୍ରାଣ କରୁଥିଲା । ସେ ନିଜର ସଂପୂର୍ଣ୍ଣ ଶକ୍ତି ଖଟେଇ ଖୁଣ୍ଟି ଉପାଡ଼ି ନେଇ ତଳେ ଜଞ୍ଜିର ଘୋଷାରି ଘୋଷାରି ଅମିତାଙ୍କୁ ଖୋଜି ଖୋଜି ତାଙ୍କ ପାଖରେ ପହଞ୍ଚି ଯାଇଥିଲା ଏବଂ ତାଙ୍କର ରକ୍ଷା ଉଦ୍ଦେଶ୍ୟରେ ସତର୍କ ହୋଇ ବସି ଯାଇଥିଲା ।

ରାଜମାତା ଅଟଳ ବିଶ୍ୱାସରେ ବଚନ ପାଠ କରି ମହାସ୍ଥବିର ଜୀବକ ଦ୍ୱାରା ଭଗବାନ୍‌ଙ୍କ ଚମତ୍କାରିତାରେ ରକ୍ଷା ପାଇବାର ପ୍ରତୀକ୍ଷା କରୁଥିଲେ ।

ସେନାପତି ସୋମନାଥ ଅନ୍ତଃପୁରର ଦ୍ୱାରରେ ଅତ୍ୟନ୍ତ ବ୍ୟାକୁଳ ଚିତ୍ତରେ ମହାସ୍ଥବିର ଜୀବକଙ୍କୁ ଆଣିବାକୁ ମହାବିହାରକୁ ଯାଇଥିବା ସୈନିକମାନଙ୍କର ଫେରିବା ପଥକୁ ଅନେଇଁ ରହିଥିଲେ । ତାଙ୍କର ହୃଦୟ ବିହ୍ୱଳିତ ହୋଇ ଉଠୁଥିଲା, କାରଣ ବିଳମ୍ବ ଫଳରେ ଯୁଦ୍ଧ କରି ପ୍ରାଣବଳି ଦେବା ପରେ ମଧ ସେ ମହାରାଣୀ ରାଜମାତାଙ୍କୁ ସୁରକ୍ଷା ଦେଇପାରିବ ନାହିଁ । ସହସା ତାଙ୍କୁ ଭେରୀ, ନରସିଂହା ଓ ନିଶାଣ ଟମକର ସମ୍ମିଳିତ ସ୍ୱର ଶୁଣାଗଲା ।

ଏହି ନରସିଂହା ଓ ନିଶାଣର ଧ୍ୱନି କଳିଙ୍ଗର ଧ୍ୱନିଠାରୁ ଭିନ୍ନ ଥିଲା । ସୋମନାଥ ଅନୁମାନ କରିନେଲେ ଯେ ମଗଧ ସେନା ଅବଶ୍ୟ ନଗର ମଧ୍ୟରେ ପ୍ରବେଶ କରୁଛି । ସେନାପତିଙ୍କ ନିମନ୍ତେ ଆଉ ପ୍ରତୀକ୍ଷା କରିବା ଅସମ୍ଭବ ଥିଲା । ମାତ୍ର ମହାସ୍ଥବିରଙ୍କୁ ଆଣିବାକୁ ଯାଇଥିବା ସୈନିକ ସେ ପର୍ଯ୍ୟନ୍ତ ଫେରି ନ ଥିଲେ ।

ସେନାପତି ପୁନଶ୍ଚ ରାଜମାତାଙ୍କର କକ୍ଷଦ୍ୱାରରେ ଉପସ୍ଥିତ ହୋଇ ପ୍ରାର୍ଥନା କଲେ – 'ପରମ ଭଗବତୀ, ଆଉ ପ୍ରତୀକ୍ଷା କରିବାର ସମୟ ନାହିଁ ।'

ବଚନ ପାଠ ହେତୁ ମୌନ ଓ ସମାଧିସ୍ଥ ମୁଦ୍ରିତନେତ୍ରା ରାଜମାତା କୌଣସି ଉତ୍ତର ଦେଲେ ନାହିଁ କିମ୍ବା ଆଖି ଖୋଲି ଚାହିଁଲେ ନାହିଁ ।

ସେନାପତି ପୁନଶ୍ଚ କିଞ୍ଚିତ ଉଚ୍ଚୈସ୍ୱରରେ ପ୍ରାର୍ଥନା କଲେ ।

ମାତ୍ର ରାଜମାତା ସେହିଭଳି ମୌନ ଏବଂ ଅବିଚଳ ରହିଥିଲେ ।

ସୋମନାଥ ତୃତୀୟବାର ଅଧିକ ଉଚ୍ଚୈସ୍ୱରରେ ପ୍ରାର୍ଥନା କଲେ । ସେତିକିବେଳେ ରାଜମାତା ମନ୍ତ୍ର ସମାପ୍ତ କରି ଭଗବାନ୍‌ଙ୍କୁ ପ୍ରଣାମ କରି ସେନାପତିଙ୍କୁ ଦେଖିଲେ ।

ସେନାପତି ଅତ୍ୟନ୍ତ ଅନୁନୟୀ ହୋଇ ପ୍ରାର୍ଥନା କଲେ – 'ଭଗବତୀ ରାଜମାତା, ଶତ୍ରୁ ନଗର ପ୍ରବେଶର ତୂର୍ଯ୍ୟନାଦ କରିସାରିଲାଣି । ତା' ପାଇଁ ମାର୍ଗରେ କୌଣସି ପ୍ରକାର ବାଧା ନାହିଁ । ସେ ରାଜପ୍ରାସାଦ ଅଭିମୁଖରେ ଅଗ୍ରସର ହେଉଛି । ଗୁହା ମାର୍ଗରେ ଶିବିକା ପ୍ରସ୍ତୁତ ହୋଇ ରହିଛି । ଭଗବତୀ ଶିବିକାକୁ ଯିବାର କୃପା କରନ୍ତୁ ।'

ରାଜମାତା ପ୍ରଶ୍ନ କଲେ – 'ଗୁରୁ ଭଗବାନ୍ ଆସିଲେ କି ?'

ସେନାପତି ଉତ୍ତର ଦେଲେ – 'ଚାରିଜଣ ଅଶ୍ୱାରୋହୀ ସୈନିକ ଅଶ୍ୱନେଇ ଯାଇଛନ୍ତି ମାତ୍ର ଏ ପର୍ଯ୍ୟନ୍ତ ଫେରି ନାହାନ୍ତି ।'

'ଉପାସିକା ଗୁରୁଙ୍କର ଆଦେଶ ବିନା ପ୍ରାସାଦ ଛାଡ଼ି ଯିବ ନାହିଁ ।' ରାଜମାତା ଉତ୍ତର ଦେଲେ ଓ ପୁଣି ଆଖି ବୁଜିନେଲେ ।

ସେନାପତି ଅନୁଭବ କଲେ ଯେମିତି ତାଙ୍କର ପାଦତଳେ ଧରିତ୍ରୀ ଫାଟି ଯାଉଛି । ସେ ଅତଳ ଗହ୍ୱରକୁ ଖସି ଚାଲିଛନ୍ତି ଏବଂ ବର୍ତ୍ତମାନ ପ୍ରତ୍ୟେକ ଦୃଷ୍ଟିରୁ ନିରୁପାୟ ! ସେଭଳି ସ୍ଥିତିରେ ମନେ ମନେ ସ୍ଥିର କରି ଉପାୟ ଅନ୍ୱେଷଣରେ ପ୍ରାଙ୍ଗଣକୁ ଆସି ସୈନିକମାନଙ୍କୁ ଆଦେଶ ଦେଲେ –

'ଜଣେ ଅଶ୍ୱାରୋହୀ ତୁରନ୍ତ ଯାଉ, ଦେଖୁ, ମହାସ୍ଥବିରଙ୍କୁ ଆଣିବାକୁ ଯାଇଥିବା ଅଶ୍ୱାରୋହୀ ଏ ପର୍ଯ୍ୟନ୍ତ କାହିଁକି ଫେରିଲେ ନାହିଁ ! ପଚାଶ ଧନୁର୍ଦ୍ଧାରୀ ସୈନିକ ପ୍ରାସାଦ ଉପରକୁ ଯାଇ ଶରସଂଧାନ କରନ୍ତୁ । ଏକଶତ ସୈନ୍ୟ ଅନ୍ତଃପୁରକୁ ଘେରିରହି ତା'ର ସୁରକ୍ଷା ବ୍ୟବସ୍ଥା କରନ୍ତୁ । ପଚାଶଜଣ ଗୁହାମାର୍ଗରେ ସତର୍କ ରହନ୍ତୁ ।'

ଯେଉଁ ସମୟରେ ସେନାପତି ସୋମନାଥ ପ୍ରାସାଦରେ ଅନ୍ତିମ ଆମରଣ ସଂଗ୍ରାମ ପାଇଁ ପ୍ରସ୍ତୁତ ହେଉଥିଲେ ସେତେବେଳେ ଅକସ୍ମାତ୍ ଅମିତା ଆକାଶକୁ ଦେଖିଲେ । ଦେଖିଲେ, ଅତି ପାଖରେ କଳାକଳା ବାଦଲ ଆକାଶକୁ ଉଠୁଛି ଏବଂ ମଝିରେ ମଝିରେ ଲାଲ ଲାଲ ଶିଖା ଭଳି ବିଦ୍ୟୁତ୍ ଝଲସି ଯାଉଛି ।

ଅମିତା ବିସ୍ମୟରେ ପଚାରିଲେ – 'ହିତ୍ରୁ, ଆକାଶରେ ଏହା କ'ଣ ?'

ଆକାଶକୁ ଉଠିଯାଉଥିବା ବିରାଟ ଧୂମ ଏବଂ ଅଗ୍ନିଶିଖା ଦେଖି ହିତା, ବାପୀ ଓ କଞ୍ଚୁକୀ ଭୟରେ ଥରିଉଠିଲେ । ନଗରପଟୁ ଏକ ଅସ୍ପଷ୍ଟ ଅଥଚ ଆର୍ତ୍ତ ହୃଦୟ ଦ୍ରାବକ କୋଳାହଳ ଶୁଣା ଯାଉଥିଲା ।

ଉଦ୍ଧାଳ ବାଳିକା ମହାରାଣୀଙ୍କର ରକ୍ଷା ନିମନ୍ତେ କକ୍ଷକୁ ନେଇଯିବାକୁ କହିଲା ।

– 'ଭଗବତୀ ମହାରାଣୀ, ଭୟଙ୍କର ସଂକଟକାଳ ଉପସ୍ଥିତ । ଶତ୍ରୁ ନଗରରେ ନିଆଁ ଲଗେଇ ସାରିଛି । ମହାରାଣୀ ରକ୍ଷା ନିମନ୍ତେ କକ୍ଷରେ ପଦାର୍ପଣ କରନ୍ତୁ ।'

ଅମିତା ଉଦ୍ଧାଳର କଥା ଶୁଣିଲେ ନାହିଁ । ବାଳିକାଙ୍କର ମନ ବୃଦ୍ଧର ଚେତାବନୀ ଅପେକ୍ଷା ଆକାଶରେ ଉଠୁଥିବା ଧୂଆଁ ଓ ନିଆଁ ପ୍ରତି ଆକର୍ଷିତ ହୋଇଥିଲା । ସେ କୁରୁଳିଉଠି କହିଲେ – 'ମୁଁ ପ୍ରାସାଦର ଛାତ ଉପରକୁ ଯାଇ ଦେଖିବି । ଆହା, କେତେ ସୁନ୍ଦର ! ମୁଁ ଯାଇ ଦେଖିବି ।' ଅମିତା ପ୍ରାସାଦ ଉପରକୁ ଯିବା ପାଇଁ ଚଉଡ଼ା ପାହାଚ ପାଖକୁ ଦଉଡ଼ିଗଲେ ।

ହିତା ବାପୀ ଓ କଞ୍ଚୁକୀ ବାଳିକା ମହାରାଣୀଙ୍କର ପଛେ ପଛେ ତାଙ୍କୁ ଡାକି ଡାକି ଦୌଡ଼ିଗଲେ... । 'ନା' ନା... ଭଗବତୀ ମହାରାଣୀ ତାହା କରନ୍ତୁ ନାହିଁ । ମା' ଛାତ ଉପରକୁ ଯାଆନ୍ତୁ ନାହିଁ ।'

ବଭ୍ରୁ ବାଳିକା ସ୍ୱାମିନୀ ଏବଂ ତାଙ୍କ ପଛରେ ଅନ୍ୟମାନଙ୍କୁ ଦଉଡୁଥିବା ଦେଖି ଚଞ୍ଚଳ ଦଉଡ଼ିଯାଇ ଅମିତାଙ୍କର ସାଙ୍ଗରେ ଦଉଡ଼ିବା ଆରମ୍ଭ କରିଦେଲା । ଅମିତା

ସେବକମାନଙ୍କର ଚେତାବନୀର ଉପେକ୍ଷା କରି କହି ଚାଲିଥାଆନ୍ତି... 'ମୁଁ ଯିବି... ଯିବି, ଯାଇ ଦେଖିବି ।'

ଅମିତା ପହଞ୍ଚିବା ପୂର୍ବରୁ ସୋପାନ ଉପରେ ଜଞ୍ଜିର ଟାଣି ଟାଣି ବଭ୍ରୁ ଆଗ ପହଞ୍ଚିଗଲା । ବଭ୍ରୁର ପଛରେ ଅମିତା ଓ ଅମିତାଙ୍କର ପଛେ ପଛେ ହିତା ଆପଣା ବାହୁ ମେଲେଇ ଦଉଡ଼ି ଚାଲିଥାଏ ! ହିତାର ପଛେ ପଛେ ବାପୀ ଓ ଉଦ୍ଦାଳ ଆପଣା ଦେହପୀଡ଼ା ଭୁଲି ପାହାଚ ଚଢ଼ି ଚଢ଼ି ଅନୁସରଣ କରୁଥାନ୍ତି ।

ଠିକ୍ ସେହି ସମୟରେ ମହାସ୍ଥବିରଙ୍କୁ ସନ୍ଦେଶ ଦେବାକୁ ଯାଇଥିବା ଚାରିଜଣ ଅଶ୍ୱାରୋହୀ ଅଶ୍ୱମାନଙ୍କୁ ବାହାରେ ରଖି ଅନ୍ତଃପୁରକୁ ଆସିଲେ । ସେନାପତି ସୋମନାଥ ସୈନିକମାନଙ୍କ ସମ୍ମୁଖକୁ ଆସି ବ୍ୟଗ୍ରକଣ୍ଠରେ ପଚାରିଲେ – 'ମହାସ୍ଥବିର କେଉଁଠି ?'

ସବା ଆଗରେ ରହିଥିବା ସୈନିକ ଉତ୍ତର ଦେଲା – 'ସ୍ୱାମୀ, ମହାସ୍ଥବିର ଆଜି ପ୍ରଭାତରୁ ନଗରରୁ ପ୍ରସ୍ଥାନ କରି ଯାଇଛନ୍ତି ।'

ସୋମନାଥ ସେଇ ଚାରିଜଣ ସୈନିକଙ୍କୁ ନେଇ ପୁଣି ରାଜମାତାଙ୍କର କକ୍ଷଦ୍ୱାରକୁ ଦଉଡ଼ିଗଲା । ଶୀଘ୍ରତା ସହକାରେ ଭୂସ୍ପର୍ଶ ପ୍ରଣାମ କରି ଉଚ୍ଚୈସ୍ୱରରେ ପ୍ରାର୍ଥନା କଲେ – 'ପରମ ଭଗବତୀ ଆଉ ବିଳମ୍ୱ କରନ୍ତୁ ନାହିଁ । ମହାସ୍ଥବିରଙ୍କ ନିକଟକୁ ଯାଇଥିବା ସୈନିକମାନେ ଫେରିଆସିଛନ୍ତି । କହୁଛନ୍ତି ମହାସ୍ଥବିର ନଗର ତ୍ୟାଗ କରିଗଲେଣି । ସେ ନଗରରେ ନାହାନ୍ତି ।'

ସୋମନାଥଙ୍କର କଥନ ଶୁଣି ରାଜମାତାଙ୍କର ମୁଖମଣ୍ଡଳରୁ ଦୃଢ଼ତାର ଭାବ ମଉଳିଗଲା । ସେ ସମ୍ବାଦ ନେଇ ଆସିଥିବା ସୈନିକମାନଙ୍କୁ ଜିଜ୍ଞାସୁ ଦୃଷ୍ଟିରେ ଅନେଇଲେ । ସୈନିକମାନେ ଭୂମି ସ୍ପର୍ଶ କରି ଅଭୟଦାନ ନିମନ୍ତେ ପ୍ରାର୍ଥନା କଲେ ଓ ନିବେଦନ କଲେ –

'ମହାବିହାରର ପ୍ରତ୍ୟେକ ସ୍ଥାନ ଦେଖିଛୁ । ଅଧିକାଂଶ ଭିକ୍ଷୁ ମହାବିହାର ତ୍ୟାଗକରି ଚାଲିଗଲେଣି । ଏକ ଅତ୍ୟନ୍ତ ବୃଦ୍ଧ, କାତର ଭିକ୍ଷୁ ବିଳାପ କରି କହିଲେ ମହାସ୍ଥବିର ପ୍ରଭାତକାଳରେ ପୀତ ଚୀବର ତ୍ୟାଗ କରି, ଗୋଟାଏ ମାତ୍ର କୌପୀନ ଧାରଣ କରି, ଶରୀରରେ ବିଭୂତି ଲଗେଇ ଅଘୋର ବେଶରେ ବିହାରରୁ ପ୍ରସ୍ଥାନ କଲେ ।'

ସୈନିକ କହିଲା – 'ନଗର ଶତ୍ରୁ ସୈନ୍ୟରେ ଭରିଗଲାଣି । ଶତ୍ରୁ ସୈନ୍ୟ ନାଗରିକମାନଙ୍କର ସଂପତ୍ତି ବଳାତ୍ ହରଣ କରି ବାସଗୃହ ଜଳେଇ ଦେଉଛନ୍ତି । ଶତ୍ରୁପକ୍ଷର ଅଶ୍ୱାରୋହୀ ଦଳ ତାଙ୍କର ପଛେ ପଛେ ରାଜପଥରେ ପ୍ରାସାଦ ଅଭିମୁଖକୁ

ଆସିଛି । ଶତ୍ରୁ ଅଶ୍ୱାରୋହୀମାନଙ୍କ ପଛରେ ହସ୍ତୀଦଳ । ସେମାନେ ବର୍ତ୍ତମାନ ପ୍ରାସାଦ ଦ୍ୱାରଠାରୁ ବେଶୀ ଦୂରରେ ନ ଥିବେ ।'

ସମ୍ବାଦ ଶୁଣି ରାଜମାତା କିଛିକାଳ ଆଖିବୁଜି ରହିଲେ । ଦୀର୍ଘନିଃଶ୍ୱାସ ପକେଇ କହିଲେ – 'ସେନାପତି, ବାଳିକା ମହାରାଣୀଙ୍କୁ ରକ୍ଷା କରନ୍ତୁ ।'

ସୋମନାଥ ରାଜମାତାଙ୍କର ଆଦେଶର ସ୍ୱୀକୃତି ସ୍ୱରୂପ ସଂକେତରେ ନତଶିର ସୈନିକଙ୍କୁ ଆଦେଶ ଦେଲେ – 'ପରମ ଭଗବତୀ ମହାରାଣୀ ତୁରନ୍ତ ଦାସୀ ହିତା ଓ କଞ୍ଚୁକୀ ଉଦ୍ଧାଳ ସହିତ ଗୁହାଦ୍ୱାରରେ ପଦାର୍ପଣ କରନ୍ତୁ । ଗୁହା ମାର୍ଗରେ ଶିବିକା ପ୍ରସ୍ତୁତ ହୋଇ ରହିଛି ।'

ସୈନିକମାନେ ବାଳିକା ମହାରାଣୀଙ୍କର କକ୍ଷ ଅଭିମୁଖରେ ଦଉଡ଼ିଗଲେ ।

ସୋମନାଥ ରାଜମାତାଙ୍କୁ ସମ୍ବୋଧନ କରି କହିଲେ 'ସେବକ ପରମ ଭଗବତୀଙ୍କୁ ଗୁହାମାର୍ଗ ଦେଖାଇ ନେବ, ଆସନ୍ତୁ ।'

ରାଜମାତା ସେନାପତିଙ୍କ ଦ୍ୱାରା ପ୍ରଦର୍ଶିତ ମାର୍ଗରେ ପାହାଚ ପରେ ପାହାଚ ଓହ୍ଲେଇବାକୁ ଲାଗିଲେ ।

ସେନାପତି ସୋମନାଥଙ୍କର ଆଦେଶରେ ଚାରିଜଣଯାକ ସୈନିକ ମହାରାଣୀଙ୍କୁ ଗୁହାଦ୍ୱାରକୁ ଆଣିବା ଲାଗି ଅନ୍ତଃପୁର ପ୍ରାଙ୍ଗଣରେ ପ୍ରବେଶ କଲେ । ସେମାନଙ୍କୁ ରାଜପ୍ରାସାଦର ମୁଖ୍ୟ ଦ୍ୱାରରୁ ରଣହୁଂକାର ଶୁଣାଗଲା ।

'କଳିଙ୍ଗ ରାଜେଶ୍ୱରୀଙ୍କର ଜୟ !'

'ଦେବପ୍ରିୟ ମଗଧ ସମ୍ରାଟଙ୍କର ଜୟ !'

ଧାତୁନିର୍ମିତ ଢାଲ ଉପରେ ଖଡ୍‌ଗ ଓ ବର୍ଚ୍ଛାର ପ୍ରଚଣ୍ଡ ଆଘାତ ଘୋଷ ନିନାଦିତ ହେବାକୁ ଲାଗିଲା । ମହାରାଣୀଙ୍କର କକ୍ଷ ସମ୍ମୁଖରେ ସେତେବେଳେ ମଧ୍ୟ କର୍ତ୍ତବ୍ୟ ତତ୍ପରତାରେ ଯବନୀ ଖଡ୍‌ଗ ନେଇ ଦଣ୍ଡାୟମାନ ହୋଇ ରହିଥାଏ । ଯବନୀ ସୈନିକମାନଙ୍କୁ କହିଲା – 'ବାଳିକା ମହାରାଣୀ କୌତୂହଳରେ ପ୍ରାସାଦର ଛାତ ଉପରକୁ ଦଉଡ଼ି ଯାଇଛନ୍ତି ।'

ସୈନିକମାନେ ମହାରାଣୀଙ୍କୁ ଆଣିବାଲାଗି ଛାତ ଉପରକୁ ଚାଲିଗଲେ ।

ବଭ୍ରୁ ଅମିତାଙ୍କ ପୂର୍ବରୁ ଛାତ ଉପରେ ପହଞ୍ଚି ଯାଇଥିଲା । ସେଠାରେ ଅନେକ ଅପରିଚିତ ସଶସ୍ତ୍ର ସୈନିକଙ୍କୁ ଧନୁରେ ଶର ଯୋଖି ରହିଥିବା ଦେଖି ଆଶଙ୍କାରେ ପ୍ରଚଣ୍ଡ ସ୍ୱରରେ ଭୁକିବାକୁ ଲାଗିଲା । ଅମିତା ଛାତ ଉପରେ ପହଞ୍ଚିବା ପରେ ତାଙ୍କର ରକ୍ଷାଲାଗି ଚାରିପଟେ ଘୂରି ଘୂରି ଭୁକିବାକୁ ଲାଗିଲା ।

ଅମିତା ସବା ଉପର ଛାତ ଉପରକୁ ଯାଇ ଦେଖିଲେ ନଗରର ଅନେକ ସ୍ଥାନରେ ଧୂଆଁର କଳାବାଦଲ ଏବଂ ନିଆଁର ଆକାଶଚୁମ୍ବୀ ଶିଖା ଉଠୁଛି । ନଗରର ଆକାଶ, କାଠ, ବସ୍ତ୍ର, ଅନ୍ନ ଜଳି ଯାଉଥିବାର ଗନ୍ଧ ଏବଂ ଭୟାତୁର ଚିତ୍କାରରେ ଭରିଯାଇଛି । ନଗରର ପଥ ଓ ବୀଥୀମାନଙ୍କରେ ଅନେକ ନର-ନାରୀ ପେଡ଼ିପୁଟୁଳା ମୁଣ୍ଡେଇ ଏଣେ-ତେଣେ ଧାଁ' ଦଉଡ଼ କରୁଛନ୍ତି । ଅନ୍ୟ କେତେକ ଲୋକ ବର୍ଚ୍ଛା ଓ ଖଣ୍ଡାଧରି ପଳାୟନ କରୁଥିବା ଲୋକଙ୍କ ପଛରେ ଦଉଡ଼ି ସେମାନଙ୍କର ପେଡ଼ିପୁଟୁଳା ଛଡ଼େଇ ନେଉଛନ୍ତି, ମାରି ହାଣି ପକେଇ ଦେଉଛନ୍ତି ।'

ଅମିତା ଏହି ଦାରୁଣ ଦୃଶ୍ୟ ଦେଖି ବ୍ୟାକୁଳ ହୋଇ ଉଠିଲେ । ସେ ପାଟି କରି ପଚାରିଲେ– 'କ'ଣ ସବୁ ହେଉଛି ସେଠି ? ସେମାନେ କିଏ, ଯୋଉମାନେ ଛଡ଼େଇ ନେଉଛନ୍ତି, ଲୁଣ୍ଠନ କରୁଛନ୍ତି ? କିଏ ସବୁ ସେମାନେ ଯେଉଁମାନେ ଲୋକଙ୍କୁ ମାରୁଛନ୍ତି ?

ସୋମନାଥଙ୍କର ଆଜ୍ଞାରେ ମହାରାଣୀଙ୍କୁ ଖୋଜି ଖୋଜି ଆସିଥିବା ସୈନିକମାନେ ଛାତ ଉପରେ ପହଞ୍ଚିଲେ । ସଶସ୍ତ୍ର ସୈନିକମାନଙ୍କୁ ମହାରାଣୀଙ୍କ ଆଗକୁ ଆସୁଥିବା ଦେଖି ବଭ୍ରୁ ଭୁକିବା ଆରମ୍ଭ କରି ସେମାନଙ୍କୁ ଅବରୋଧ କରି ରଖିନେଲା ।

ସୈନିକମାନେ ଭୂମି ସ୍ପର୍ଶ କରି ମହାରାଣୀଙ୍କୁ ପ୍ରଣାମ କଲେ । ଅଣନିଃଶ୍ୱାସୀ ହୋଇ ହିତା ଓ ଉଦ୍ଧାଳକୁ ସମ୍ବୋଧନ କରି କହିଲେ 'ମହାଭୟ ! ଶତ୍ରୁ ପ୍ରାସାଦ ଅଗଣାରେ ପହଞ୍ଚିସାରିଛି । ସେନାପତିଙ୍କ ନିର୍ଦ୍ଦେଶ, ମହାରାଣୀ ରକ୍ଷା ଲାଗି ଗୁହ୍ୟମାର୍ଗର କକ୍ଷରେ ପଦାର୍ପଣ କରନ୍ତୁ ।'

ଅମିତା ସୈନିକମାନଙ୍କର କଥନର ଉପେକ୍ଷା କଲାଭଳି ଉଦ୍ଧାଳକୁ ପଚାରିଲେ– 'ମାତୁଳ, ଏମାନେ କିଏ ଯେଉଁମାନେ ପ୍ରଜାଙ୍କୁ ଲୁଣ୍ଠନ କରୁଛନ୍ତି ? ଏମାନେ ସବୁ କିଏ ଯେଉଁମାନେ ପ୍ରଜାଙ୍କୁ ଭୟଭୀତ କରୁଛନ୍ତି ? ହତ୍ୟା କରୁଛନ୍ତି' ?

କଞ୍ଚୁକୀ ଉତ୍ତର ଦେଲା– 'ପରମ ଭଗବତୀ, ମହାଭୟ । ମାତା ତୁରନ୍ତ ତଳ କକ୍ଷକୁ ବିଜେ କରନ୍ତୁ ।'

ଅମିତା ପୁଣି ଜିଦ୍‌ଧରି ପଚାରିଲେ– 'ନା, ଆଗ କହ ସେମାନେ ସବୁ କିଏ, ଯେଉଁମାନେ ଲୁଣ୍ଠନ କରୁଛନ୍ତି, ପ୍ରଜାଙ୍କୁ ଡ଼ରାଉଛନ୍ତି ? ହତ୍ୟା କରୁଛନ୍ତି' ?

କଞ୍ଚୁକୀ ଉତ୍ତର ଦେଲା– 'ମହାରାଣୀ, ଚଣ୍ଡ ଅଶୋକ । ମହାରାଣୀଙ୍କର ପ୍ରଜାଙ୍କୁ ଲୁଣ୍ଠନ କରୁଛି । ଭୟ ଦେଖାଉଛି । ହତ୍ୟା କରୁଛି ! ମାତା ମହାରାଣୀ, ଚଣ୍ଡ ଅଶୋକ ଶିଶୁମାନଙ୍କ ପ୍ରତି ମଧ୍ୟ ଅତ୍ୟନ୍ତ ନିର୍ଦ୍ଦୟ ! ସେ ଶିଶୁମାନଙ୍କୁ ବି ହତ୍ୟା କରୁଛି । ମହାରାଣୀ ତୁରନ୍ତ ଗର୍ଭକକ୍ଷକୁ ବିଜେ କରନ୍ତୁ ।'

ମହାରାଣୀ ଅସ୍ୱୀକୃତିରେ ମୁଣ୍ଡ ହଲେଇ ଆଗ୍ରହ କଲେ— 'ନା' ନା, ଦୁଷ୍ଟ ଅଶୋକଙ୍କୁ ବାନ୍ଧିପକାଅ । ସେ କାହିଁକି କାହାକୁ ଲୁଣ୍ଠନ କରୁଛି ? କାହିଁକି ଡରାଉଛି ! ହତ୍ୟା କରୁଛି ?'

କଞ୍ଚୁକୀ ମହାରାଣୀଙ୍କୁ କୋଳ କରିନେବାର ଅଭିପ୍ରାୟରେ ବାହୁରେ ଭିଡ଼ିନେଇ କହିଲା— 'ମାତା ମହାରାଣୀ, ଗର୍ଭକକ୍ଷକୁ ବିଜେ କରନ୍ତୁ । ଅଶୋକ ରାକ୍ଷସ ଭଳି କ୍ରୁର । ତାକୁ କେହି କେବେହେଲେ ବାନ୍ଧିପାରିବେ ନାହିଁ ।'

ପ୍ରାସାଦର ଛାତ ଉପରେ ରହିଥିବା ସୈନିକମାନେ ଦେଖିଲେ ଯେ ଶତ୍ରୁ ସୈନ୍ୟ ଅନ୍ତଃପୁର-ଦ୍ୱାର ଦେଇ ପ୍ରବେଶ କରିବାର ପ୍ରୟାସ କରୁଛନ୍ତି । ଶୁଣାଗଲା— 'ମହାରାଣୀ ଶୀଘ୍ର, ଅତିଶୀଘ୍ର ବିଜେ କରନ୍ତୁ ।'

ଅମିତା କଞ୍ଚୁକୀ ବାହୁରୁ ଛାଟିପିଟି ହୋଇ ଖସିଆସି ଆଦେଶ ସ୍ୱରରେ ପଚାରିଲେ— 'କାହିଁକି ବାନ୍ଧିପାରିବେ ନାହିଁ ? ଆଚାର୍ଯ୍ୟକାକା କୁଆଡ଼େ ଗଲେ ? ସେନାପତି କାକା କେଉଁଠି ଅଛନ୍ତି ?'

ଭୟଭୀତ ସୈନିକମାନେ ଉତ୍ତର ଦେଲେ— 'ପରମ ଭଗବତୀ, କଳିଙ୍ଗ ସେନା ପରାସ୍ତ ହୋଇସାରିଛି । ଆଚାର୍ଯ୍ୟ ମହାମାତ୍ୟ ରଣକ୍ଷେତ୍ରରେ ଅଛନ୍ତି । ମହାସେନାପତି ରଣକ୍ଷେତ୍ରରେ ବୀରଗତି ପ୍ରାପ୍ତ ହେଲେ । ସେ ଜୀବିତ ନାହାନ୍ତି ।'

ଭୀତସ୍ୱରରେ ଅମିତା ପଚାରିଲେ— 'କାକାଙ୍କୁ କିଏ ମାରିଛି ?'

କଞ୍ଚୁକୀ ଉତ୍ତର ଦେଲା— 'ମହାରାଣୀ, ତାଙ୍କୁ ଦୁଷ୍ଟ ଅଶୋକ ମାରିଛି । ମହାରାଣୀ ଶୀଘ୍ର ଗର୍ଭକକ୍ଷକୁ ଆସିବା ହୁଅନ୍ତୁ । ରାଜମାତା ଡାକୁଛନ୍ତି ।'

ଅଳିନ୍ଦରୁ ଗୁହ୍ୟମାର୍ଗ ଆଡ଼କୁ ଯାଉଥିବାବେଳେ ଅନ୍ତଃପୁର ଦ୍ୱାରରେ ପ୍ରାସାଦର ସୈନିକ ଓ ଶତ୍ରୁ ସୈନ୍ୟମାନଙ୍କର ଲଢ଼େଇର କୋଳାହଳରେ ଆତଙ୍କିତ ହୋଇ ଉଚ୍ଚୈସ୍ୱରରେ ଡାକ ଦେଲେ... 'ଶୀଘ୍ର ଆଣ, ଝିଅକୁ ଶୀଘ୍ର ଆଣ !'

ଅନ୍ତଃପୁର ପ୍ରାଙ୍ଗଣରେ ଠିଆ ହୋଇଥିବା ସୈନିକମାନେ ମଧ୍ୟ ରାଜମାତାଙ୍କର ଅନୁକରଣ କରି ଭୟରେ ଡାକ ଦେଲେ— 'ପରମ ଭଗବତୀ, ତୁରନ୍ତ ବିଜେ କରନ୍ତୁ ।'

ପ୍ରାସାଦର ଛାତ ଉପରେ ରହିଥିବା ଅମିତା କାହାରି ହେଲେ କାଖକୁ ଯିବାକୁ ଅମଙ୍ଗ ହେଉଥିଲେ । ବଭ୍ରୁ ଅମିତାଙ୍କର ସୁରକ୍ଷା ଲାଗି କ୍ରୋଧରେ ଭୁକି ଭୁକି ଅମିତାଙ୍କର ଚାରିପଟେ ଘୂରି ବୁଲୁଥିଲା । ବଭ୍ରୁ ହେତୁ ସୈନିକମାନେ ବାଳିକାକୁ ସ୍ପର୍ଶ କରିବାକୁ ମଧ୍ୟ ସମର୍ଥ ହେଉ ନ ଥିଲେ ।

ଅମିତା ଦୃଢ଼କଣ୍ଠରେ ଘୋଷଣା କରୁଥିଲେ 'ନା' ନା... ମୁଁ ନିଜେ ଦୁଷ୍ଟ ଅଶୋକଙ୍କୁ ବାନ୍ଧିବାକୁ ଯିବି । ହିତୁ... ଦେ ବଭ୍ରୁର ଜଞ୍ଜିର ଦେ । ମୁଁ ଚଣ୍ଡ ଅଶୋକଙ୍କୁ ବାନ୍ଧିବି !'

ତଳେ ଉଭୟପକ୍ଷର ସୈନିକମାନଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ଚାଲିଥିଲା । ଶତ୍ରୁପକ୍ଷର ସୈନିକମାନଙ୍କର ସଂଖ୍ୟା କ୍ରମଶଃ ବଢ଼ି ଚାଲିଥିଲା । ହିତା ଅନ୍ୟ କୌଣସି ଉପାୟ ନ ଦେଖି ମହାରାଣୀଙ୍କୁ ସନ୍ତୁଷ୍ଟ କରିବା ଇଚ୍ଛାରେ ବଭ୍ରୁକୁ ପାଖକୁ ଡାକି ତା'ର ଜଞ୍ଜିର ଖୋଲି ଅମିତାଙ୍କ ହାତକୁ ବଢ଼େଇଦେଇ କାତର କଣ୍ଠରେ କାଖେଇ ହୋଇ ଯିବା ପାଇଁ ଅନୁରୋଧ କଲା । 'ମାତା, ଚାଲନ୍ତୁ ମୁଁ କାଖ କରି ନେବି ।'

ମାତ୍ର ସେଥିରେ ଅମିତା ଆଦୌ ରାଜି ହେଲେ ନାହିଁ ।

ତଳୁ ସେନାପତି ସୋମନାଥ ଡାକ ପକେଇଲେ– 'ମହାରାଣୀ ତୁରନ୍ତ ବିଜେ କରନ୍ତୁ ।'

ଛାତରେ ଥିବା ସୈନିକମାନଙ୍କୁ ବାଧ୍ୟହୋଇ ଉତ୍ତର ଦେବାକୁ ପଡ଼ିଲା– 'ଭଗବତୀ ମହାରାଣୀ ବିଜେ କରିବେ ନାହିଁ । ମହାରାଣୀ ଜଞ୍ଜିର ନେଇ ଅଶୋକଙ୍କୁ ବାନ୍ଧିବାକୁ ଯିବେ ।'

ମଗଧର ସୈନିକମାନେ ଅନ୍ତଃପୁର ପ୍ରାଙ୍ଗଣରେ ପ୍ରବେଶ କରି ସାରିଥିଲେ । ମଗଧ ସୈନ୍ୟଦଳର ପ୍ରଥମ ଭାଗର ସେନାପତି ଗୋପାଳ । ଅଶୋକ ତାକୁ କଳିଙ୍ଗ ରାଜପ୍ରାସାଦ ଅଧିକାର କରିବାକୁ ପଠେଇଥିଲେ । ଗୋପାଳ ପ୍ରାସାଦ ଛାତରୁ ସେହି ଘୋଷଣା ଶୁଣି ସ୍ତବ୍ଧ ହୋଇ ରହିଗଲା ।

'ମହାରାଣୀ ଅଶୋକଙ୍କୁ ବାନ୍ଧିବାଲାଗି ଜଞ୍ଜିର ନେଇ ବାହାରିଛନ୍ତି ।'

ମଗଧ ସେନାପତି ସତର୍କ ହୋଇଗଲା । ଗୋପାଳ ପ୍ରଥମେ ଆପଣା କାନକୁ ବିଶ୍ୱାସ କରିପାରିଲା ନାହିଁ । କିନ୍ତୁ ପୁନଶ୍ଚ ଉଚ୍ଚୈସ୍ୱରରେ ପ୍ରାସାଦ ଛାତରୁ କଳିଙ୍ଗ ସୈନ୍ୟମାନଙ୍କର ଘୋଷଣା ଶୁଣାଗଲା... 'ମହାରାଣୀ ଜଞ୍ଜିର ନେଇ ଅଶୋକଙ୍କୁ ବାନ୍ଧିବାକୁ ଯାଉଛନ୍ତି ।' ସେ ମଗଧ ସୈନିକମାନଙ୍କୁ ଦ୍ୱାରପାଖରେ ଛାଡ଼ି ବାହାରକୁ ଦଉଡ଼ିଆସିଲା । ରାଜପ୍ରାସାଦର ମୁଖ୍ୟଦ୍ୱାର ନିକଟରେ ପହଞ୍ଚି ଦେଖିଲା ଅନେକ ସଶସ୍ତ୍ର ସାମନ୍ତ ପରିବେଷ୍ଟିତ ହୋଇ ସମ୍ରାଟ ଅଶୋକଙ୍କର ବିଶାଳ ଗଜ ନଗରର ସିଂହଦ୍ୱାରରୁ ରାଜପ୍ରାସାଦର ଦ୍ୱାର ନିକଟରେ ପହଞ୍ଚି ସାରିଥିଲା । ସମ୍ରାଟଙ୍କର ରାଜପ୍ରାସାଦରେ ପ୍ରବେଶ ନିମନ୍ତେ ରାଜପ୍ରାସାଦ ସମ୍ମୁଖରେ ହାତୀକୁ ମାହୁନ୍ତ ବସାଉଥାଏ ।

ସେନାପତି ଶୋପାଳ ସମ୍ରାଟଙ୍କର ହାତୀ ଆଗରେ ବିନୀତ ଭାବରେ ନତମସ୍ତକ ହୋଇ ସମ୍ରାଟଙ୍କୁ ପ୍ରତୀକ୍ଷା କରିବାପାଇଁ ସଂକେତ ଦେଲା ଏବଂ ଆତଙ୍କିତ ସ୍ୱରରେ ନିବେଦନ କଲା— 'ପ୍ରଭୁ ! ଅଭୟ ପ୍ରଦାନ କରନ୍ତୁ ! ପ୍ରାସାଦରେ ଭୟର ଆଶଙ୍କା ରହିଛି । ପ୍ରତୀକ୍ଷା କରନ୍ତୁ ।'

ସମ୍ରାଟ ଅଶୋକଙ୍କର ଭ୍ରୁକୁଞ୍ଚିତ ହେଲା । ସେ କ୍ଷୁବ୍ଧ କଣ୍ଠରେ ପ୍ରଶ୍ନ କଲେ—

'ଅଜେୟ ସମ୍ରାଟ ଅଶୋକଙ୍କର ଭୟ !'

ଭୟଭୀତ ସେନାପତି ନତଶିର ହୋଇ ସଂକୋଚରେ ଉତ୍ତର ଦେଲା— 'ମହିମାମୟ ସମ୍ରାଟ, କଳିଙ୍ଗର ଉନ୍ମତ୍ତ ମହାରାଣୀ ସମ୍ରାଟଙ୍କୁ ବାନ୍ଧିବାଲାଗି ଜଞ୍ଜିର ନେଇ ଆସୁଛନ୍ତି ।'

ଅଶୋକ ବିଦ୍ରୂପ ଓ ତିରସ୍କାର ସ୍ୱରରେ ପ୍ରଶ୍ନ କଲେ— 'କ'ଣ ଏ ପର୍ଯ୍ୟନ୍ତ କଳିଙ୍ଗର ମହାରାଣୀଙ୍କର ଅହଂକାର ରହିଛି ? ଅଜେୟ ଅଶୋକ ସେଭଳି ଦୁଃସାହସୀ ରାଣୀର ଗର୍ବ ନିଜେ ପାଦରେ ଦଳିଦେବ ।'

ସମ୍ରାଟ ହାତୀରୁ ଓହ୍ଲେଇଯିବା ପାଇଁ ଭୂମିକୁ ଦେଖିଲେ । ଛୋଟ ଶିଢ଼ି ନେଇ ଚାଲିଥିବା ପାର୍ଶ୍ୱରକ୍ଷକ ତୁରନ୍ତ ଶିଢ଼ି ନେଇ ଖଞ୍ଜିଦେଲେ ।

ଶଙ୍କା ବିହ୍ୱଳିତ ସେନାପତି ପୁନଶ୍ଚ ନିବେଦନ କଲା— 'ମହାମହିମ ଦେବପ୍ରିୟ ସମ୍ରାଟ, କଳିଙ୍ଗର ଶସ୍ତ୍ର ଶକ୍ତି ଚୂର୍ଣ୍ଣ ହୋଇଛି ମାତ୍ର ମନ୍ତ୍ର... ତନ୍ତ୍ରର ଶକ୍ତି ... ।'

ଅଶୋକ ପ୍ରଚଣ୍ଡ କ୍ରୋଧରେ କହିଲେ— 'ଅଜେୟ ଅଶୋକ, ମନୁଷ୍ୟ, ପ୍ରେତ ଓ ଦେବର ଆଶଙ୍କା କରେ ନାହିଁ ।' ଏବଂ ସେ ହସ୍ତୀପୃଷ୍ଠରୁ ଅବତରଣ କରି ଆଦେଶ ଦେଲେ— 'ମାର୍ଗ ଦେଖାଅ !'

ଅଶୋକଙ୍କର ସୈନିକମାନେ ତୂର୍ଯ୍ୟନାଦ କରି ସମ୍ରାଟଙ୍କର ପ୍ରାସାଦ-ପ୍ରବେଶର ଜୟଘୋଷ କରିବାକୁ ଲାଗିଲେ ।

ଅଶୋକ ଖଡ୍‌ଗ କୋଷମୁକ୍ତ କରି ନିଜର ଅଙ୍ଗରକ୍ଷକ ଓ ସାମନ୍ତମାନଙ୍କର ଗହଣରେ ପ୍ରାସାଦଦ୍ୱାର ଅତିକ୍ରମ କରି ଅନ୍ତଃପୁର ଅଭିମୁଖରେ ଦୃପ୍ତ ପଦରେ ଆଗେଇଗଲେ ।

ଅମିତା ସୈନିକମାନଙ୍କର, କଞ୍ଚୁକୀ ଅଥବା ହିତାର ଆକଟ ନ ମାନି ଜଞ୍ଜିର ନେଇ ଦଉଡ଼ିଲା ଭଳି ସୋପାନ ପରେ ସୋପାନ ଓହ୍ଲେଇ ପ୍ରାଙ୍ଗଣରେ ପହଞ୍ଚିଗଲେ । ପାହାଚ ଆଗରେ ରାଜମାତା ଏବଂ ସୋମନାଥ ପ୍ରତୀକ୍ଷାତୁର ଅବସ୍ଥାରେ ଠିଆ ହୋଇ ରହିଥିଲେ । ସେନାପତି ଅମିତାଙ୍କୁ ଉଠେଇ ଗୁହ୍ୟମାର୍ଗକୁ ନେଇଯିବାର ପ୍ରୟାସ କଲା, ମାତ୍ର ଅମିତା ହଠପୂର୍ବକ ନିଷେଧ କରି ଚିତ୍କାର କଲେ 'ନା,

ନା... ମୁଁ ଦୁଷ୍ଟ ଅଶୋକକୁ ବାନ୍ଧିବାକୁ ଯାଉଛି । ସେ ବଭ୍ରୁଭଳି ବନ୍ଧା ହୋଇ ରହିବ ।'

ପ୍ରାସାଦ ଦ୍ୱାରରେ ମଗଧର ଭେରୀ ତୂରୀ ସ୍ୱର ସହିତ ମଗଧ ସୈନିକମାନଙ୍କର ଜୟଘୋଷ ଶୁଣାଗଲା । '... ଦେବପ୍ରିୟ ମହାମହିମ ସମ୍ରାଟ ଅଶୋକଙ୍କର ଜୟ ।'

ବାଳିକା ମହାରାଣୀଙ୍କ ବ୍ୟତୀତ ସମସ୍ତେ ସ୍ତବ୍ଧ ହୋଇ ରହିଗଲେ । କଳିଙ୍ଗ ଓ ମଗଧର ସୈନିକ ଅବଶେଷ ସ୍ତବ୍ଧ ହେଲେ । ଶସ୍ତ୍ର ଉତ୍ତୋଳିତ ବାହୁ ସ୍ଥିର ହୋଇ ରହିଗଲା ।

ଅମିତା ଜଞ୍ଜିର ନେଇ ଅନ୍ତଃପୁର ବାହାରର ପ୍ରାଙ୍ଗଣ ଦ୍ୱାରକୁ ଦୌଡ଼ିଗଲେ । ତାଙ୍କର ପଛେ ପଛେ ଲୌହ ଜଞ୍ଜିର ମୁକ୍ତ ଅଥଚ ସ୍ନେହପାଶରେ ଆବଦ୍ଧ ବଭ୍ରୁ ସ୍ୱାମିନୀଙ୍କର ସୁରକ୍ଷା ତତ୍‌ପର ହୋଇ ଶତ୍ରୁମାନଙ୍କୁ ଶୁଙ୍ଘି ଶୁଙ୍ଘି ଖଡ଼୍‌ଗର ଚିନ୍ତା ନ କରି ଆଗେଇ ଚାଲିଥାଏ ।

ହିତା ମଧ୍ୟ ଡାକି ଡାକି ପଛରେ ଦଉଡ଼ି ଚାଲିଥିଲା । ମନ, ପାଦ, ସବୁର ବିଚିତ୍ର ଶିଥିଳ ଅବସ୍ଥା... କଣ୍ଠରୁ କେବଳ ଅସ୍ପଷ୍ଟ ସ୍ୱର ଶୁଣାଯାଉଥାଏ... 'ମାତା, ଭଗବତୀ, ମହାରାଣୀ ସେପଟେ ନୁହେଁ... ଏପଟେ... !'

ସେନାପତି ଶତ୍ରୁହାତରୁ ମହାରାଣୀଙ୍କୁ ରକ୍ଷା କରିବାକୁ ଶେଷ ପର୍ଯ୍ୟନ୍ତ ଡାକୁଥାଏ ଓ ଆଦେଶ ଦେଉଥାଏ... 'ତୁରନ୍ତ ମହାରାଣୀଙ୍କୁ ଉଠେଇଆଣ ।'

ରାଜମାତା ଡାକୁଥାନ୍ତି... 'ଝିଅ... ଅମିତା... ମା'... ।'

ସେତିକିବେଳେ ଅନ୍ତଃପୁର ଦ୍ୱାରରୁ କବଚ ଶିରସ୍ତ୍ରାଣଧାରୀ ଚାରିଜଣ ମଗଧ ସାମନ୍ତ ପ୍ରବେଶ କଲେ ଏବଂ ସେମାନେ ମାର୍ଗ ପ୍ରଶସ୍ତ କରି ଠିଆ ହେବା ପରେ ସୁବର୍ଣ୍ଣ ରତ୍ନମଣ୍ଡିତ କବଚ ଓ ଶିରସ୍ତ୍ରାଣ ବିଭୂଷିତ, ରତ୍ନଜଡ଼ିତ ବିଶାଳ ଖଡ଼୍‌ଗଧାରୀ ସମ୍ରାଟ ଅଶୋକ ପ୍ରବେଶ କଲେ ।

ଅମିତାଙ୍କୁ ଉଠେଇ ଆଣିବେ ବୋଲି ଦଉଡ଼ି ଯାଉଥିବା ରାଜମାତା, ସେନାପତି, ହିତା, କଞ୍ଚୁକୀ, ଅନ୍ୟାନ୍ୟ ସୈନିକ ଓ ଦାସଦାସୀ ଜଡ଼ବତ୍ ରହିଗଲେ । ସମସ୍ତଙ୍କର ରୁଦ୍ଧଶ୍ୱାସ ହୋଇଗଲା ସତେଯେଭଳି ବାଳିକା ମହାରାଣୀ ବ୍ୟାଘ୍ର କବଳିତ ହୋଇଯାଇଛନ୍ତି, ମାତ୍ର ଅମିତା ନିଃଶଙ୍କ ଚିତ୍ତରେ ଆଗେଇଗଲେ । ଅଶୋକ ମଧ୍ୟ ମଗଧର ସାମନ୍ତମାନଙ୍କ ଗହଣରେ ଆଗେଇ ଆସୁଥିଲେ । କିଛି ମୁହୂର୍ତ୍ତ ଏଭଳି ମନେହେଲା ଯେପରି ବାଳିକା ମହାରାଣୀଙ୍କ ଉପରେ ସମ୍ରାଟଙ୍କର ଦୃଷ୍ଟି ପଡ଼ି ନାହିଁ ଏବଂ ବାଳିକା ମହାରାଣୀ ମଧ୍ୟ କୌଣସି ବିକରାଳ ରାକ୍ଷସ ମୂର୍ତ୍ତି ଦେଖି ନାହାନ୍ତି ବୋଲି ନିର୍ଭୟ ଥିଲେ ।

ଆତଙ୍କର ସ୍ତବ୍ଧତା ଓ ପଥର ଚଟାଣ ଉପରେ ଅନେକ ପଦଶବ୍ଦ ଭିତରେ ଅମିତାଙ୍କର କୋମଳ ସ୍ୱର ଅଥଚ ଦୃଢ଼ ପ୍ରଶ୍ନ ଗୁଞ୍ଜରିତ ହେଲା – 'ଶୁଣ, ତମେ କିଏ ?'

ଅମିତାଙ୍କର ପ୍ରଶ୍ନକୁ ସର୍ବନାଶର ଆହ୍ୱାନ ମନେକରି କଳିଙ୍ଗ ପ୍ରାସାଦରେ ସେତେବେଳେ ଯେଉଁମାନେ ଉପସ୍ଥିତ ଥିଲେ ନିର୍ବାକ ନିଷ୍ପନ୍ଦ ହୋଇଗଲେ ।

ଅଶୋକ ପ୍ରଶ୍ନ ଶୁଣି ବିସ୍ମୟରେ ମୌନ ହୋଇଗଲେ । ସେ ତାଙ୍କର କଟିଠାରୁ ମଧ ଉଚ୍ଚତାରେ ଛୋଟ ଅଥଚ ଆତ୍ମବିଶ୍ୱାସ ପରିପୂର୍ଣ୍ଣ ସୁନ୍ଦର ବାଳିକାକୁ ନିରେଖି ଦେଖିଲେ ।

ଅମିତା ସେହିଭଳି ଦୃପ୍ତ ଓ ନିଃଶଙ୍କ ଥିଲେ । ସେ ସେହିଭଳି ଦୃଢ଼କଣ୍ଠରେ ପଚାରିଲେ – 'କିଏ ତମେ ! ତମେ ସୁନ୍ଦର !... ତମର ବସ୍ତ୍ର ସୁନ୍ଦର ! ତମର ଖଡ୍ଗ ସୁନ୍ଦର ! ତମେ ମୋ ସାଙ୍ଗରେ ଆସ । ମୁଁ ଚଣ୍ଡ ଅଶୋକକୁ ବାନ୍ଧିବାକୁ ଯାଉଛି ।' ଏବଂ ସେ ହାତଟେକି ଅଶୋକଙ୍କୁ ଜଞ୍ଜିରଟି ଦେଖେଇଲେ ।

ଅମିତାଙ୍କର କଥା ଶୁଣି ସମବେତ ସମସ୍ତଙ୍କର ହୃଦୟ ଅକସ୍ମାତ୍ ନିଷ୍ପନ୍ଦ ହୋଇଗଲା ।

ଅଶୋକ ଅପଲକ ନେତ୍ରରେ ଅମିତାଙ୍କୁ ଅନେଇ ରହିଥିଲେ ।

ଅଶୋକଙ୍କର ସ୍ତବ୍ଧମୌନ ମୁଦ୍ରାକୁ ଉପେକ୍ଷା ଓ ଅବଜ୍ଞା ମନେକରି ଅମିତା କ୍ଷୁବ୍ଧ ହୋଇ ପ୍ରଶ୍ନ କଲେ – 'ତମେ ମୋର ଆଦେଶ ପାଳନ କରିବ ନାହିଁ ? ମୋର ଆଦେଶ ପାଳନ କରିବା ସମସ୍ତଙ୍କର କର୍ତ୍ତବ୍ୟ ! ମୁଁ କଳିଙ୍ଗର ରାଜେଶ୍ୱରୀ । ପ୍ରଜାଙ୍କର ମାତା ! ତମେ ମୋ ସାଙ୍ଗରେ ଆସ । ଆମେ ଦୁହେଁ ଯାଇ ଅଶୋକକୁ ବାନ୍ଧିଆଣିବା ।'

ଅଶୋକଙ୍କର ଅଧର ବିସ୍ମୟ ବିସ୍ଫାରିତ ହୋଇ ଉଠିଲା । ସେ ବିସ୍ମିତ, ଆତ୍ମ-ବିସ୍ମୃତ ହୋଇ ପଚାରିଲେ –

'ତୁମେ କଳିଙ୍ଗର ମହାରାଣୀ !'

ଅମିତା ସଂକେତରେ ସ୍ୱୀକାର କଲେ ଓ ଉତ୍ତର ଦେଲେ... 'ହଁ, ମୁଁ କଳିଙ୍ଗର ମହାରାଣୀ । ତମେ ମୋ ସାଙ୍ଗରେ ଆସ, ମୁଁ ଦୁଷ୍ଟ ଅଶୋକକୁ ବାନ୍ଧିବାକୁ ଯାଉଛି । ଅଶୋକ ପ୍ରଜାଙ୍କୁ ବଳାତ୍ ଲୁଣ୍ଠନ କରୁଛି, ଭୟଭୀତ କରୁଛି । ହତ୍ୟା କରୁଛି ।'

ବିଜୟୀ ସମ୍ରାଟ କିଛିକ୍ଷଣ କାଷ୍ଠବତ୍ ମୌନ ଠିଆ ହୋଇ ରହିଲେ । ତାଙ୍କର ନିଶ୍ଚଳତା ଦେଖି ଅମିତା ପୁଣି ବିସ୍ମୟରେ ପଚାରିଲେ –

'ତମେ କିଏ ?'

ଅଶୋକ ମନ୍ତ୍ର-ମୁଗ୍ଧବତ୍ ଉତ୍ତର ଦେଲେ – 'ସମ୍ରାଟ ଅଶୋକ ।'

ଅମିତାଙ୍କର ବାଳନେତ୍ର ବିସ୍ମୟ ବିସ୍ଫାରିତ ହୋଇଉଠିଲା – ପଚାରିଲେ – 'ତମେ ଅଶୋକ ? ତମେ ତ ସୁନ୍ଦର ! ତମେ ପ୍ରଜାଙ୍କୁ ଲୁଣ୍ଠନ କରୁଛ କାହିଁକି ? ପ୍ରଜାଙ୍କୁ ଭୟଭୀତ କାହିଁକି କରୁଛ ? ପ୍ରଜାଙ୍କର ହତ୍ୟା କାହିଁକି କରୁଛ ? ତମର କ'ଣ ଲୋଡ଼ା ?'

ଅଶୋକ ନିଶ୍ଚଳ ନିରୁତ୍ତର ହୋଇ ରହିଥିଲେ ।

ଅମିତା ଆହୁରି ଦୁଇପାଦ ଆଗେଇ ଆସିଲେ ଏବଂ ଆଗ୍ରହଭରା ସ୍ୱରରେ ପଚାରିଲେ – 'ତମ ପାଖରେ କ'ଣ ଖାଇବାକୁ ନାହିଁ ? ତମ ପାଖରେ କ'ଣ ବସ୍ତ୍ର ନାହିଁ ? ତମ ପାଖରେ କ'ଣ କଣ୍ଢେଇ ନାହିଁ ? ... ତମର କ'ଣ ଦରକାର କହ ! ମୋ ପାଖରେ ସବୁ ଅଛି । ଆସ, ମୁଁ ତମକୁ ଦେବି !'

ଅମିତା ଆହୁରି ପାଦେ ଅଶୋକଙ୍କର ସମୀପକୁ ଆଗେଇ ଆସିଲେ ଓ ଅଶୋକଙ୍କର ହାତ ଧରିନେଲେ ଏବଂ ତାଙ୍କୁ ଟାଣିନେଇଗଲେ । ଦୁର୍ଦ୍ଧାନ୍ତ ସମ୍ରାଟ ଅମିତାଙ୍କ ସହିତ ସମ୍ମୋହିତ ଭଳି ଚାଲିବାକୁ ଲାଗିଲେ । ସେମାନଙ୍କ ପଛରେ ମଗଧର ଗର୍ବୋନ୍ମତ୍ତ ସାମନ୍ତ ବର୍ଗର ବିସ୍ମିତ ସମୁଦାୟ ଏବଂ କଳିଙ୍ଗ ପ୍ରାସାଦର ଦାସ-ଦାସୀ ବାଳିକା ମହାରାଣୀଙ୍କ ପ୍ରତି ଭୟ ଓ ଚିନ୍ତାରେ ଆତୁର ହୋଇ ଟାଣି ହୋଇ ଚାଲିଥିଲେ ।

ଅମିତା ଅଶୋକଙ୍କର ହାତ ଧରି ଅଳିନ୍ଦରୁ ପ୍ରାଙ୍ଗଣକୁ, ପ୍ରାଙ୍ଗଣରୁ ଦୀର୍ଘିକା ଦେଇ ପୁନଶ୍ଚ ଅପର ଅଳିନ୍ଦକୁ ଆସି ଅଶୋକଙ୍କୁ ଶୂନ୍ୟ ରାଜସଭାଭବନକୁ ନେଇଗଲେ ।

ରାଜ ସଭାଭବନରେ ସିଂହାସନ ଚାରିପାଖରେ ଅନେକ ଖେଳନା ଖେଳେଇ ହୋଇ ପଡ଼ିଥିଲେ । କାଛରେ ଅନେକ ପୁତ୍ତଳିକା, ମଉଳା ଫୁଲ, ଥାଳିମାନଙ୍କରେ ବହୁବିଧ ମିଷ୍ଟାନ୍ନ ଥୁଆ ହୋଇ ରହିଥିଲା ।

ଅମିତା ଚତୁର୍ଦ୍ଦିଗରେ ଖେଳେଇ ହୋଇ ରହିଥିବା ଏହି ଐଶ୍ୱର୍ଯ୍ୟକୁ ଉଭୟ ଭୁଜ ପ୍ରସାରିତ କରି ଦେଖେଇ କହିଲେ – 'କହ, ତମର କ'ଣ ଦରକାର ! ଫଳ ! ମିଷ୍ଟାନ୍ନ ! ଖେଳନା ! ଏଠାରେ ସବୁ ଅଛି । ଯାହା ଇଚ୍ଛା ତାହା ନେଇଯାଅ ! ମୁଁ ତମକୁ ସବୁକିଛି ଦେଇଦେବି । ତମେ କାହାଠାରୁ ବଳାତ୍ ଛଡ଼େଇ ନିଅ ନାହିଁ । କାହାକୁ ବି ଡରାଅ ନାହିଁ । କାହାକୁ ମାର ନାହିଁ । କହ, ତମର କ'ଣ ଦରକାର ?'

ମଗଧ ସମ୍ରାଟ ଅମିତାଙ୍କ ଆଗରେ ମନ୍ତ୍ରମୁଗ୍ଧ, ଅପ୍ରତିଭ, ସମ୍ମୋହିତ, ଅସହାୟବତ୍ ମୌନ ଦଣ୍ଡାୟମାନ ହୋଇ ରହିଥିଲେ ।

ଅଶୋକ ସଂପୂର୍ଣ୍ଣ ପୃଥିବୀକୁ ଜୟ କରିବାର ପ୍ରତିଜ୍ଞା କରିଥିଲେ । ସେ ଗୋଟାଏ ବାଳିକାର ପ୍ରଶ୍ନରେ ପରାସ୍ତ ହୋଇ ଆପଣାର ବିଜୟ-ଯାତ୍ରା ଅପୂର୍ଣ୍ଣ ରଖିଯିବା ପାଇଁ ଦୁଇବାର କଳିଙ୍ଗ ଆକ୍ରମଣ କରି ନ ଥିଲେ । ସମ୍ରାଟ ଆପଣାର ସମ୍ମୋହନ ଦୂର କରିବା

ଲାଗି ବାରମ୍ବାର ମୁଣ୍ଡ ଝାଡ଼ି କିଛି ସମୟ ଚିନ୍ତା କରି ରାଜସିଂହାସନକୁ ଦେଖେଇ କହିଲେ – 'ମୋର କଳିଙ୍ଗର ଏଇ ରାଜସିଂହାସନ ଦରକାର ।'

ଅଶୋକଙ୍କର ଇଚ୍ଛା ଶୁଣି କଳିଙ୍ଗର ବାଳିକା ମହାରାଣୀ ମୁହୂର୍ତ୍ତକ ଲାଗି ଚିନ୍ତାକଲେ ଏବଂ ଅସ୍ୱୀକାର କରି କହିଲେ – 'ନା', ନା'... ତମେ ରାଜସିଂହାସନ ନେଇଗଲେ ମୁଁ କଣ୍ଟେଇ ରାଜ୍ୟାଭିଷେକ କିଭଳି କରିବି ?'

ଅମିତା ପୁନଶ୍ଚ ମୁହୂର୍ତ୍ତକ ଲାଗି ଚିନ୍ତା କରି କହିଲେ – 'ଠିକ୍ ଅଛି, ତମେ ମାଗୁଛ ଯେତେବେଳେ ନେଇଯାଅ... କ'ଣ ତମ ପାଖରେ ରାଜସିଂହାସନ ନାହିଁ ? ତମେ ନେଇଯାଅ । ମୁଁ ଆଉ ଗୋଟାଏ କରେଇ ନେବି ।'

ସମ୍ରାଟଙ୍କ ପଛରେ ଠିଆ ହୋଇଥିବା ସାମନ୍ତ ଓ କଳିଙ୍ଗ ପ୍ରାସାଦର ଲୋକଙ୍କର ମୁଖମଣ୍ଡଳର କଠୋରତା ମଉଳି ଯାଇ କରୁଣା ଓ କୋମଳତା ବିକଶି ଉଠିଲା ।

ମଗଧ ସମ୍ରାଟ୍ ନିଶ୍ଚଳ ନିର୍ବାକ୍ ରହିଥିଲେ । ସୁବର୍ଣ୍ଣ ରତ୍ନମଣ୍ଡିତ ଲୌହ କବଚ ତଳେ ରହିଥିବା ପାଷାଣ ହୃଦୟ, ଯାହା ଲକ୍ଷାଧିକ ନରରକ୍ତରେ ବି ଆର୍ଦ୍ର ହୋଇ ନ ଥିଲା । ତାହା ଉଚ୍ଛଳ ହୋଇଉଠିଲା । ସମ୍ରାଟ ଆପଣା ହାତର ଖଡ଼୍ଗ ଭୂମିରେ ଥୋଇଦେଲେ । ନଇଁପଡ଼ି ଅମିତାଙ୍କୁ ଉଠେଇ କୋଳ କରିନେଇ କହିଲେ –

'କଳିଙ୍ଗ ରାଜେଶ୍ୱରୀ, ମଗଧର ବିଜୟୀ ସମ୍ରାଟ ହାରିଯାଇଛି । ତମର ବିଜୟ ହୋଇଛି । ତମେ ଦୁଷ୍ଟ ଅଶୋକକୁ ବାନ୍ଧିବାକୁ ଯାଉଥିଲ ନା... !'

ଅଶୋକ ଅମିତା ହାତରୁ ଜଞ୍ଜିର ନେଇ ଆପଣା ବେକରେ ପକେଇ କହିଲେ – 'ଦେଖ, ଅଶୋକ ବାନ୍ଧି ହୋଇଗଲା । ସେ ତମର ବନ୍ଦୀ । ଅଶୋକ ଯାହା ମାଗିଲା ତମେ ଦେଲ । ଏଇନେ ତମେ ମାଗ ଅଶୋକ ଦେବ । କଳିଙ୍ଗର ମହାରାଣୀ ଆଦେଶ କରନ୍ତୁ, କ'ଣ ଇଚ୍ଛା !'

ଅମିତା ପୁଲକିତ କଣ୍ଠରେ କହିଲେ – ମୋର କ'ଣ ଦରକାର । ମୋ ପାଖରେ ସବୁ ଅଛି ।'

ଅଶୋକ କିଛିକ୍ଷଣ ଭାବି କହିଲେ – 'ମହାରାଣୀ ସତ୍ୟ ହିଁ କହୁଛନ୍ତି କିନ୍ତୁ ଆଦେଶ କରନ୍ତୁ । ରାଜେଶ୍ୱରୀ ତାଙ୍କର ବନ୍ଦୀ ଅଶୋକକୁ ଆଦେଶ ଦିଅନ୍ତୁ !'

ଅମିତା ଉତ୍ତର ଦେଲେ – 'ଏ ମୋର ଆଦେଶ କାହାଠାରୁ ବି ବଳାତ୍ ଛଡ଼େଇବ ନାହିଁ । କାହାକୁ ହେଲେ ଡରେଇବ ନାହିଁ । କାହାକୁ ହତ୍ୟା କରିବ ନାହିଁ ।'

ବଭ୍ରୁ ତା'ର ସ୍ୱାମିନୀଙ୍କୁ ଜଣେ ଅପରିଚିତ ବ୍ୟକ୍ତିର କୋଳରେ ଦେଖି ବ୍ୟାକୁଳ ଦୃଷ୍ଟିରେ ଅନେଇ କୁଁ କୁଁ ହେଉଥାଏ ।

ଅମିତା ବଞ୍ଚୁକୁ ଦେଖିଲେ । ସମ୍ରାଟଙ୍କୁ ଦେଖି କହିଲେ– ''ଆଦେଶ ଲଂଘନ କଲେ ମୁଁ ପୁଣି ବନ୍ଦୀ କରିନେବି ।''

ସମ୍ରାଟ ଅଶୋକ ସ୍ୱୀକାର କଲେ । କହିଲେ– ''ସମ୍ରାଟ ଅଶୋକ ପ୍ରତିଜ୍ଞା କରୁଛି ସେ ଭବିଷ୍ୟତରେ କାହାଠାରୁ ବଳାତ୍ ଛଡ଼େଇ ନେବ ନାହିଁ । କାହାକୁ ଡରେଇବ ନାହିଁ, ମାରିବ ନାହିଁ । ଏଣିକି ଅଶୋକ ହିଂସା ଓ ଯୁଦ୍ଧରେ ବିଜୟ କାମନା କରିବ ନାହିଁ । ସେ କଳିଙ୍ଗର ଅବିଜିତା ରାଜେଶ୍ୱରୀଙ୍କ ଭଳି ନିର୍ମଳ ସ୍ନେହରେ ସଂସାରର ହୃଦୟ ଜୟ କରିବ ।''

## ଅଶୋକଙ୍କର ଶିଳାଲେଖ

ଅଶୋକ କଳିଙ୍ଗ ବିଜୟ କରି ଆପଣାର ବିଜୟଯାତ୍ରାର ମାର୍ଗରେ ହିଁ ମଗଧକୁ ଫେରିଆସୁଥିଲେ । ତାଙ୍କର ଦୃଷ୍ଟି ଯେଉଁଠାରେ ପଡୁଥିଲା ତାହା କଙ୍କାଳ ଓ ନରମୁଣ୍ଡରେ ଘୋଡ଼େଇ ହୋଇ ରହିଥିଲା । ସେତେବେଳେ ସମଗ୍ର ଗ୍ରାମ ଓ ନଗର ଉଜୁଡ଼ି ଯାଇଥିବା ଜନପଦ ଏବଂ ଗୃହ ଅର୍ଦ୍ଧଦଗ୍ଧ ଶବ ସଦୃଶ ମନେ ହେଉଥିଲେ । ଯେଉଁଠାରେ ବି ନରନାରୀ ଦେଖାଯାଉଥିଲେ ସମସ୍ତେ ତ୍ରସ୍ତ ଓ ଭୟାର୍ତ୍ତ ମନେ ହେଉଥିଲେ । କେବଳ ମାତ୍ର ଶବମାନଙ୍କ ଉପରେ ଘେରି ରହିଥିବା ଗୃଧ୍ର, ଶ୍ୱାନ, ଶୃଗାଳ, କାକ ହିଁ ପ୍ରସନ୍ନ ମନେ ହେଉଥିଲେ । ସମ୍ରାଟ ଏ ସବୁ ଦୃଶ୍ୟ ଦେଖିପାରିବେ ନାହିଁ ବୋଲି ହାତୀରୁ ଅବତରିତ ହୋଇ ଆବରଣଘେରା ଶିବିକାରେ ଯାତ୍ରା କରୁଥିଲେ । ପଚି ରହିଥିବା ଶବର ଦୁର୍ଗନ୍ଧରେ ପେଟ ଓଟାରି ହୋଇ ଆସୁଥିଲା । ମଥା ଘୂରିବାକୁ ଲାଗୁଥିଲା । ଅଶୋକଙ୍କର ଶିବିକାର ଆଗେ ପଛେ ଏବଂ ଉଭୟ ପାର୍ଶ୍ୱରେ ଦାସଦାସୀ ନାନାବିଧ ସୁଗନ୍ଧ ସା[illegible] ନେଇ ଯାତ୍ରା କରୁଥିଲେ, ତଥାପି ଦୁର୍ଗନ୍ଧରୁ ପରିତ୍ରାଣ ନ ଥିଲା । ଏହି ଦୀର୍ଘ ଦୁଃଖଦ ଯାତ୍ରାକାଳରେ ଅଶୋକଙ୍କର ଗ୍ରୀବା ନିଷ୍ଫଳ ହିଂସାର ପରିତାପ ଓ ପଶ୍ଚାତ୍ତାପରେ ନତ ହୋଇ ରହିଥିଲା ।

ଅଶୋକ ମଗଧର ରାଜଧାନୀ ପାଟଳୀପୁତ୍ରରେ ପହଞ୍ଚି ଅନ୍ୟର ଦେଶ ଓ ଧନ ନ ଛଡ଼େଇବାର, କାହାକୁ ଭୀତ ନ କରିବାର, କାହାର ହତ୍ୟା ନ କରିବାର ପ୍ରାର୍ଥନା କଲେ ଏବଂ ଯୁଦ୍ଧର ହିଂସା ହେତୁ ଆପଣାର ଆନ୍ତରିକ ପଶ୍ଚାତ୍ତାପର ବ୍ୟାପକ ଘୋଷଣା କରାଇଲେ ।

ଆପଣା ପ୍ରତିଜ୍ଞା ବିସ୍ମୃତ ହୋଇ ନ ଯାଉ ବୋଲି ସାମ୍ରାଜ୍ୟ ସାରା ବିଭିନ୍ନ କ୍ଷେତ୍ରରେ ଶିଳାଲେଖମାନ ଉତ୍କୀର୍ଣ୍ଣିତ କରାଇଲେ ।

'ଅଭିଷିକ୍ତ ହେବାର ଅଷ୍ଟମ ବର୍ଷରେ ଦେବତାମାନଙ୍କର ପ୍ରିୟ ପ୍ରିୟଦର୍ଶୀ ରାଜା କଳିଙ୍ଗ ବିଜୟ କଲେ, ସେଠାରେ ଦେଢ଼ଲକ୍ଷ ପ୍ରାଣୀ ବାହାରକୁ ନେଇନିଆ ହେଲେ, ଏକ ଲକ୍ଷରୁ ଅଧିକ ଆହତ ହେଲେ ଏବଂ ତା'ଠାରୁ ମଧ ଅଧିକସଂଖ୍ୟକ ନିହତ ହେଲେ । ତା'ପରେ ବିଜିତ କଳିଙ୍ଗରେ ଦେବତାଙ୍କର ପ୍ରିୟଙ୍କର ବିଶେଷ ଧର୍ମବିସ୍ତାର, ଧର୍ମକାମନା ଏବଂ ଧର୍ମାନୁଷ୍ଠିତ ହେଲା । ଏହା ଫଳରେ କଳିଙ୍ଗ ଉପରେ ବିଜୟ ପ୍ରାପ୍ତ କରିଥିବା ଦେବ-ପ୍ରିୟଙ୍କର ଅତ୍ୟନ୍ତ ପଶ୍ଚାତ୍ତାପ ହେଲା । (କାରଣ) ଯେଉଁଠାରେ ଜନହତ୍ୟା, ମରଣ ବା ଦେଶାନ୍ତରଣ ହୋଇଥାଏ ସେଭଳି ଦେଶକୁ ଜିଣି ମଧ ମୁଁ ନ ଜିଣିଥିବା ଭଳି ମନେ କରିଥାଏ ।

ତାହା (ସେହି ହତ୍ୟା ଆଦି) ଦେବପ୍ରିୟଙ୍କୁ ଅତ୍ୟନ୍ତ ଦୁଃଖଦ ଏବଂ ଗହନ ମନେହେଉଛି । ଏହା ଦେବପ୍ରିୟଙ୍କୁ ଆହୁରି ମଧ ବ୍ୟଥିତ କରୁଛି, କାରଣ ସେଠାରେ ସର୍ବତ୍ର ବ୍ରାହ୍ମଣ, ଶ୍ରମଣ ଏବଂ ଅନ୍ୟାନ୍ୟ ଧର୍ମର ଗୃହସ୍ଥ ନିବାସ କରୁଛନ୍ତି, ଯେଉଁମାନଙ୍କର ସର୍ବପ୍ରଥମେ ଭରଣପୋଷଣ ଆବଶ୍ୟକ, ଯେଉଁମାନଙ୍କ ମଧରେ ମାତାପିତାଙ୍କର ଶୁଶ୍ରୁଷା, ଗୁରୁଜନଙ୍କ'ର ଶୁଶ୍ରୁଷା, ମିତ୍ର, ପରିଚିତ, ସହାୟକସମ୍ବନ୍ଧୀ ତଥା ଦାସ-ଦାସୀଙ୍କ ପ୍ରତି ଉଚିତ ଆଦର ଏବଂ (ସେମାନଙ୍କ ପକ୍ଷରୁ) ଦୃଢ଼ ଭକ୍ତିର ବିଧାନ ରହିଛି । ସେଭଳି ଲୋକଙ୍କର ସେଠାରେ ଘାତ, ବଧ କିମ୍ବା ସୁଖରେ ରହିଥିବା ଲୋକଙ୍କର ଦେଶାନ୍ତରଣ ହୁଏ, ଯେଉଁ ସୁବ୍ୟବସ୍ଥିତ ଲୋକଙ୍କର ସ୍ନେହ ଊଣା ହୋଇ ନାହିଁ ସେମାନଙ୍କର ମିତ୍ର, ପରିଚିତ, ସହାୟକ ତଥା କୁଟୁମ୍ବୀମାନଙ୍କର ଦୁଃଖ ହୁଏ ତେଣୁ ତାଙ୍କର ମଧ ଅପଘାତ ହୋଇଥାଏ । ଏଭଳି ଦଶା ସମସ୍ତ ମନୁଷ୍ୟଙ୍କର ହୋଇଥାଏ ଯାହା ଦେବପ୍ରିୟଙ୍କୁ ଅତ୍ୟନ୍ତ ଦୁଃଖଦ ମନେହୁଏ ।

କୌଣସି ସେଭଳି ଜନପଦ ନାହିଁ ଯେଉଁଠାରେ ବ୍ରାହ୍ମଣ ଏବଂ ଶ୍ରମଣ ଆଦି ଅନନ୍ତ ସଂପ୍ରଦାୟ ନିବାସ କରନ୍ତି ନାହିଁ । ଏଭଳି ଗୋଟାଏ ବି ଜନପଦ ନାହିଁ ଯେଉଁଠାରେ ମନୁଷ୍ୟର କୌଣସି ନା କୌଣସି ଧର୍ମାନୁରକ୍ତି ନାହିଁ । ଯେତେ ମନୁଷ୍ୟ କଳିଙ୍ଗ ବିଜୟ ପ୍ରାପ୍ତି କାଳରେ ଆହତ ହେଲେ, ନିହତ ହେଲେ ଏବଂ ଦେଶାନ୍ତରୀ ହେଲେ ସେମାନଙ୍କର ଶହେ ବା ହଜାରେଭାଗର ଭାଗେ ବି ଯଦି ଆହତ, ନିହତ ବା ଦେଶାନ୍ତରିତ ହୋଇଥାନ୍ତେ ତେବେ ମଧ ଦେବପ୍ରିୟଙ୍କୁ ତାହା ଅତ୍ୟନ୍ତ ଦୁଃଖ ଦେଇଥାନ୍ତା । ଦେବପ୍ରିୟଙ୍କର ମତ ଯେ, ଯେ ଅପକାର କରେ ସେ ମଧ କ୍ଷମାର ଯୋଗ୍ୟ, ଯଦି ତାକୁ କ୍ଷମା କରାଯାଇପାରିବ ।

ଯେଉଁ ବନବାସୀମାନେ ଦେବପ୍ରିୟଙ୍କର ବିଜିତ ଦେଶରେ ରହିଛନ୍ତି ସେମାନଙ୍କୁ ମଧ ସେ ମାନନ୍ତି ଏବଂ ତାଙ୍କ ପ୍ରତି ଧାନ ରହିଥାଏ ଯେଭଳି ଦେବପ୍ରିୟଙ୍କୁ ଅନୁଶୋଚନା କରିବାକୁ ପଡ଼ିବ ନାହିଁ । ସେମାନେ ଆପଣାର କର୍ମ ଲାଗି ଲଜ୍ଜିତ

ହୁଅନ୍ତୁ ନାହିଁ କିମ୍ୱା ନଷ୍ଟ ହୁଅନ୍ତୁ ନାହିଁ । ଦେବପ୍ରିୟ ସମସ୍ତ ଜୀବଙ୍କର ଅକ୍ଷତି, ସଂଯମ, ସମଚର୍ଯ୍ୟା ଏବଂ ପ୍ରସନ୍ନତା ଇଚ୍ଛା କରନ୍ତି । ଯାହା ଧର୍ମର ବିଜୟ ତାହା ଦେବପ୍ରିୟଙ୍କର ମୁଖ୍ୟ ବିଜୟ । ଦେବତାମାନଙ୍କର ପ୍ରିୟଙ୍କୁ ଏଠାରେ (ଆପଣା ରାଜ୍ୟରେ) ତଥା ସମସ୍ତ ସୀମାନ୍ତ ପ୍ରଦେଶରେ ଛଅଶତ ଯୋଜନ ପର୍ଯ୍ୟନ୍ତ ଯେଉଁଠାରେ ଅନ୍ତିୟୋକସ ନାମକ ଯବନ ରାଜା ତଥା ଅନ୍ୟ ଚାରିଜଣ ରାଜା– ତୁରମୟ, ଅନ୍ତକିନ, ମଗ ତଥା ଅସିକସୁନ୍ଦର(ଙ୍କର ରାଜ୍ୟ) ଥିଲେ ଏବଂ ତା'ର ଦକ୍ଷିଣରେ ଚୋଳ, ପାଣ୍ଡ୍ୟ, ତାମ୍ରପର୍ଣ୍ଣୀଙ୍କ ଠାରୁ ସେହି ବିଜୟ ପ୍ରାପ୍ତ ହୋଇଥିଲା । ଏଠାରେ ବିପ୍ରବୃଜ୍ଜି, ଯବନ, କଂବୋଜ, ନାଭିତି, ଭୋଜ, ପୈଠନିକ, ଆନ୍ଧ୍ର, ପୁଳିନ୍ଦ ଆଦିଙ୍କର ଦେଶରେ ଦେବପ୍ରିୟଙ୍କର ଧର୍ମାନୁଶାସନ ମାନ୍ୟ ହେଉଥିଲା । ଯେଉଁଠାକୁ ଦେବପ୍ରିୟଙ୍କର ଦୂତ ଯାଉ ନ ଥିଲେ ସେଠାରେ ଲୋକେ ମଧ ଦେବପ୍ରିୟଙ୍କର ଧର୍ମବିଧାନ ଏବଂ ଧର୍ମାନୁଶାସନକୁ (ଆପଣା ରାଜ୍ୟରେ) ଶୁଣି ଏବଂ ଅନୁସରଣ କରି ପାଳନ କରନ୍ତି (ନିରନ୍ତର) ଓ କରିବେ ।

ଏ ପର୍ଯ୍ୟନ୍ତ (ଏଭଳି) ଯେତେ ବିଜୟ ପ୍ରାପ୍ତ ହୋଇଛି; ସେଇ ପ୍ରେମର ବିଜୟ ହିଁ ଆନନ୍ଦମୟ, ଆଉ ସେ ସବୁ ଆନନ୍ଦ ଲଘୁ । ଦେବପ୍ରିୟ ତାକୁ (ଆନନ୍ଦ) ମହା ଫଳଦାୟକ ମନେକରନ୍ତି ଯା'ର ପରଲୋକ ସହିତ ସମ୍ବନ୍ଧ ଅଛି । ତେଣୁ ମୁଁ ଏହି ଧର୍ମଲିପି ଲେଖାଇଛି ଯେ ମୋର ପୁତ୍ର ପ୍ରପୌତ୍ର ଶସ୍ତ୍ରଦ୍ୱାରା ପ୍ରାପ୍ତ ନୂତନ ବିଜୟକୁ ଯୋଗ୍ୟ ବିବେଚନା କରିବେ ନାହିଁ । ଶାନ୍ତି ଏବଂ ଲଘୁଦଣ୍ଡତାରେ ରୁଚି ରଖିବେ ଏବଂ ଧର୍ମର ବିଜୟକୁ ବିଜୟ ବୋଲି ଭାବିବେ । (କାରଣ ତାହା ଲୋକ ପରଲୋକ (ଉଭୟ)ରେ ଫଳ ପ୍ରଦାନକାରୀ । ଉଦ୍ୟମ ପ୍ରତି ଅନୁରକ୍ତି ହିଁ ସବୁ ପ୍ରକାରର ବିଜୟ । (କାରଣ) ତାହା ଇହ ଓ ପରଲୋକ (ଉଭୟ)ରେ ଫଳପ୍ରଦାନକାରୀ ।

ଅଶୋକଙ୍କର ଶିଳାଲେଖମାନଙ୍କ ମଧରେ ଏହା ତ୍ରୟୋଦଶ ପ୍ରଜ୍ଞାପନର ଅନୁବାଦ । ଏହା ରାୟବାହାଦୁର ଗୌରୀଶଙ୍କର ହୀରାଚନ୍ଦ୍ର ଓଝାଙ୍କର ହିନ୍ଦୀ ଅନୁବାଦ । ଏହା କାଶୀନଗରୀ ପ୍ରଚାରିଣୀ ସଭାଦ୍ୱାରା ପ୍ରକାଶିତ ହୋଇଥିଲା ଏବଂ ତାହା ବ୍ୟବହାର କରିବାକୁ ସ୍ୱର୍ଗୀୟ ଯଶପାଳଜୀଙ୍କୁ ନଗରୀ ପ୍ରଚାରିଣୀ ସଭା ଅନୁମତି ପ୍ରଦାନ କରିଥିଲେ ।

———o———

# ପରିଶିଷ୍ଟ

## (କ)

### ତ୍ରୟୋଦଶ ଅନୁଶାସନ

ପାକିସ୍ଥାନର ସାହବଜ୍‌ଗଡ଼ି ଶିଳା ଅନୁଶାସନର ମୂଳ ପାଠ ।

ଲିପି – ଖରୋଷ୍ଠି (ଡାହାଣରୁ ବାମକୁ ଲିଖିତ) ।

ସମ୍ପାଦନା କରିଅଛନ୍ତି –

Buhler – **Epigraphia Indica,** Vol. II. PP. 246 ff.

Hultzsch – **Corpus Inscriptionum Indicarum,** Vol. I. PP. 66 ff.

Sircar – **Select Inscriptions,** Vol. I, PP. 35 ff.

Sahu – **Utkal University, History of Orissa,** Vol. I, PP. 286 ff.

୧ମ ଧାଡ଼ି – [ଅଠ] ବଷ ଅ [ଭିସି] ତ [ସ] [ଦେବନ] ପ୍ରି [ୟ] ସ ପ୍ରି [ୟ] ଦ୍ରଶିସ ର [ଞୋ] କ [ଲିଗ] ବି [ଜି] ତ [।] ଦିଅଢ଼ ମ [ତ୍ରେ] ପ୍ରଣ ଶତ [ସହ] ସ୍ରେ [ୟେ] ତତୋ ଅପବୁଢ଼େ ଶତ ସହସ୍ର ମତ୍ରେ ତତ୍ର ହତେ ବହୁ ତବତ [କ] [ବ] [ମୁଟେ] [।]

୨ୟ ଧାଡ଼ି – ତପେ [ପ] ଚ ଅ [ଧ୍ରୁ] ନ ଲ [ଧେ] ଷୁ [କଲିଗେଷୁ] [ତିବ୍ରେ] [ଧ୍ରମଶିଲନ] ଧ୍ର [ମକ] ମତ ଧ୍ରମନୁ ଶସ୍ତି ଚ ଦେବନ ପ୍ରିୟ ସ [।] ସୋ [ଅ] ସ୍ତି ଅନୁସୋଚନ ଦେବନ [ପ୍ରିୟ] ସ ବିଜିନିତି କଲିଗ [ନି] [।]

୩ୟ ଧାଡ଼ି – ଅବିଜିତଂ [ହି] [ବି] ଜିନମନୋ ୟା ତ [ତ୍ର]– ବଧ ବ ମରଣଂ ବ ଅପବହୋବ ଜନସ ତଂ ବଢ଼ଂ [ବେ] ଦନି [ୟ] ମ [ତଂ] ଗୁରୁ ମତ [୦] ଚ ଦେବନଂ ପ୍ରିୟସ [।] ଇଦଂ ପି ଚୁ [ତତୋ] ଗୁରୁମତ ତରଂ [ଦେବନଂ] ପ୍ରିୟସ ୟେ ତତ୍ର

୪ର୍ଥ ଧାଡ଼ି– ବସତି ବ୍ରମଣ ବି ଶ୍ରମ [ଣ] ବ ଅ [୦] ଞ୍ଜେ ବ ପ୍ରଷଂଡ଼ ଗ୍ର [ହ] ଥ ବ ଯେସୁ ବିହିତ ଏଷ ଅଗ୍ରଭୁଟି ସୁଶ୍ରୁଷ ମତ ପିତୁଷୁ ସୁଶ୍ରୁଷ ଗୁରୁନ ସୁଶ୍ରୁଷ ମିତ୍ର ସଂସ୍ତୁତ ସହୟ

୫ମ ଧାଡ଼ି– ଞାତିକେଷୁ ଦିଭଟକନଂ ସମ୍ମ ପ୍ରତିପ [ତି] ଦୃଢ଼ ଉତିତ ତେଷ ତତ୍ର ଭୋତି [ଅ] ପ [ପ୍ର] ଧୋ ବ ବଧୋ ବ ଅଭିରତନ ବ ନିତ୍ରମଣଂ [।] ୟେଷବପି ୟୁବିହିତନଂ [ସି] ନେ ହୋ ଅବିପ୍ରହିନୋ [ଏତେଂ] ଷ ମିତ୍ର ସଂସ୍ତୁତ ସହୟ ଞାତିକ ବସନ

୬ଷ୍ଠ ଧାଡ଼ି– ପ୍ରପୁଣତି [କ] ତ୍ର ତଂ ପି ତେଷ ବୋ ଅପଘ୍ରଥୋ ଭୋତି [।] ପ୍ରତିଭଗଂ ଚ [ଏ] ତଂ ସବ୍ର ମନୁଶନଂ ଗରୁମତଂ ଚ ଦେବନଂ ପ୍ରିୟ [ସ] [।] ନସ୍ତି ଚ ଏକତରେ ପି ପ୍ରଷଡ଼ସ୍ମି ନ ନମ ପ୍ରସଦୋ [।] ସୋ ଯମତ୍ରୋ [ଜ] ନୋ ତଦ କଳିଗେ [ହ] ତୋ ଚ ମୁ [ଟୋ] ଚ ଅପ [ବୁଢ଼] ଚ ତତୋ

୭ମ ଧାଡ଼ି– ଶତ ଭଗେ ବ ସହସ୍ରଭଗଂ ବ [ଅ] କ ଗୁରୁମତଂ [ବୋ] ଦେବନଂ ପ୍ରିୟସ [।] ଯୋପି ଚ ଅପକରେୟତି କ୍ଷମିତବିୟ ମତେ ବ ଦେବନଂ [ପ୍ରି] ୟସ ୟଂ ଶକୋ କ୍ଷମନୟେ [।] ଯ ପି ଚ ଅଟବି ଦେବନଂ ପ୍ରିୟ ସ ବିଜିତେ ଭୋତି ତପି ଅନୁନେତି ଅପୁନି ଜପେତି [।] ଅନୁତପେ ପି ଚ ପ୍ରଭବେ

୮ମ ଧାଡ଼ି– ଦେବନଂ ପ୍ରିୟସ ବୁଚତି ତେଷ କିତି ଅବତ୍ରପେୟୁ ନ ଚ [ହଂ] ଞେୟସୁ [।] ଇଛତି ହି [ଦେବ] ନଂ ପ୍ରିୟୋ ସବ୍ରଭୁତନ ଅକ୍ଷତି ସ [୦] ୟମ ସମ [ଚ] ରିୟଂ ରଭସିୟେ [।] ଅୟି ଚ ମୁଖମୁତ ବିଜୟେ ଦେବନଂ ପ୍ରିୟ [ସ] ଯୋ ଧ୍ରମ ବିଜୟୋ [।] ସୋ ଚ ପୁନଲଧୋ ଦେବନଂ ପ୍ରିୟସ ଇହ ଚ ସବେଷୁ ଚ ଅଂ ତେଷୁ

୯ମ ଧାଡ଼ି– [ଅ] ଷଷୁ ପି ଯୋଜନ ଶ [ତେ]ଷୁଯତ୍ର ଅଂତିୟୋକୋ ନମ [ୟୋ] ନ ରଜ ପରଂ ଚ ତେନ ଅ [୦] ତିୟୋ [କେ] ନ ଚତୁରେ ୪ ରଜନି ତୁରମୟେ ନମ ଅଂତିକିନି ନମ ମକ ନମ ଅଲିକ ସୁଦରୋ ନମ ନିଚ ଚୋଡ଼ ପଡ଼ ଅବ ତ [୦] ବପ [ଣି] ୟ [।] [ଏ] ବ ମେବ [ହି] ଦ ରଜବିଷବସ୍ମି ୟୋନ କ [୦] ବୋ ଯେଷୁ ନଭକ ନଭିତିନ

ମାନ ସେହରା, କାଳସି ଓ ଗିର୍‌ନାରଠାରେ ଥିବା ବିକଳ୍ପ ପାଠ– ନଥିଚାପେ ଜନପଦେ ୟତା ନଥି ଇମେ ନିକାୟା ଆନତ ୟୋନେଷୁ ବଂହ୍ମନେ ଚା ଷମନେ ଚା; ନଥି, ଚା କୁବାପି ଜନପଦଷି ୟତା ନଥି ମନୁଷାନ ଏକ ତଲଷି ପି ପାଷାଡ଼ଷି ନୋ ନାମ ପ ଷା ଦେ ।

୧୦ମ ଧାଡ଼ି– ଭୋଜ ପିତିନି କେଷୁ ଅଂଧ୍ର ପଲିଦେଷୁ ସବତ୍ର ଦେବନଂ ପ୍ରିୟସ ଧ୍ରମନୁ ଶସ୍ତି ଅନୁବଟଂତି [।] ଯତ୍ରପି ଦେବନଂ ପ୍ରିୟସ ଦୁତ ନ ବ୍ରଚଂତି ତେପି ଶ୍ରୁତୁ ଦେବନଂ ପ୍ରିୟସ ଧ୍ରମବୁଟଂ ବିଧନଂ ଧ୍ରମନୁ ଶସ୍ତି ଧ୍ରମଂ [ଅ] ନୁ ବିଧିୟଂତି ଅନୁବିଧିୟିଶଂ [ତି] ଚ [।] ୟୋ [ଚ] ଲଧେ ଏତକେନ ଭୋ [ତି] ସବତ୍ର ବିଜୟୋ ସବ [ତ୍ର] ପୁ [ନ]

୧୧ଶ ଧାଡ଼ି– ବିଜୟୋ ପ୍ରିତିରସୋ ସୋ [।] ଲଧ [ଭୋତି] ପ୍ରିତିଧ୍ରମ ବିଜୟସ୍ପି [।] ଲହୁକ ତୁ ଖୋ ସପ୍ରିତି [।] ପରତ୍ରି [କ] ମେବ ମହଫଲ ମେଞ୍ଚତି ଦେବନ [ଠ] ପିୟୋ [।] ଏତୟେ ଚ ଅଠୟେ ଅୟି ଧ୍ରମଦିପି ନିପି [ସ୍ତ] [।] କିତି ପୁତ୍ର ପପୋତ୍ର ମେ ଅସୁ ନବଂ ବିଜୟଂ ମ ବିଜେତ [ବି] ଅ ମଞ୍ଜିଷୁ ସ୍ବ [କସ୍ପି] ୟୋ ବିଜ [ୟେ] [କ୍ଷଂ] ତି ଚ ଲହୁ ବ [ଠ] ଡ଼ ତ ଚ ରୋଚେତୁ ତଂ ଚ ୟୋ ବିଜୟଂ ମଞ୍ଜ [ତୁ]

୧୨ଶ ଧାଡ଼ି– ୟୋ ଧ୍ରମ ବିଜୟୋ [।] ସୋ ହିଦଲୋକିକୋ ପରଲୋକିକୋ [।] ସବ ଚତିରତି ଭୋତୁ ଯ [ଧ୍ରଂ] ମରତି [।] ସା ହି ହିଦଲୋକିକ ପରଲୋକିକ [।।]

## ଓଡ଼ିଆ ଭାଷାନ୍ତର

୧ମ ଧାଡ଼ି– ଅଭିଷେକର ଅଷ୍ଟମ ବର୍ଷରେ ଦେବପ୍ରିୟ ପ୍ରିୟଦର୍ଶୀ ରାଜା କଳିଙ୍ଗ ଜୟ କଲେ । ତଦ୍ଦ୍ୱାରା ଦେଢ଼ ଶହ ହଜାର ଲୋକ ବନ୍ଦୀ ହେଲେ, ଶହେହଜାର ନିହତ ହେଲେ ଏବଂ ସେହି ସଂଖ୍ୟକ ବ୍ୟକ୍ତି ଅନ୍ୟ ପ୍ରକାରେ ମୃତ୍ୟୁବରଣ କଲେ ।

୨ୟ ଧାଡ଼ି– ବର୍ତ୍ତମାନ କଳିଙ୍ଗ ଅଧିକାର କରିବା ପରେ ଦେବପ୍ରିୟଙ୍କର ତୀବ୍ର ଧର୍ମଶୀଳନ, ଧର୍ମକାମତା ଓ ଧର୍ମପ୍ରଚାର ଇଚ୍ଛା ପ୍ରକାଶ ପାଇଅଛି । କଳିଙ୍ଗ ଜୟକରି ଦେବପ୍ରିୟଙ୍କର ଅନୁଶୋଚନା ଜନ୍ମିଅଛି ।

୩ୟରୁ ୫ମ ଧାଡ଼ି– ଏକ ଅବିଜିତ ରାଜ୍ୟ ବିଜିତ ହେବା ପରେ ଯେଉଁ ହତ୍ୟା, ମୃତ୍ୟୁ, ବନ୍ଧନ ଆଦି ଘଟିଯାଇଛି ତାହା ଦେବପ୍ରିୟଙ୍କ ପକ୍ଷରେ ଅତି ବେଦନାଦାୟକ ଓ ଗୁରୁତର ବିଷୟ । ଦେବପ୍ରିୟଙ୍କର ଆହୁରି ଅଧିକ ଦୁଃଖ ଏହି ଯେ ସେଠାରେ ବସବାସ କରୁଥିବା ବ୍ରାହ୍ମଣ, ଶ୍ରମଣ ଓ ବିଭିନ୍ନ ଧର୍ମାବଲମ୍ବୀ ଗୃହସ୍ଥ, ଯେଉଁମାନେ ବୟସ୍କ ଲୋକଙ୍କୁ, ପିତାମାତାଙ୍କୁ ତଥା ଗୁରୁଜନଙ୍କୁ ଭକ୍ତି କରନ୍ତି ଏବଂ ମିତ୍ର, ବନ୍ଧୁବାନ୍ଧବ, ଦାସ, ଭୃତ୍ୟଙ୍କ ପ୍ରତି ସାଧୁ ବ୍ୟବହାର କରନ୍ତି, ସେମାନଙ୍କର ମଧ୍ୟ ବହୁ କ୍ଷୟକ୍ଷତି ହୋଇଅଛି, ହତ୍ୟା ବା ମୃତ୍ୟୁ ଘଟିଛି ଅଥବା ପ୍ରିୟଜନଙ୍କର ଦେଶାନ୍ତର ଦଣ୍ଡଜନିତ ଦୁଃଖଭୋଗ ହୋଇଅଛି ।

୫ମରୁ ୭ମ ଧାଡ଼ି– ଯେଉଁମାନେ ଭାଗ୍ୟବଶତଃ ରକ୍ଷା ପାଇଯାଇଅଛନ୍ତି ଓ ଯେଉଁମାନଙ୍କ ଅନ୍ତରରେ ଏ ବିଭୀଷିକା ସତ୍ତ୍ୱେ ସ୍ନେହଭାବ କ୍ଷୁଣ୍ଣ ହୋଇ ନାହିଁ, ସେମାନେ ମଧ୍ୟ ନିଜ ନିଜର ମିତ୍ର, ବନ୍ଧୁବାନ୍ଧବଙ୍କ ହତ୍ୟା ବା ମୃତ୍ୟୁଜନିତ ଦୁଃଖ ଭୋଗ କରିଅଛନ୍ତି । ପ୍ରତ୍ୟେକ ବ୍ୟକ୍ତି ଯେ ଏ ମହାନ୍ ଦୁଃଖର ଭାଗୀ ହେଲେ ଏହା ଦେବପ୍ରିୟଙ୍କ ମନରେ ଗୁରୁତର ବେଦନା ପ୍ରଦାନ କରୁଅଛି । ଯବନମାନଙ୍କ ଅଞ୍ଚଳ ଛାଡ଼ିଦେଲେ ଏପରି କୌଣସି ରାଜ୍ୟ ନାହିଁ, ଯେଉଁଠାରେ ବ୍ରାହ୍ମଣ, ଶ୍ରମଣ ନାହାନ୍ତି ଏବଂ ଏପରି ରାଜ୍ୟ ମଧ୍ୟ ନାହିଁ ଯେଉଁଠି କୌଣସି ଧର୍ମ ସଂପ୍ରଦାୟର ଲକ୍ଷ୍ୟ ଶାନ୍ତି ନୁହେଁ । ତେଣୁ କଳିଙ୍ଗରେ ଯେଉଁ ସଂଖ୍ୟକ ଲୋକଙ୍କ ହତ୍ୟା, ମୃତ୍ୟୁ ବା ବନ୍ଧନ ଘଟିଲା, ତାହାର ଶତ ବା ସହସ୍ର ଭାଗ ଯଦି ପୁଣି ଆଜି ଘଟେ ତାହା ଦେବପ୍ରିୟଙ୍କ ପକ୍ଷେ ଅତି ବେଦନାଦାୟକ ହେବ ।

୭ମରୁ ୮ମ ଧାଡ଼ି– ଯଦି କେହି ବ୍ୟକ୍ତି ଅପକର୍ମ କରନ୍ତି ତାଙ୍କୁ ଦେବପ୍ରିୟ ଯେତେ କ୍ଷମା କରିବାରେ ସମର୍ଥ ସେତିକି କ୍ଷମା ଦେବେ । ଦେବପ୍ରିୟଙ୍କର ବିଜିତ ରାଜ୍ୟରେ ଯେଉଁ ଆଟବିକମାନେ ଅଛନ୍ତି ସେମାନଙ୍କୁ ସେ ଅନୁନୟପୂର୍ବକ ସତର୍କ କରି ଦେଉଛନ୍ତି ଯେ ଦେବପ୍ରିୟ ଅନୁତପ୍ତ ଥିବାବେଳେ ମଧ୍ୟ ପ୍ରଭାବଶାଳୀ

ଅଟନ୍ତି । ତେଣୁ ସେ ସେମାନଙ୍କୁ କହନ୍ତି– ଅପକର୍ମରୁ କ୍ଷାନ୍ତ ହୁଅ, ନଚେତ୍ ନିହତ ହେବ । ଦେବପ୍ରିୟ ସମସ୍ତଙ୍କ ନିମନ୍ତେ ଅକ୍ଷତି, ସଂଯମ, ଅପକ୍ଷପାତ ଓ ମୃଦୁଭାବ ଇଚ୍ଛା କରନ୍ତି ।

୮ମରୁ ୯ମ ଧାଡ଼ି– ଧର୍ମ ବିଜୟ ଯେ ପ୍ରକୃତ ବିଜୟ ଏହା ଦେବପ୍ରିୟଙ୍କର ମୁଖ୍ୟ ମତ । ଦେବପ୍ରିୟ ସାମ୍ରାଜ୍ୟ ବହିଃସ୍ଥିତ ରାଜ୍ୟମାନଙ୍କରେ ଏପରି କି ଛଅଶହ ଯୋଜନ ଦୂରସ୍ଥ ଅନ୍ତିୟୋକ * ନାମକ ଯବନ ରାଜାଙ୍କ ରାଜ୍ୟରେ ଏବଂ ସେହି ଅନ୍ତିୟୋକଙ୍କ ସମୀପରେ ତୁରମେୟ, ଅନ୍ତିକିନ, ମଗ ଓ ଅଳିକ ସୁନ୍ଦର ନାମକ ଚାରିଜଣ ରାଜାଙ୍କ ରାଜ୍ୟରେ ପୁଣି ଦକ୍ଷିଣାଞ୍ଚଳରେ ଚୋଡ଼, ପାଣ୍ଡ୍ୟ, ତାମ୍ରପର୍ଣ୍ଣୀ ପର୍ଯ୍ୟନ୍ତ ସର୍ବତ୍ର ଧର୍ମ ବିଜୟଲାଭ କରିଅଛନ୍ତି ।

୯ମରୁ ୧୦ମ ଧାଡ଼ି– ସେହିପରି ସାମ୍ରାଜ୍ୟ ଆଭ୍ୟନ୍ତରରେ ବସବାସ କରୁଥିବା ଯବନ, କମ୍ବୋଜ, ନଭାକ, ନାଭପନ୍ତି, ଭୋଜ, ପିଟିନିକ, ଆନ୍ଧ୍ର, ପାରଦ ଆଦି ଲୋକ ସର୍ବତ୍ର ଦେବପ୍ରିୟଙ୍କର ପ୍ରଚାରିତ ଧର୍ମର ଅନୁବର୍ତ୍ତୀ ହେଉଅଛନ୍ତି । ଯେଉଁ ଅଞ୍ଚଳଗୁଡ଼ିକୁ ଦେବପ୍ରିୟଙ୍କର ଦୂତମାନେ ଯାଇପାରି ନାହାନ୍ତି, ସେହିସବୁ ଅଞ୍ଚଳରେ ମଧ୍ୟ ଲୋକେ ଦେବପ୍ରିୟଙ୍କର ଧର୍ମବୃତ୍ତି, ଧର୍ମଉପଦେଶ ଓ ଧର୍ମ ଅନୁଶାସନ ଶୁଣି ଧର୍ମବିଧି ଆଚରଣ କରୁଅଛନ୍ତି ଏବଂ ତାହା ଆଚରଣ କରିବା ନିମନ୍ତେ ଅନ୍ୟମାନଙ୍କୁ ପ୍ରବର୍ତ୍ତାଉ ଅଛନ୍ତି ।

---

* ଆନ୍ତିୟୋକ– ପଶ୍ଚିମ ଏସିଆରେ ସିରିଆ ରାଜ୍ୟରେ ଅଧିପତି ଆଣ୍ଟିଓକସ୍ ୨ୟ ଥେଓସ୍ (ଖ୍ରୀ: ପୂ: ୨୬୧–୨୪୬)

ତୁରମେୟ– ଇଜିପଟ୍‌ର ଶାସକ ଟୋଲେମି ୨ୟ ଫିଲାଡେଲ୍‌ଫସ୍ (ଖ୍ରୀ: ପୂ: ୨୮୫–୨୪୭)

ଅନ୍ତିକିନ– ମାସିଡୋନିଆର ରାଜା ଆଣ୍ଟିଗୋନସ୍ ଗୋନେଟସ୍ (ଖ୍ରୀ: ପୂ: ୨୭୨–୨୩୯)

ମଗ– ଉତ୍ତର ଆଫ୍ରିକାର ସିରିନି ରାଜ୍ୟର ରାଜା ମେଗସ୍ (ଖ୍ରୀ: ପୂ: ୨୮୨–୨୫୮)

ଅଳିକ ସୁନ୍ଦର– ଏପିରସ ରାଜ୍ୟର ଶାସକ ଆଲେକ୍‌ଜାଣ୍ଡାର (ଖ୍ରୀ: ପୂ: ୨୭୨–୨୫୫) କିମ୍ବା କରିନ୍ଥ ରାଜ୍ୟର ଶାସକ ଆଲେକ୍‌ଜାଣ୍ଡାର (ଖ୍ରୀ: ପୂ: ୨୫୨–୨୪୪)

୧୦ମରୁ ୧୨ଶ ଧାଡ଼ି– ଏହାଦ୍ୱାରା ସର୍ବତ୍ର ବିଜୟଲାଭ ହେଉଅଛି ଏବଂ ସେହି ବିଜୟ ହିଁ ସର୍ବତ୍ର ପ୍ରୀତିରସଯୁକ୍ତ । ଧର୍ମ ବିଜୟରେ (ଜେତା ଓ ବିଜେତା ଉଭୟଙ୍କର) ପ୍ରୀତିଲାଭ ହୋଇଥାଏ । ମାତ୍ର ସେହି ପ୍ରୀତି ମଧ୍ୟ ଲଘୁ ମନେହୁଏ, କାରଣ ଦେବପ୍ରିୟ ପାରତ୍ରିକ ପ୍ରୀତିକୁ ହିଁ ମହାନ୍ ଜ୍ଞାନ କରନ୍ତି ।

୧୧ଶରୁ ୧୨ଶ ଧାଡ଼ି– ଏହି ଧର୍ମଲିପି ଯେଉଁ ଉଦ୍ଦେଶ୍ୟରେ ଉତ୍କୀର୍ଣ୍ଣ ହେଲା ତାହା ହେଉଛି ଏହା – ମୋର ପୁତ୍ର ଓ ପୌତ୍ରମାନେ ନୂତନ ରାଜ୍ୟ ଜୟ ନିମନ୍ତେ ଆଗ୍ରହୀ ନ ହୁଅନ୍ତୁ । ସେମାନେ ଅସ୍ତ୍ରଦ୍ୱାରା ବିଜୟ କରିବା ନୀତିରୁ କ୍ଷାନ୍ତ ହୁଅନ୍ତୁ । ଏ ଲଘୁ ଦଣ୍ଡ ପ୍ରୟୋଗ କରିବାରେ ସନ୍ତୁଷ୍ଟ ହୁଅନ୍ତୁ । ଧର୍ମଦ୍ୱାରା ଯେଉଁ ବିଜୟଲାଭ ହୁଏ ତାହା ହିଁ ପ୍ରକୃତ ବିଜୟ ବୋଲି ସେମାନେ ଜ୍ଞାନ କରନ୍ତୁ । କାରଣ ତାହାର ଫଳ ହେଉଛି ଉଭୟ ଇହଲୌକିକ ଓ ପାରଲୌକିକ । ଧର୍ମ ପ୍ରତି ହିଁ ସେମାନଙ୍କର ପ୍ରକୃଷ୍ଟ ପ୍ରୀତି ହେଉ, କାରଣ ତାହାହିଁ ଇହଲୌକିକ ଓ ପାରଲୌକିକ ଫଳ ପ୍ରଦାନ କରେ ।

## (ଖ)

## ସ୍ୱତନ୍ତ୍ର କଳିଙ୍ଗ ଅନୁଶାସନ (୧)

ଧଉଳି ଶିଳା ଅନୁଶାସନର ମୂଳ ପାଠ ।

ଲିପି – ବ୍ରାହ୍ମୀ

ସଂପାଦନା କରିଅଛନ୍ତି –

Kern – **Journal of Royal Asiatic Society** (1880) PP. 379 ff.

Senart – **Intan Antiquary,** Vol. IX, PP. 82 ff.

Buhler – **Archaeological Survey of South India,** Vol. I, PP, 114 ff.

Hultzsch – **Corpus Inscriptionum Indicarum,** Vol. I, PP, 92 ff.

Sircar – **Select Inscriptions,** Vol. I, PP. 41 ff.

Sahu – **Utkal University, History of Orissa,** Vol. I. PP. 282 ff.

୧ମ ଧାଡ଼ି– [ଦେବାନଂ] [ପି] ୟ [ସ] [ବଚ] ନେନ ତୋସଲିୟଂ ମ [ହା] ମାତ [ନଗ] ଲ [ବିୟୋ] ହାଲକ [।]

୨ୟ ଧାଡ଼ି– [ବ] ତବିୟ [।] [ଅଂ] କିଛି [ଦଖା] ମି ହକଂ ତଂ ଇଛାମି [କିଂତି] କଂ [ମନ] [ପ] ଟି [ପାଦୟେ] ହଂ

୩ୟ ଧାଡ଼ି– ହୁବାଲତେ ଚ ଆଲଭେହଂ [।] ଏସଚମେ ମୋଖ୍ୟ ମତ ହୁବା [ଲ] [ଏତସି] [ଅଠ] ସି ଅଂ ତୁ [ଫେସୁ] ।

୪ର୍ଥ ଧାଡ଼ି– ଅନୁସଥି [।] ତୁଫେ ହି ବହୁସୁ ପନସହସେସୁ ଆ [ୟତ] ପନ [ୟଂ] [ଗ] ଛେମ ସୁ ମୁନିସାନଂ [।] ସବେ

୫ମ ଧାଡ଼ି– ମୁନସେ ପଜାମମା [।] ଅଥ [।] ପଜାୟେ ଇଛାମି ହକ [୦] [କିଂତି] [ସ] ବେ [ନ] [ହି] ତ ସୁଖେନ ହିଦଲା [କିକ]

୬ଷ୍ଠ ଧାଡ଼ି– ପାଲଲୋକିକେ [ନ] [ୟୁଜେବୂ] [ତି] ତଥା [ସବମୁନି] ସେସୁ ପି [ଇ] ଛାମି [ହ] କ [୦] [।] ନୋଚ ପାପୁନାୟ ଆବ ଗ

୭ମ ଧାଡ଼ି– [ମୁକେ] [ଇୟଂଅଠେ] [।] [କେଛ] [ବ] ଏକ ପୁଲି [ସେ] [ପାପୁ] ନାତି ଏ [ତଂ] ସେ ପି ଦେସଂ ନୋ ସବଂ [।] ଦେ [ଖତ] [ହି] [ତୁଫେ] ଏତଂ

୮ମ ଧାଡ଼ି– ସୁବି [ହି] ତାପି [।] [ନି] ତିୟଂ ଏକ ପୁଲି ସେ [ପି] [ଅଥି] [ଯେ] ବଂଧନଂ ବା ପଲିକିଲେସଂ ବା ପାପୁନାତି [।] ତତ ହୋତି

୯ମ ଧାଡ଼ି– ଅକସ୍ମା ତେନ ବଧନ [୦] ତିକ ଅଂନେଚ [ତତ] [ବ] ହୁ ଜନେ ଦ [ବି] ୟେ ଦୁଖୀୟତି [।] ତତ ଇଛିତଂ ବିୟେ

୧୦ମ ଧାଡ଼ି– ତୁଫେହି କିଂତି ମଝଂ ପଟିପାଦୟେ ମାତି [।] ଇମେ [ହି] ଚୁ [ଜାତେହି] ନୋ ସଂପଟି ପଜତି ଇସାୟ ଆସୁଲୋପେନ

୧୧ଶ ଧାଡ଼ି– ନି [ଠୂ] ଲିୟେନ ତୂଲନା [ୟ] ଅନାବୂତିୟ ଆଲସିୟେନ କିଲମଥେନ [।] ସେ ଇଛିତବିୟେ କିଂତି ଏତେ

୧୨ଶ ଧାଡ଼ି– [ଜାତା] [ନୋ] ହୁବେବୁ ମ [ମା] ତି [।] ଏତସ ଚ ସବ [ସ] ମୂଲେ ଅଂନ୍ନାସୁଲୋପେ ଅ [ତ୍ରୂ] ଲନା ଚ [।] ନିତି [ୟଂ] ଏ କିଲଂତେ ସିୟା

୧୩ଶ ଧାଡ଼ି– [ନ] ତେ ଭଗ [ଛେ] ସଂଚଲିତ ବି [ୟେ] ତୁ ବ [ଟି] ତ [ବିୟେ] ଏତବିୟେବା [।] ହେବଂ ମେବ ଏଦ [ଖେୟ] [ତୁ] ଫାକ ତେନ କତବିୟେ ।

୧୪ଶ ଧାଡ଼ି– ଆନଂନେ ଦେଖତ ହେବଂ ଚ ହେବଂ ଚ [ଦେ] ବାନଂପିୟସ୍ ଅନୁସଥି [।] ସେ ମହାଫ [ଲେ] [ଏ] ତସ [ସଂପ] ଟିପାଦ

୧୫ଶ ଧାଡ଼ି– ମହା ଅପାୟେ ଅସଂପଟିପତି [।] [ବି] ପଟି ପାଦୟମୀନେ ହି ଏତଂ ନଥି ସ୍ୱଗସ [ଆଲ] ଧି ନୋ ଲାଜାଲଧି [।]

୧୬ଶ ଧାଡ଼ି– ହୁଆ [ହ] ଲେ ହି ଇ [ମ] ସ କଂମ [ସ] [ମେ] କୁତେ ମ [ନେ] ଅତିଲେକେ [।] ସ [ଠ] ପଟିପଜ [ମୀ] [ନେ] କୁ [ଏତଂ] ସ୍ୱଗ [ଠ]

୧୭ଶ ଧାଡ଼ି– ଆଲାଧ [ୟି] ସ [ଥ] [ମମ] [ଚ] [ଆ] ନନିୟଂ ଏହଥ [।] ଇୟଂଚ [ଲିପି] [ତି] ସନ [ଖ] ତେନ ସୋ [ତ] ବିୟା [।]

୧୮ଶ ଧାଡ଼ି– ଅଂତ [ଲା] [ପି] ଚ [ତିସେନ] [ଖ] ନସି ଖ [ନସି] ଏକେନ ପି ସୋତବିୟ [।] ହେବଂ ଚ କେଲଂତଂ ତୁଫେ

୧୯ଶ ଧାଡ଼ି– ଚଘଥ ସଂପ [ଟି] ପାଦୟିତବେ [।] [ଏତା] ୟେ ଅଠାୟେ ଇୟ [ଠ] [ଲିପି] ଲିଖିତ [ହି] ଦ ଏନ

୨୦ଶ ଧାଡ଼ି– ନଗଲ ବି [ୟୋହା] ଲକା ସ [ସ୍ୱ] ତଂ ସମୟଂ ଯୂଜେବତି [ଏନ] [ଜନ] ସ ଅକସା [ପ] ଲି ବୋଧେ ବ

୨୧ଶ ଧାଡ଼ି– ଅକସ୍ମା ପଲିକି [ଲେସେ] ବ ନୋ ସିୟା ତି [।] ଏତାୟେ ଚ ଅଠାୟେ ହକ [ଠ] [ମହା] ମତେ ପଂଚସୁ ପଚସୁ [ବ] ସେ

୨୨ଶ ଧାଡ଼ି– ସୁ [ନିଖା] ମୟିସାମି ଏ ଅଖଖସେ ଅ [ଚଂଡ଼େ] ସଖିନାଲଂଭେ ହୋସତି ଏତଂ ଅଠଂ ଜାନିତୁ [ତଂ] [ପି] [ତ] ଥା

୨୩ ଧାଡ଼ି– କଲ [୦] ତି ଅଥ ମମ ଅନୁସଥୀତି [।] ଉଜେନିତେ ପି ଚ କୁମାଲେ ଏତାୟେ ବ ଅଠାୟେ [ନି] ଖାମ [ୟିସ] [ତି] X X X

୨୪ଶ ଧାଡ଼ି– ହେଦିସ ମେବ ବଗଂ ନୋ ଅତିକାମୟିସତି ତିଂନି ବସାନି [।] ହେମେବ ତଖ [ସି] ଲାତେ ପି [।] [ଅ] ଦା ଅ X X X

୨୫ଶ ଧାଡ଼ି– ତେ ମହାମତା ନିଖମିସଂତି ଅନୁସୟାନଂ ତଦା ଅହାପୟିତୁଂ ଅତନେ କଂମଂ ଏତଂ ପି ଜାନିସଂତି

୨୬ଶ ଧାଡ଼ି– ତଂ ପି ତ [ଥା] କଲଂ ତି ଅ [ଥ] ଲାଜିନେ ଅନୁସଥୀତି [।।]

## ଓଡ଼ିଆ ଭାଷାନ୍ତର

୧ମରୁ ୪ର୍ଥ ଧାଡ଼ି– ଦେବପ୍ରିୟଙ୍କର ଆଦେଶ ଏହି ଯେ ତୋଷାଳୀରେ ନିଯୁକ୍ତ ମହାମାତ୍ର ଓ ନଗର ବ୍ୟବହାରିକଗଣ ନିଜନିଜକୁ କହନ୍ତୁ– "ମୁଁ ଯାହା ଉଚିତ ବୋଲି ଦେଖୁଛି ତାହା ଫଳପ୍ରଦଭାବରେ ଉତ୍ସାହର ସହିତ କାର୍ଯ୍ୟରେ ପ୍ରତିପାଦନ କରିବାପାଇଁ ଇଚ୍ଛା କରୁଛି ।" ଏହା ମୋର ମୁଖ୍ୟ ମତ ଏବଂ ଏହି ଉଦ୍ଦେଶ୍ୟରେ ହିଁ ମୁଁ ତୁମମାନଙ୍କୁ ଏ ଅନୁଜ୍ଞା ପ୍ରଦାନ କରୁଅଛି ।

୪ର୍ଥରୁ ୬ଷ୍ଠ ଧାଡ଼ି– ତୁମେ ସମସ୍ତେ ବହୁ ସହସ୍ରଲୋକଙ୍କର ଦାୟିତ୍ୱ ବହନ କରି କର୍ତ୍ତବ୍ୟରେ ବ୍ୟାପୃତ ଅଛ । ତେଣୁ ତୁମେମାନେ ମାନବ ସମାଜପ୍ରତି ପ୍ରେମ କର । ସମସ୍ତ ମନୁଷ୍ୟ ମୋର ସନ୍ତାନ । ମୁଁ ଯେପରି ମୋର ସନ୍ତାନଙ୍କ ପାଇଁ ଚାହେଁ ଯେ ସେମାନେ ଇହଲୋକ ଓ ପରଲୋକ ଉଭୟତ୍ର ହିତ ଓ ସୁଖ ଲାଭ କରନ୍ତୁ, ସେହିପରି ସମସ୍ତ ମନୁଷ୍ୟଙ୍କ ନିମନ୍ତେ ତାହାହିଁ ଇଚ୍ଛା କରେ ।

୬ଷ୍ଠରୁ ୮ମ ଧାଡ଼ି– ଏହାର ଭାବାର୍ଥ କେତେଦୂର ପ୍ରସାରିତ ତୁମେ ଜାଣିପାରୁ ନାହଁ । ଯଦି ତୁମ ମଧ୍ୟରୁ ଜଣେ କେହି ଏହା ବୁଝିଛନ୍ତି ତେବେ ସେ ଆଂଶିକ ମାତ୍ର ଉପଲବ୍ଧି କରିଛନ୍ତି–

ପୂର୍ଣ୍ଣମାତ୍ରାରେ ନୁହେଁ । ତୁମେ ସମସ୍ତେ (ରାଜନୁଗ୍ରହରୁ) ସୁଖ, ସୁବିଧାରେ ଥିବା ହେତୁ ଏକା ଜାଣିରଖିବା ଉଚିତ ।

୮ମରୁ ୧୨ଶ ଧାଡ଼ି— ଦଣ୍ଡନୀତି ଅନୁସାରେ କେହି କେହି କାରାବାସ ବା ପରିକ୍ଳେଶ ଭୋଗି ପାରନ୍ତି ତଦ୍ୱାରା କାହାର କାରାଗାରରେ ଆକସ୍ମିକ ମୃତ୍ୟୁ ହୋଇଯାଇପାରେ ଓ କେତେକ କାରାରୁଦ୍ଧ ବ୍ୟକ୍ତି ଦୀର୍ଘକାଳ ଦୁଃଖ ଭୋଗ କରିପାରନ୍ତି । ତେଣୁ ତୁମେମାନେ ଇଚ୍ଛା କର ଯେ ତୁମେ ସମସ୍ତେ ଅପକ୍ଷପାତ ବିଚାର ପ୍ରୟୋଗ କରିବ । ଯେଉଁସବୁ ଅପବର୍ଗ ଦ୍ୱାରା ଅପକ୍ଷପାତ ସମ୍ଭବ ହୋଇପାରେ ନାହିଁ ସେଗୁଡ଼ିକ ହେଉଛି — ଈର୍ଷା, କ୍ରୋଧ, ନିଷ୍ଠୁରତା, କ୍ଷିପ୍ରତା, ଅନଭ୍ୟାସ, ଆଳସ୍ୟ ଓ ଅବସାଦ । ତେଣୁ ତୁମେ ପ୍ରତ୍ୟେକ ଇଚ୍ଛା କର ଯେ, "ଏହିସବୁ ଅପବର୍ଗ ମୋଠାରେ ନ ରହୁ ।" କର୍ତ୍ତବ୍ୟ ସଂପାଦନ ମୂଳରେ ରହିଛି ଅକ୍ରୋଧ ଓ ମାନସିକ ଧୀରତା ।

୧୨ଶରୁ ୧୫ଶ ଧାଡ଼ି— ଦଣ୍ଡନୀତି ବିଚାରବେଳେ ଯଦି କ୍ଳାନ୍ତି ବୋଧହୁଏ ତେବେ ତାହା କରିବାକୁ ଯାଅ ନାହିଁ । ତାହା ବିଚାର କରିବାକୁ ହେଲେ ଧୈର୍ଯ୍ୟର ସହିତ ଅଗ୍ରସର ହେବା ଉଚିତ । ଯେଉଁମାନେ ଏହା ଉପଲବ୍ଧି କରିପାରୁଅଛ ସେମାନେ କହ— "ଏହା ହେଉଛି ଦେବପ୍ରିୟଙ୍କର ଅନୁଜ୍ଞା ଓ ଏହା ବ୍ୟତୀତ ଆମେ ଅନ୍ୟ କିଛି ବୁଝୁ ନାହୁଁ । ଏହି ଆଦେଶ ଉପଯୁକ୍ତରୂପେ ପାଳନ କରିବାରେ ମହାଫଳ ମିଳେ ଏବଂ ଏହା ଅବଜ୍ଞା କଲେ ବିଶେଷ କ୍ଷତି ହୁଏ । ରାଜାଙ୍କର ଆଜ୍ଞାମତେ କାର୍ଯ୍ୟ ନ କଲେ ସ୍ୱର୍ଗଲାଭ ହୁଏ ନାହିଁ କି ରାଜାନୁଗ୍ରହ ଲାଭ ହୁଏ ନାହିଁ ।"

୧୬ଶରୁ ୧୭ଶ ଧାଡ଼ି—ଦ୍ୱିମନସ୍କ ହୋଇ କାର୍ଯ୍ୟ ସଂପାଦନ କଲେ ମାନସିକ ଉତ୍ସାହ ବୃଦ୍ଧି ହେବ କିପରି ? କାର୍ଯ୍ୟର ସୁସମ୍ପାଦନଦ୍ୱାରା ତୁମ୍ଭେମାନେ ସ୍ୱର୍ଗଲାଭ କରିବ ଏବଂ ମୋଠାରୁ ଋଣମୁକ୍ତ ହେବ ।

୧୭ଶରୁ ୧୯ଶ ଧାଡ଼ି—ଏହି ଅଭିଲେଖ ତୁମ୍ଭେମାନେ ତିଷ୍ୟ ନକ୍ଷତ୍ର ଦିବସରେ ପଢ଼ି ଶୁଣାଇବ । ତିଷ୍ୟ ନକ୍ଷତ୍ର ବାହାରେ ଏପରିକି

ଜଣକ ପାଇଁ ମଧ୍ୟ ଏହା ଥରେ ପଢ଼ି ଶୁଣାଉଥିବ । ଏପରି କରିବାଦ୍ୱାରା ତୁମ୍ଭେମାନେ ଉପଯୁକ୍ତ କାର୍ଯ୍ୟ ସଂପାଦନ ନିମନ୍ତେ ପ୍ରେରଣା ଲାଭ କରିବ ।

୧୯ଶରୁ ୨୩ଶ ଧାଡ଼ି—ଏହି ଲିପି ଏଠାରେ ଉତ୍କୀର୍ଣ୍ଣ କରିବାରେ ଉଦ୍ଦେଶ୍ୟ ଏହି ଯେ ନଗର ବ୍ୟବହାରକଗଣ ସର୍ବଦା ଏହି ଅନୁସାରେ କାର୍ଯ୍ୟ କରିବେ ଏବଂ ଯେପରି ଲୋକଙ୍କୁ ଆକସ୍ମିକରୂପେ କାରାଦଣ୍ଡ ବା ବିଚାରଶୂନ୍ୟଭାବେ ପରିକ୍ଲେଶ ପ୍ରଦାନ କରା ନ ଯାଏ ସେଥିପ୍ରତି ଦୃଷ୍ଟି ଦେବେ । ଏହି ଉଦ୍ଦେଶ୍ୟରେ ମଧ୍ୟ ମୁଁ ପ୍ରତି ପାଞ୍ଚ ବର୍ଷରେ ଥରେ ମହାମାତ୍ରମାନଙ୍କୁ ପ୍ରଶାସନିକ ଭ୍ରମଣରେ ପ୍ରେରଣ କରିବି । ସେମାନେ ଏହାର ଅର୍ଥ ହୃଦୟଙ୍ଗମ କରି ଅକର୍କଷ, ଅଚଣ୍ଡ ଓ ମୃଦୁ ସ୍ୱଭାବଯୁକ୍ତ ହୋଇ କର୍ତ୍ତବ୍ୟ ସଂପାଦନ କରିବେ ଏବଂ ମୋର ଆଜ୍ଞା ଅନୁଯାୟୀ କାର୍ଯ୍ୟ କରିବେ ।

୨୩ଶରୁ ୨୪ଶ ଧାଡ଼ି— ଉଜ୍ଜୟିନୀସ୍ଥ ରାଜପ୍ରତିନିଧି କୁମାର ମଧ୍ୟ ଏହି ଉଦ୍ଦେଶ୍ୟରେ ମହାମାତ୍ରମାନଙ୍କୁ ଭ୍ରମଣରେ ପଠାଇବେ, ଯେପରି ଭ୍ରମଣ କାଳର ବ୍ୟବଧାନ ତିନି ବର୍ଷରୁ ଅଧିକ ନ ହୁଏ । ଏହା ତକ୍ଷଶିଳାରେ ନିଯୁକ୍ତ ରାଜପ୍ରତିନିଧି କୁମାରଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ ।

୨୪ଶ ରୁ ୨୬ଶ ଧାଡ଼ି— ଯେତେବେଳେ ମହାମାତ୍ରମାନେ ଶାସନ ସଂକ୍ରାନ୍ତ ଭ୍ରମଣରେ ପ୍ରେରିତ ହେବେ ସେମାନେ କର୍ତ୍ତବ୍ୟ କର୍ମରେ ତ୍ରୁଟି ନ ରଖିବାପାଇଁ ଜାଣି ରଖିବେ ଯେ, ରାଜାଙ୍କର ଅନୁଜ୍ଞା ଯାହା ସେମାନେ ତାହାହିଁ କରୁଅଛନ୍ତି ।

## (ଗ)

## ସ୍ୱତନ୍ତ୍ର କଳିଙ୍ଗ ଅନୁଶାସନ (୨)

ଜଉଗଡ଼ ଶିଳା ଅନୁଶାସନର ମୂଳ ପାଠ ।

ଲିପି – ବ୍ରାହ୍ମୀ

ସମ୍ପାଦନା କରିଅଛନ୍ତି –

Kern – **Journal of Royal Asiatic Society** (1880), PP., 379 ff.

Senart – **Indian Antiquary.** Vol. XIX, PP. 82 ff.

Buhler – **Archaeological Survey of South India** Vol. I, PP. 144 ff.

Hultzsch–**Corpus Inscriptionum Indicarum,** Vol. I. PP. 115 ff.

Sircar – **Select Inscriptions,** Vol. I, PP. 46 ff.

Sahu – **Utkal University, History of Orissa,** Vol. I, PP. 294 ff.

୧ମ ଧାଡ଼ି – ଦେବାନଂ ପିୟେ ହେବଂ ଆ [ହା] ସମାପାୟଂ ମହାମତା ଲାଜ ବଚନିକ ବତବିୟା [।] ଅଂ କିଛି ଦଖାମି ହକଂ ତଂ ଇ [ଛା] ମି ହକଂ [କିଂ] ତି କଂମନ

୨ୟ ଧାଡ଼ି – ପଟିପାଦ ୟେହଂ ହୁବା [ଲ] ତେଚ ଆଲଭେହଂ [।] ଏ ସ ଚ ମେ ମୋଖିୟ ମତଂ ଦୁବାଲ ଏତସ ଅ [ଥ] ସ ଅ [0] [ତୁଫେ] ସୁ ଅନୁ ସ [ଥି] [।] ସବ ମୁନି

୩ୟ ଧାଡ଼ି – ସା ମେ ପଜା [।] ଅଥ ପଜା [ୟେ] ଇଛାମି କିଂତି ମେ ସବେଣା ହିତ ସୁ [ଖେ] ନ ୟୁ [ଜେ] ବୁ [ଅ] ଥ ପଜାୟେ ଇଛାମି କିଂ [ତି] [ମେ] ସବେନ ହିତ ସୁ

୪ର୍ଥ ଧାଡ଼ି – [ଖେ] ନ ୟୁଜେବୁ ତି ହିଦ ଲୋଗିକ ପାଲଲୋକି [କେଣ] ହେ ବଂମେବ ମେ ଇଛ ସବ ମୁନି ସେସୁ [।] ସିୟା ଅଂତାନଂ [ଅ] ବିଜିତା

୫ମ ଧାଡ଼ି— ନଂ କିଂ ଛାଂ ଦେ ସୁଲାଜା ଅ ଫେସୁ ତି [।] ଏତାକା [ବା] ମେ ଇଛ [ଅଂ] ତେ ସୁପାପୁନେୟୁ ଲାଜା ହେବଂ ଇଛତି ଅନୁ [ବିଗି] ନ ହ୍ୱେ [ୟୁ]

୬ଷ୍ଠ ଧାଡ଼ି— ମମିୟାୟେ [ଅ] ସ୍ୱସେ ୟୁ ଚ ମେ ସୁଖ ମେବ ଚ ଲ ହେ [ୟୁ] ମମଛତେ [ନେ] ଦୁଖ [୦] [।] ହେ ବଂ ଚ ପାପୁନେୟୁ ଖ [ମିସି] ତି ନେ ଲାଜା

୭ମ ଧାଡ଼ି— ଏ ସ କି ୟେ ଖମିତବେ ମମଂ ନିମିତଂ ଚ ଧଂମ [୦] ଚଲେ [ୟୁ] ତି ହିଦଲୋଗ [୦] ଚ ପଲଲୋଗ ଚ ଆଲଧୟେ [ବୂ] [।] ଏତାୟେ

୮ମ ଧାଡ଼ି— ଚ ଅଠାୟେ ହକଂ ତୁଫେନି ଅନୁସାସାମି ଅନ [ନେ] [ଏତ] କେନ [ହ୍] କଂ ତୁଫେନି ଅ [ନୁ) ସାସିତୁ ଛଂଦ [୦] [ଚ] ବେଦି

୯ମ ଧାଡ଼ି— [ତୁ] ଆ ମମ ଧିତି ପଟିଂନା ଚ ଅଚଲ [।] ସ ହେବଂ [କ] ଟୂକ [୦] ମେ [ଚ] ଲିତବିୟେ ଅସ୍ୱାସ [ନି] ୟା ଚ ତେ ଏନ ତେ ପାପୁନେ—

୧୦ମ ଧାଡ଼ି— ୟୁ ଅ [ଥା] ପିତ [ହେ] ବଂ [ନେ] ଲାଜା ତି ଅଥ [ଅ] ତାନଂ ଅନୁକଂପ [ତି] [ହେ] ବଂ ଅ [ଫେ] ନି ଅନୁକଂ [ପ] ତି ଅଥା ପଜା ହେ—

୧୧ଶ ଧାଡ଼ି— ବଂ [ମୟେ] ଲା [ଜି] ନେ [।] ତୁଫେନି ହକଂ ଅନୁସାସିତ [ଛାଂ] ଦଂ [ଚ] [ବେ ଦି] ତ [ଆ] [ମ] ମଧିତି ପଟିଂନା ଚା ଅଚଲ [ସକ] ଲ—

୧୨ଶ ଧାଡ଼ି— ଦେଶାଂଆ [ୟୁତି] କେ ହୋସାମୀ ଏତସି [ଅ] ଥସି [।] [ଅ] ଳଂ [ହି] ତୁଫେ ଅସ୍ୱାସ [ନା] ୟେ ହି [ତ] ସୁଖାୟେ [ଚ] [ତେ] ସ [୦] ହିଦ—

୧୩ଶ ଧାଡ଼ି— ଲେଗି [କ] ପାଲ [ଲୋ] କି [କାୟେ] [।] ହେବଂ ଚ କଲଂ ତଂ ସ୍ୱଗ [୦] [ଚ] [ଆ] ଲାଧୟିସ [ଥ] ମମ ଚ ଆନ [ନେ] ୟଂ ଏସଥ [।] ଏ—

୧୪ଶ ଧାଡ଼ି— ତାୟେ ଚ ଅ [ଥା] ୟେ ଇ [ୟଂ] ଲିପୀ ଲି [ଖିତ] [ହି] ଦ ଏ [ନ] [ମ] ହାମାତା ସାସ୍ୱତଂ ସମ [ୟଂ] ୟୁଜେୟୁ ଅସ୍ୱାସନାୟେ ଚ

୧୫ଶ ଧାଡ଼ି– ଧଂମ ଚଲ [ନା] ଯେ ଚ ଅଂତା [ନଂ] [।] ଇୟଂ ଚ
ଲିପୀ ଅ [ନୁ] ଟା ତୁଂ [ମା] ସଂ [ସୋତ] ବିୟା ତି
ସେନ [।] ଅଂତଲା ପି ଚ ସୋତବିୟା [।]

୧୬ଶ ଧାଡ଼ି– ଖନେ ସଂତଂ ଏକେ [ନ] ପି [ସୋତବି] ୟା [।] ହେବ
[ଠ] ଚ଼ [କ] ଲଂ [ତଂ] ଚଘତ ସଂପଟି ପାତୟିତ [ବେ]
[॥]

## ଓଡ଼ିଆ ଭାଷାନ୍ତର

୧ମରୁ ୨ୟ ଧାଡ଼ି– ଦେବପ୍ରିୟଙ୍କ ଆଦେଶ ଏହି ଯେ ସମାପାର ମହାମାତ୍ର ଓ ରାଜବଚନିକ ନିଜକୁ ନିଜେ କହନ୍ତୁ, "ମୁଁ ଯାହା ଉଚିତ ବୋଲି ଦେଖୁଛି ତାହା ଫଳପ୍ରଦରୂପେ କାର୍ଯ୍ୟରେ ପରିଣତ କରିବାକୁ ଇଚ୍ଛା କରେ ।" ଏହା ମୋର ମୁଖ୍ୟ ମତ ଓ ଏହି ଉଦ୍ଦେଶ୍ୟରେ ମୁଁ ତୁମମାନଙ୍କୁ ଆଜ୍ଞା ପ୍ରଦାନ କରିଛି ।

୨ୟରୁ ୪ର୍ଥ ଧାଡ଼ି– ସବୁ ମନୁଷ୍ୟ ମୋର ସନ୍ତାନତୁଲ୍ୟ । ମୁଁ ଯେପରି ମୋର ନିଜ ସନ୍ତାନଙ୍କ ପାଇଁ ଇହଜଗତ ଓ ପରଜଗତରେ ହିତ, ସୁଖ ଚାହେଁ ସେହିପରି ସବୁ ମନୁଷ୍ୟଙ୍କ ନିମନ୍ତେ ତାହାହିଁ ଇଚ୍ଛା କରେ ।

୪ର୍ଥରୁ ୬ଷ୍ଠ ଧାଡ଼ି– ମୋର ସୀମାନ୍ତର ଅବିଜିତ ଲୋକେ ପଚାରିପାରନ୍ତି, "ଆମ ପ୍ରତି ରାଜାଙ୍କର ନୀତି କ'ଣ ?" ମୁଁ ଚାହେଁ, ସେମାନେ ଏହା ଜାଣିରଖନ୍ତୁ ଯେ ରାଜାଙ୍କର ଆନ୍ତରିକ ଇଚ୍ଛା ହେଉଛି ସେମାନେ ତାଙ୍କର ହେତୁ ଉଦ୍‌ବିଗ୍ନ ନ ହୁଅନ୍ତୁ । ସେମାନେ ରାଜାଙ୍କ ଦ୍ୱାରା ଆଶ୍ୱସ୍ତ ହୁଅନ୍ତୁ ଏବଂ ତାଙ୍କଠାରୁ ଦୁଃଖ ନ ପାଇ ସୁଖଲାଭ କରନ୍ତୁ ।

୬ଷ୍ଠରୁ ୭ମ ଧାଡ଼ି– ସେମାନେ ଏହା ମଧ୍ୟ ଜାଣିରଖନ୍ତୁ ଯେ ରାଜା କ୍ଷମା କରିବାକୁ ଯେତେଦୂର ସମର୍ଥ ସେମାନଙ୍କୁ କ୍ଷମା କରିବେ । ତାଙ୍କର ନିମନ୍ତେ ସେମାନେ ଧର୍ମ ଆଚରଣ କରନ୍ତୁ ଏବଂ ଇହପର ଉଭୟ ଲୋକରେ ସୁଖଲାଭ କରନ୍ତୁ ।

୭ମରୁ ୧୨ଶ ଧାଡ଼ି— ଏହି ଅନୁଜ୍ଞା ପ୍ରଦାନ କରିବା ଉଦ୍ଦେଶ୍ୟ ଏହି ଯେ ମୁଁ ଏତଦ୍ଦ୍ୱାରା ତୁମମାନଙ୍କଠାରୁ ଋଣମୁକ୍ତ ହେବି ଓ ତୁମମାନଙ୍କୁ ମୋର ନୀତି ଜଣାଇ ଦେଇପାରିବି ଯେ ମୋର ମାନସିକ ଦୃଢ଼ତା ଓ ପ୍ରତିଜ୍ଞା ଅଟଳ ଅଟେ । ଏହା ହୃଦୟଙ୍ଗମ କରି କାର୍ଯ୍ୟରେ ଅଗ୍ରସର ହୁଅ ଓ ଆଶ୍ୱାସନା ଲାଭ କର । ଏହା ବୁଝିରଖ ଯେ, "ରାଜା ଆମ୍ଭମାନଙ୍କର ପିତାପ୍ରତିମ ଅଟନ୍ତି ଏବଂ ସେ ନିଜ ସନ୍ତାନଙ୍କ ପରି ଆମ୍ଭମାନଙ୍କ ପ୍ରତି ଅନୁକମ୍ପା ପ୍ରଦର୍ଶନ କରନ୍ତି । ଆମେ ସମସ୍ତେ ରାଜାଙ୍କର ସନ୍ତାନତୁଲ୍ୟ ।" ମୁଁ ତୁମମାନଙ୍କୁ ଆଜ୍ଞା କରୁଛି ଓ ମୋର ନୀତି ଜଣାଇ ଦେଉଅଛି ଯେ ମୋର ଧୃତି ଓ ପ୍ରତିଜ୍ଞା ଅଟଳ ଓ ମୋର ପ୍ରଭୁତ୍ୱ ସର୍ବଦିଗବ୍ୟାପୀ ।

୧୨ଶରୁ ୧୩ଶ ଧାଡ଼ି— ତୁମେମାନେ ହିଁ ସେମାନଙ୍କୁ (ସୀମାନ୍ତ ଲୋକଙ୍କୁ) ଆଶ୍ୱାସନା ଦେବାରେ ଓ ଇହପର ଉଭୟତ୍ର ହିତ ସୁଖ ଲାଭ ନିମନ୍ତେ ସାହାଯ୍ୟ କରିବାରେ ସମର୍ଥ । ଏହାଦ୍ୱାରା ତୁମେ ସମସ୍ତେ ସ୍ୱର୍ଗଲାଭ କରିବ ଓ ମୋତେ ମୋର ଲୋକଙ୍କଠାରୁ ଋଣମୁକ୍ତ କରାଇବ ।

୧୩ଶରୁ ୧୬ଶ ଧାଡ଼ି— ଏଠାରେ ଏହି ଲିପି ଉତ୍କୀର୍ଣ୍ଣ କରିବା ଉଦ୍ଦେଶ୍ୟ ଏହି ଯେ ମହାମାତ୍ରମାନେ ସୀମାନ୍ତ ଲୋକଙ୍କୁ ଆଶ୍ୱାସନା ପ୍ରଦାନ କରିବାପାଇଁ ଓ ସେମାନଙ୍କର ଧର୍ମାଚରଣ ଅଭିବୃଦ୍ଧି ନିମନ୍ତେ ସର୍ବଦା ବ୍ୟାପୃତ ରହନ୍ତୁ ।

ଏହି ଲିପି ପ୍ରତି ଚାରି ମାସରେ ଥରେ ତିଷ୍ୟ ନକ୍ଷତ୍ର ଦିବସରେ ପଢ଼ି ଶୁଣାଇବ । ତିଷ୍ୟ ନକ୍ଷତ୍ର ବାହାରେ ଜଣକପାଇଁ ସୁଦ୍ଧା ଏହା ଥରେ ଥରେ ପଢ଼ି ଶୁଣାଇବ । ଏପରି କରିବାଦ୍ୱାରା କର୍ତ୍ତବ୍ୟ ସୁସଂପାଦନ ନିମନ୍ତେ ତୁମେମାନେ ପ୍ରେରଣା ଲାଭ କରିବ ।

———o———

## ଯଶପାଲ

ଜୀବନ ତମାମ ବିଦ୍ରୋହ କରିଥିବା ଏହି ଅତ୍ୟନ୍ତ ପ୍ରତିବଦ୍ଧ,ସ୍ୱାଭିମାନୀ, ମହାନ ଲେଖକଙ୍କର ବିଶ୍ୱ-ପ୍ରସିଦ୍ଧ ପଇଁଚାଳିଶଟି ଅପ୍ରତିମ ଗ୍ରନ୍ଥ ପ୍ରକାଶିତ । ଗଳ୍ପ, ଉପନ୍ୟାସ,ନାଟକ ,ପ୍ରବନ୍ଧ, ଯାତ୍ରାବୃତ୍ତାନ୍ତ, ସିଦ୍ଧାନ୍ତ ସନ୍ଦର୍ଭ ସହିତ କିଛି ଅନୁବାଦ ମଧ୍ୟ ରହିଛି । 'ଝୁଠା-ସଚ', 'ମେରୀ ତେରୀ ଉସକୀ ବାତ୍' , 'ଦିବ୍ୟା', 'ଦେଶଦ୍ରୋହୀ' ପ୍ରଭୃତି ଉପନ୍ୟାସ , 'ଭୂଖ କେ ତୀନ ଦିନ' , 'ସଚ୍ ବୋଲନେ କୀ ଭୂଲ୍', ' ଉତ୍ତରାଧିକାର' , ଧର୍ମଯୁଦ୍ଧ' ଆଦି ଗଳ୍ପ ସଂକଳନ , ' ନଶେ-ନଶେ କୀ ବାତ୍' ( ନାଟକ ) ,'ଦେଖା-ସୋଚା ସମଝା', 'ବାତ-ବାତ ମେଁ ବାତ' ( ପ୍ରବନ୍ଧ ସଂକଳନ ) ସିଂହାବଲୋକନ ( ଯାତ୍ରାବୃତ୍ତାନ୍ତ ) 'ଗାନ୍ଧୀବାଦ କୀ ଶବ ପରୀକ୍ଷା ' (ସିଦ୍ଧାନ୍ତ ସନ୍ଦର୍ଭ ) ଆଦି କାଳଜୟୀ କୃତି । ୧୯୫୬ରେ ପ୍ରକାଶିତ ଉପନ୍ୟାସ' ଅମିତା 'ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଦ୍ୱାରା ବିଶ୍ୱଶାନ୍ତି ପ୍ରତି ସମର୍ପିତ ହୋଇ ବିଶ୍ୱର ପ୍ରତ୍ୟେକ ରାଷ୍ଟ୍ରଭାଷାରେ ରୂପାନ୍ତରିତ ହୋଇଛି । ଏହି ଉପନ୍ୟାସ ' କଳିଙ୍ଗ ଯୁଦ୍ଧ'ର ପୃଷ୍ଠଭୂମିରେ ଲିଖିତ । ଯଶପାଲ ଜୀ ଙ୍କର ଜୀବନ ଓ ସାହିତ୍ୟାଦର୍ଶର ବ୍ୟାଖ୍ୟା-ବିଶ୍ଳେଷଣକାରୀ ଆଠୋଟି ଅନୁପମ ଗ୍ରନ୍ଥ ଅଛି ଏବଂ ' ଯଶପାଲ ଅଭିନନ୍ଦନ ଗ୍ରନ୍ଥ ' ରେ ଚିନ୍ତାଶୀଳ ପ୍ରାବନ୍ଧିକମାନଙ୍କର ଶତାଧିକ ପ୍ରବନ୍ଧ ପ୍ରକାଶିତ ହୋଇଛି । ବିଶ୍ୱର ବହୁ ବିଶ୍ୱବିଦ୍ୟାଳୟରୁ ଅର୍ଦ୍ଧଶତାଧିକ ଗବେଷକ ' ଯଶପାଲ : ବ୍ୟକ୍ତି ଓ କୃତିତ୍ୱ ' ଉପରେ ଗବେଷଣା କରି ଡକ୍ଟରେଟ୍ ଲାଭ କରିଛନ୍ତି । କେନ୍ଦ୍ର ସାହିତ୍ୟ ଏକାଡେମୀ ପକ୍ଷରୁ ଯଶପାଲ ଶୀର୍ଷକ ଏକ ମନୋଗ୍ରାଫ ପ୍ରକାଶିତ ହୋଇ ପ୍ରତ୍ୟେକ ଭାରତୀୟ ଭାଷାରେ ଅନୂଦିତ ହୋଇଛି ।

ଭାରତର ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ମହାରଥୀ ଯଶପାଲ, ଶହୀଦ ଭଗତ ସିଂହ , ଚନ୍ଦ୍ର ଶେଖର ' ଆଜାଦ'ଙ୍କର ସହଯୋଗୀ ବନ୍ଧୁ । ତାଙ୍କର ସହଧର୍ମିଣୀ , ସହଭାଗିନୀ ବିଦ୍ରୋହିଣୀ ଡକ୍ଟର ପ୍ରକାଶବତୀ ପାଲ ଙ୍କ ସହିତ କାରାଗାରରେ ବିବାହ ହୋଇଥିଲା । ୧୯୭୬, ଡିସେମ୍ବର ୨୫ ତାରିଖ ଦିନ ଏହି ମାନବତାବାଦୀ ଦିବ୍ୟ-ସ୍ରଷ୍ଟାଙ୍କର ଦେହାବସାନ ହେଲା ।

□□□



ଯଶପାଲ

"ଅମିତା"........

ଏହି ଉପନ୍ୟାସର ପୃଷ୍ଠଭୂମି ମଗଧ ସମ୍ରାଟ୍ ଅଶୋକଙ୍କର କଳିଙ୍ଗ-ଆକ୍ରମଣ ଓ ଯୁଦ୍ଧ;ବିଡ଼ମ୍ବନା ଯେ ଏହି ବିଶ୍ୱ-ବିଦିତ ଘଟଣାର ଯଥାର୍ଥ ବିବରଣୀ ଇତିହାସ ଲିପିବଦ୍ଧ କରି ନାହିଁ। ଅଥଚ ଏହା ବିଶ୍ୱ ଇତିହାସର ଏକ ମହତ୍ତ୍ୱପୂର୍ଣ୍ଣ ଅଧ୍ୟାୟ। ଐତିହାସିକ ସତ୍ୟ ଯେ, ବିଜୟଲାଭ କରି ସମ୍ରାଟ୍ ଆପଣାକୁ ମର୍ମାହତ , ପରାଭୂତ ମନେ କରିଥିଲେ ...ଚଣ୍ଡାଶୋକ ଧର୍ମାଶୋକ ହୋଇଥିଲେ , ଯାହାର ଆପାତ ସାକ୍ଷ୍ୟ ପ୍ରଦାନ କରନ୍ତି ଦୁଇଟି ମାତ୍ର ଶିଳାଲେଖ। ପରିଶିଷ୍ଟ ଭାବରେ ଏହି ଦୁଇଟି ଶିଳାଲେଖର ମୂଳପାଠ ଓ ତା'ର ବ୍ୟାଖ୍ୟା ଏହି ଉପନ୍ୟାସରେ ସଂଯୋଜିତ ହୋଇଛି।

ଏହି ଯୁଦ୍ଧ କାଳରେ କିଏ କଳିଙ୍ଗର ସମ୍ରାଟ୍ ଥିଲେ ତା'ର କୌଣସି ସୂଚନା ଇତିହାସରୁ ମିଳେ ନାହିଁ। ଏଣୁ ,କାହାଣୀର କ୍ରମ ଓ ବିନ୍ୟାସ କାଳ୍ପନିକ ଏବଂ ତାହା ଇତିହାସ ଓ କଳ୍ପନାର ଅପୂର୍ବ ସଂଯୋଗ ବୋଲି କୁହା ଯାଇ ପାରିବ। ଉପନ୍ୟାସରେ ପ୍ରତିଟି ଦିଗରୁ ସମୃଦ୍ଧ ,ଐଶ୍ୱର୍ଯ୍ୟବନ୍ତ , ଶୌର୍ଯ୍ୟବନ୍ତ କଳିଙ୍ଗର ବୀରତ୍ୱଗାଥା ଲିପିବଦ୍ଧ । ବୌଦ୍ଧଧର୍ମ-ଦୀକ୍ଷିତ ତତ୍କାଳୀନ କଳିଙ୍ଗର ସମାଜ ଯେଉଁଭଳି କଳାପ୍ରେମୀ ଥିଲେ ,ସେହିପରି ଦେଶପ୍ରେମୀ ମଧ୍ୟ ଥିଲେ ;ପାରସ୍ପରିକ ମୈତ୍ରୀ ଓ ଅହିଂସାର ବିଶ୍ୱାସୀ ଥିଲେ ବୋଲି ପ୍ରତ୍ୟକ୍ଷ-ପରୋକ୍ଷ ରୀତିରେ ଏହି ଉପନ୍ୟାସରେ ଚିତ୍ରିତ।

ଦିବଂଗତ କଳିଙ୍ଗ ସମ୍ରାଟଙ୍କର ଉତ୍ତରାଧିକାରୀ ଭାବରେ କୌଣସି ପୁତ୍ରକୁ ନ ନେଇ ବାଳିକା ରାଜ କୁମାରୀ 'ଅମିତା'ଙ୍କର କଳ୍ପନା କରା ଯାଇଛି ଓ ତାଙ୍କୁ ସିଂହାସନାରୂଢ଼ା କରି ପରମ ଭଗବତୀ , କଳିଙ୍ଗ ରାଜେଶ୍ୱରୀ , ଅଲୌକିକ ଶକ୍ତିର ଅଧିକାରିଣୀ ରୂପରେ ବେଶ୍ ନାଟକୀୟ ରୀତିରେ ବିଜୟୀ ସମ୍ରାଟଙ୍କୁ ବନ୍ଦୀ କରିବା ଅଭିପ୍ରାୟରେ ଆଗେଇ ଆସିବାର ଦୃଶ୍ୟ-ରଚନା ଅପ୍ରତିମ।

ତା'ପରେ......

□□

ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨
ISBN 81-7411-333-9